# ଆଖିରେ ଯେଉଁଠି କଥା କହେ





ସୁସ୍ମିତା ବାଗ୍‌ଚୀ

# ଆକାଶ ଯେଉଁଠି କଥା କହେ

ସୁସ୍ମିତା ବାଗ୍‌ଚୀ

ଗ୍ରନ୍ଥ ମନ୍ଦିର

# ଆକାଶ ଯେଉଁଠି କଥା କହେ

ଲେଖିକା : ସୁସ୍ମିତା ବାଗ୍‌ଚୀ

ପ୍ରକାଶକ : ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ପ୍ରଚ୍ଛଦ : ଫାଲ୍‌ଗୁନ ସାମନ୍ତରାୟ

ମୁଦ୍ରକ : କ୍ୱାଲିଟି କଂପୋଜର୍ସ, କଟକ-୨

ପ୍ରଥମ ପ୍ରକାଶ :
ଜାନୁୟାରୀ, ୧୯୯୦

ମୂଲ୍ୟ : ତିରିଶ ଟଙ୍କା
ସାଦା ବନ୍ଧେଇ ଛତିଶ ଟଙ୍କା

**AKASA JEYUNTHI KATHA KAHE**

Written by :
**Susmita Bagchi**

Published by :
Abhiram Mohapatra
**Grantha Mandir**
Binod Bihari, Cuttack-2

First Edition : January 1990

Printed by :
**Quality Composers,** Cuttack.

Price : **Rs. 30/-**

# ସୂଚୀ



□□□

# ପାଉଁଜି

ଗାଡ଼ି ଷ୍ଟାର୍ଟ କରିବା ପୂର୍ବରୁ ଥରେ ପଚାରିନେଲା ସୁକୁମାର, "ସବୁ ଜିନିଷ ରହିଲା ତ ? ଭଲକରି ସମସ୍ତେ ଥରେ ଥରେ ମନେପକାଇନିଅ—ନହେଲେ ପୁଣି ଅଧାବାଟରୁ ଫେରେଇବ ।"

ପଛ ସିଟ୍‌ରୁ ସ୍ତ୍ରୀ ପ୍ରୀତି କହିଲା, "ଓହୋ ! ଆଉ କେତେ ଥର ପଚାରିବ ! ସବୁ ଠିକ୍ ଭାବରେ ରହିଛି ।"

"କୃଟିଲ ଭାବିକ, ତୁମମାନଙ୍କ ଉପରେ ମୋର ଅନ୍ତତଃ ଆଦୌ ବିଶ୍ୱାସ ନାହିଁ । ଭାବନା, ମନେଅଛି—ଗଲାଥର ଶିମିଳିପାଳ ଗଲାବେଳେ ତୁମେକଣ ମାସେକାଳ ଲାଗି ସଜବାଜ କଲେ । ଗଲାବେଳେ ବାରମ୍ବାର କହିଲେ, ସବୁ ଠିକ୍ ଅଛି । ଅଥଚ ସେଠି ଦେଖିଲାବେଳକୁ ସବୁ ଅଛି, କିନ୍ତୁ ଲୁଣ ନାହିଁ । ଫରେଷ୍ଟ ଗାର୍ଡ ତା' ଘରୁ ଆଣି ଲୁଣ ଯୋଗେଇଲା ବୋଲି ସିନା ରକ୍ଷା ହୋଇଗଲା ।" ଅନ୍ୟ ଗାଡ଼ିରୁ ସୁପ୍ରଭାକ ମନ୍ତବ୍ୟ କଲା ।

"ତମର ନା ଯୋଉ କଥା !" ଊର୍ମିଳା ବିରକ୍ତ ହୋଇ ଉଠିଲା, "ଏଥର କୋଉ ଜଙ୍ଗଲକୁ ଯାଉଛ କି ? ଯଦି କିଛି ଭୁଲିହୋଇଯାଇଥିବ ତା'ହେଲେ ଦୋକାନରୁ କିଣି ନେବା ।"

"ଏ... ଏ ବଡ଼ଭାଇନା"—ସୁଦୀପା ଗାଡ଼ି କବାଟ ଖୋଲି ବାହାରି ଆସିଲା—"ମୁଁ ଗରମ ପାଣିର ଫ୍ଲାସ୍କ୍‌ଟା ଚୂଲି ପାଖରେ ଛାଡ଼ିଦେଇ ଆସିଛି । ଗୋଟାଏ ମିନିଟ୍‌ରେ ନେଇ ଆସୁଛି । ଭାଉଜ, ବ୍ୟାଗ୍‌ଟା ଦେଲ ।"

ଅନ୍ୟମାନଙ୍କର "ଧେତ୍‌ତେରି" "ଓହୋ"କୁ ଭ୍ରୂକ୍ଷେପ ନକରି ପ୍ରୀତି ପାଖରୁ ଚାବି ନେଇ ସୁଦୀପା ଗେଟ୍ ଆଡ଼କୁ ଆଗେଇଗଲା । ସୁବ୍ରତ ଚିଡ଼ିଉଠିଲା, "ଦୁଇ ଘଣ୍ଟାର ରାସ୍ତା ପାଇଁ ଗୋଟାଏ ବାହାଘରର ଆୟୋଜନ ! କ'ଣ ଦରକାର ଗରମ ପାଣି ?"

"ଆଉ—ବାଟରେ ଯଦି ଝିଅ କ୍ଷୀର ପାଇଁ କାନ୍ଦେ...ସେତେବେଳେ ତ ସମସ୍ତେ ମୋ ଉପରେ ପାଟି କରିବାକୁ ଆଗୁଆ ହୋଇ ପଡ଼ିବ"...ଚାବି ଖୋଲି ଭିତରକୁ ପଶିଗଲା ସୁଦୀପା ।

ହାତରେ ଠାକୁର ବ୍ୟାଗ୍ ଧରି ବିମଳା ଚୁପ୍ ହୋଇ ବସିଥିଲେ । ଅନ୍ୟମାନଙ୍କର ହୋ-ହଲ୍ଲା, ଚିତ୍କାର, ହସ, ଉତ୍ତେଜନା ତାଙ୍କୁ ଛୁଇଁ ପାରୁ ନଥିଲା । ଏତେ ସବୁ ଆନନ୍ଦ ଭିତରେ

ତାଙ୍କ ଗୃହ କାହିଁକି ଅଶ ଅଶ ଯାଉଥିଲା; ଯଦିଓ ମନ ଖରାପ କରିବାର ତାଙ୍କ ନିକଟରେ କୌଣସି କାରଣ ହିଁ ନାହିଁ ।

ସଦାନନ୍ଦ ପାଖରେ ଥିଲେ ସବୁଥର ଭଲ ଥଟ୍ଟା କରିଥାଆନ୍ତେ, "ତୁମ ସ୍ତ୍ରୀଲୋକମାନଙ୍କର ସ୍ୱଭାବ ହିଁ ଅନ୍ୟ ରକମର । ଦୁଃଖ ନଥିଲେ ବି ଦୁଃଖର ଆଶଙ୍କା କରି ତୁମେ ସବୁ ମନମାରି ପଡ଼ିଥାଅ ।"

ସତରେ ତ, ବିମଳାଙ୍କ ମନ ଖରାପ କରିବାର ପୁଣି କ'ଣ ଅଛି ? ସ୍ୱାମୀଙ୍କ ଅବର୍ତ୍ତମାନର ଶୋକକୁ ତିନିପୁଅ ଚେଷ୍ଟାକରି ହାଲୁକା କରିଦେଇଛନ୍ତି । ଆଉ ପୁଅ ତିନୋଟି ତ ହୀରାଖଣ୍ଡମାନ । ବଡ଼ ସୁକୁମାର ଇଞ୍ଜିନିୟର, ମଝିଆ ସୁପ୍ରଭାତ ବିଜିନେସ୍ ମ୍ୟାନେଜ୍‌ମେଣ୍ଟ କରିଛି ଆଉ ସାନ ସୁପ୍ରଭାତ କମର୍ସରେ ପୋଷ୍ଟ-ଗ୍ରାଜୁଏଟ୍ । ତିନିପୁଅଙ୍କ ମନ ନେଇ ତିନି ବୋହୂ । କଏ କହିବ ତିନି ଘରୁ ଆସିଛନ୍ତି ସେମାନେ ! ସବୁଠାରୁ ବେଶୀ ଭଲ ଲାଗେ ପିଲାମାନଙ୍କର ମନର ମେଳ । ଭାଇ ଭାଇ ଅଲଗା ରହିବେ ନାହିଁ ବୋଲି ଭଲ ଚାକିରି ସବୁ ଛାଡ଼ିଦେଲେ ସେମାନେ । ଏକାଠି ମିଶି ବ୍ୟବସାୟ ଆରମ୍ଭ କଲେ । ବିମଳା ସେତେବେଳେ ମଧ୍ୟ ଡରିଥିଲେ । କହିଥିଲେ, "ତୁମେମାନେ ଯେ ଯାହାର ସଂସାର କର । ଆଜିକାଲି ଯୁଗରେ ଏକାନ୍ନବର୍ତ୍ତୀ ପରିବାର କେତେଟା ତିଷ୍ଠୁଛି ? ବରଂ ଦୂରରେ ଦୂରରେ ରହି ସ୍ନେହ ଆଦର ସେଇମିତି ରଖିଥାଅ ।"

"ମାଇଁ ଗଡ୍... ବୋଉ, ତୁ ତ ଏକଦମ୍ ମଡର୍ଣ୍ଣ ଓ୍ୱେଷ୍ଟର୍ଣ୍ଣ ଲେଡି ଭଳିଆ କଥା କହୁଛୁ !!" ସାନପୁଅ ଆଶ୍ଚର୍ଯ୍ୟ ।

"ନାଇଁରେ ବାପା, ମୁଁ ବହୁତ ସଂସାର ଦେଖିଲିଣି । ସମୟ ସାଙ୍ଗରେ ତ ପୁଣି ନିଜକୁ ବଦଳାଇବା ଦରକାର ।"

ସ୍ଥିର ଗଳାରେ ସୁକୁମାର ବୁଝେଇଥିଲେ, "ତୁ ଅଯଥା ଡରୁଛୁ ବୋଉ ! ଆମକୁ ତ କେହି ବାଧ୍ୟ କରୁନାହିଁ । ଆମେ ନିଜେ ବହୁତ ବିଚାରି ଏସବୁ କରୁଛୁ ।"

ସାନବୋହୂ ଉର୍ଜ୍ଜା ଯୋଡ଼ିଥିଲା, "କେତେ ମଜା ହେବ କୁହନ୍ତୁ ତ ବୋଉ ! ଆମେ ତିନିଜଣ ମିଶିକରି ସିନେମା ଯିବୁ, ବଜାର ଯିବୁ । ଘର କାମ ମିଶିକରି କରିବୁ ।"

ସାଇକୋଲୋଜିର ଛାତ୍ରୀ ମଝିଆ ବୋହୂ ଉର୍ମିଳା । ସେ ପାଠ୍ୟପୁସ୍ତକରୁ ଉଦାହରଣ ଆଣି ଥୋଇଦେଇଥିଲା, "ବୋଉ, ସବୁଠାରୁ ବଡ଼ କଥା ହେଲା ପିଲାଗୁଡ଼ାକ ଏକାଠି ବଢ଼ିବେ । ସେମାନଙ୍କର ମାନସିକ ସ୍ୱାସ୍ଥ୍ୟ ଭଲ ରହିବ । ସେମାନେ ଏକଜିଦିଆ ହେବେ ନାହିଁ, ନିଃସ୍ୱାର୍ଥପର ହେବାକୁ ଶିଖିବେ ।"

ବିମଳା ଅନନ୍ୟୋପାୟ ହୋଇ ସମ୍ମତି ଦେଇଥିଲେ । କି ଅହେତୁକ ଭୟ ସତରେ ! ସାତବର୍ଷ ସ୍ୱା' ଭିତରେ କଟିଗଲାଣି । କେବେ ମନ କଷାକଷି, ଅଶାନ୍ତି ଘରେ ସେ ଦେଖି ନାହାନ୍ତି । ଏକମାତ୍ର ଝିଅ ସୁଦୀପାର ବାହାଘର ହେଲା ତିନିବର୍ଷ ତଳେ । କେବଳ ଏତିକି ଦୁଃଖ, କୋଡ଼ପୋଛା ଗେହ୍ଲେଇ ଝିଅ ପାଖରେ ରହିଲା ନାହିଁ । ଅସିଡରେ ଚାକିରି

ହାଇଦ୍ରାବାଦରେ । ତଥାପି ଛୁଟି ଦେଖି ସେମାନେ ତାଙ୍କ ପାଖକୁ ଚାଲିଆସନ୍ତି । ସଦାର ପୂଜାପାଏ ବିମଳାଙ୍କର । ପିଲାଙ୍କର ସାନ୍ନିଧ୍ୟ, ହସଖୁସିରେ ସେ ବିଭୋର ହୋଇଉଠନ୍ତି ।

ଦିନେ ଏମିତିରେ ପିଠା ଖାଇବାକୁ ମନ କଲା ଅସିତ୍ । ବାପା ମା' ଛେଉଣ୍ଡ ପିଲାଟି । ହଷ୍ଟେଲରେ ମଣିଷ ହୋଇଛି । କିଏ ବା ତାକୁ ପିଠା ଖୁଆନ୍ତା ! ଆହା ! ବିମଳାଙ୍କର ମାତୃହୃଦୟ ତରମିଗଲା । ପରମ ସ୍ନେହରେ ସେ କହିଥିଲେ, "କାଲି ଏଣ୍ଡୁରି କରିବି । ଚନୁରେ ମା, ଆଜି ବିରି ଚାଉଳ ବତୁରାଇଦେବୁ ତ ।"

କିନ୍ତୁ ପରଦିନ ବଜାରସାରା ଖୋଜି ଖୋଜି ହଳଦୀ ପତର ମିଳିଲା ନାହିଁ । ଶେଷରେ ପ୍ରୀତି ପିଠଉରେ ଇଡ଼ଲି କରି ସମସ୍ତଙ୍କୁ ଖୁଆଇଲା । ଅସୀତ୍ ତୃପ୍ତିରେ ନଡ଼ିଆ ଚଟଣୀ ଦେଇ ଇଡ଼ଲି ଖାଇଲେ ମଧ୍ୟ ମନ ମରିଗଲା ବିମଳାଙ୍କର—"ଏତେ ସଉକରେ ପିଠା ଖାଇବାକୁ ମନ କରିଥିଲା ଟୋକେ, ହଳଦୀ ପତର ମିଳିଲା ନାହିଁ ! ସହର ପରା, ଗାଁ ହୋଇଥିଲେ ବଜାର ଯାଏଁ ଦଉଡ଼ିବାକୁ ପଡ଼ିନଥାଆନ୍ତା । ଆମ ବାଡ଼ି ନ ହେଲେ ନଣ କକେଇ ବାଡ଼ିରୁ ତ ନିଶ୍ଚୟ ମିଳିଯାଇଥାଆନ୍ତା ।"

ପିଠା କଥା ଭୁଲିଯାଇ ଗାଁବିଷୟରେ ପ୍ରଶ୍ନ ପଚାରିଗଲା ଅସିତ୍ । ଘରବାଡ଼ି କ'ଣ ଅଛି ? ଇଲେକ୍ଟ୍ରିକ୍ ଯାଇଛି କି ନାହିଁ ? କୂଅ ଅଛି ନା ଟ୍ୟୁବ୍‌ୱେଲ୍ ? ଗାଁ ପାଖରେ ନଈ ବହୁଛି ? ଆଉ ପାହାଡ଼ ? ଏଇମିତି ଅସଂଖ୍ୟ ପ୍ରଶ୍ନ ତା'ର ।

ହଠାତ୍ ଗୋଟିଏ ହୋ'ରେ ସୁଦୀପା କହିଲା, "ଚାଲ, ସମସ୍ତେ ମିଶି ଗାଁକୁ ଯିବା । ବଢ଼ିଆ ମଜା ହେବ ।" ତା'ପରେ ତ ମାତିଗଲେ ସମସ୍ତେ । ଗାଁକୁ ଚିଠି ଗଲା ପର୍ଶୁରାମଙ୍କ ପାଖକୁ । ବିମଳାଙ୍କର ଗାଁହିସାବରେ ଦିଅର ହେବେ । ସଦାନନ୍ଦଙ୍କର ମୃତ୍ୟୁ ପରଠାରୁ ଗତ ଆଠବର୍ଷ ଧରି ଜମିବାଡ଼ି ଖବର ସେ ବୁଝନ୍ତି—ଘର ଛପରଠାରୁ ଆରମ୍ଭ କରି ଟିକସ ଦେବା ପର୍ଯ୍ୟନ୍ତ । ବର୍ଷକୁ ଦୁଇଥର ଚାଉଳ, ଚୂଡ଼ା, ମୁଗ, ବିରି, ନଡ଼ିଆ ନେଇକରି ଆସନ୍ତି ସେ । ତାଙ୍କୁ ଚାରିଦିନ ପାଇଁ ରୋଷେଇ କରିବା ଲୋକଟିଏ ଯୋଗାଡ଼ କରିବାକୁ ଅନୁରୋଧ ଜଣେଇ ଚିଠି ଦେଲା ସୁକୁମାର ।

ଆଜି ସେଇ ଯିବା ପର୍ବ । ଦୁଇଟା ଗାଡ଼ିରେ ଭର୍ତ୍ତିହୋଇ ବସିଛନ୍ତି ସେମାନେ ଚଉଦ-ଜଣ । ବିମଳାଙ୍କର ତ ଖୁସି ହେବା କଥା—କାହିଁକି ସେ ଅଯଥା ଡରୁଚନ୍ତି ?

ସେଇ ଯେ ପାହାନ୍ତିଆ ପହରୁ କ'ଣ ଗୋଟାଏ ଅଶୁଭ ସ୍ୱପ୍ନ ଦେଖି ନିଦ ଭାଙ୍ଗିଗଲା, ତା' ପରଠୁଁ ଆଉ ଏ ଅସ୍ୱସ୍ତି ଭାବରୁ ସେ ନିସ୍ତାର ପାଉନାହାନ୍ତି । ଯୋଗ ଦେଖ, ସୂର୍ଯ୍ୟପ୍ରଣାମ କରିବାକୁ ଝର୍କା ଖୋଲୁ ଖୋଲୁ ଆଗ ଆଖି ପଡ଼ିଲା ଭୁଷୁଣ୍ଡି କାଳିଆ ଅପରଛନିଆ ଭୂଆଟାଏ ଉପରେ ! ପାଖ ଘର ପାଚେରି ଉପରେ ମୁହଁ ଜାକି ବସି ରହିଥିଲା । ବିମଳାଙ୍କୁ ଝର୍କା ଖୋଲିବାର ଦେଖି ଚିତ୍କାର ଡିଆଁଟାଏ ମାରି ପଳେଇଲା ଘାଘଡ଼ିଆ କଣ୍ଠରେ ମ୍ୟାଉଁ ମ୍ୟାଉଁ କରି । କେତେ ଠାକୁର ଦେବତାଙ୍କୁ ଡାକି ସାରିଲେଣି ସେ—ତଥାପି ମନ ଭିତରେ ଚମକି ଚମକି ଉଠୁଛି ।

"ଏ ବୋଉ, ଶୋଇଗଲୁ ନା କ'ଣ ? ଏଥର ଷ୍ଟାର୍ଟ କଲି । ତୁ ତୋ ଠାକୁର ଦେବତାଙ୍କୁ ଥରେ ଥରେ ଡାକିନେ ।" ସାମ୍ନାରୁ ନାସ୍ତିକ ସୁପ୍ରଭାତ କହିଲା ।

ହାତ ଯୋଡ଼ିଲେ ବିମଳା, "ଦୁର୍ଗା, ଦୁର୍ଗା, ଦୁର୍ଗତିନାଶିନୀ ମା' ! ସବୁ ମଙ୍ଗଳ କର ।"

ସୁଦୀପା କୋଳରୁ ତା'ର ଦେଢ଼ବର୍ଷର ଝିଅ ଏମିତି ପାଳି ଧରିଲା, "ଦୁଗା, ଦୁଗା ।" ହସର କୁଆର ଭିତରେ ଗାଡ଼ି ଚାଲିଲା । ଗାଁରେ ଭଲରେ ଭଲରେ ପହଞ୍ଚିଗଲେ ସେମାନେ । ବାଟରେ କୌଣସି ଅସୁବିଧା ନାହିଁ । ଖାଲି ମଝିରେ କେଉଁ ଗାଁର ଗୁଡ଼ିଆ ଦୋକାନରେ ସଜାହୋଇ ରହିଥିବା ମାଛି ଭଣଭଣ ଗୋଲପୀ ମିଠେଇ ଖାଇବ ବୋଲି ସାନ ନାତି ପୁସୁ ଟିକିଏ ସଁ ସଁ କରିଥିଲା । ତା' ମା'ଠାରୁ ଏକ ଧମକ ଖାଇ ଚୁପ୍ । ଘର ସାମ୍ନାରେ ଓହ୍ଲାଇବାବେଳେ ପାଞ୍ଚଟା ପନ୍ଦର ।

ଗାଡ଼ିରୁ ଓହ୍ଲେଇ ବିମଳାଙ୍କ ଆଖି ଜକେଇ ଆସିଲା । କିଏ କହିବ ଆଠବର୍ଷ ଧରି ସେ ଘରେ କାହାର ପାଦ ପଡ଼ିନି ବୋଲି ? ଲୋକପେଇ ପୋଛେଇ ପରିଷ୍କାର କରି ରଖେଇଛନ୍ତି ପଶୁ । ଆହା ! ମନ ମଣ୍ଟ ହୋଇଗଲା ତାଙ୍କର । ଏହି ଘର ସାଙ୍ଗରେ ଜଡ଼େଇ ହୋଇ-ଯାଇଛି ଚଉତିରିଶ ବର୍ଷର ସ୍ମୃତି, ସହଜେ କି ଭୁଲି ହୁଏ ?

ଗାଡ଼ି ଦେଖି ଗେଟ୍ ପାଖରେ ଲୋକ ଭିଡ଼ ଜମିଲାଣି । ଧୂଳିଧୂସରିଆ ପିଲା କେତେଜଣ ଗାଡ଼ିରୁ ବାହାରୁଥିବା ମଣିଷମାନଙ୍କୁ ହାଁ କରି ଚାହିଁରହିଛନ୍ତି । ବିମଳା କିଛି ବି ଦେଖି ପାରୁନାହାନ୍ତି । ତାଙ୍କ ଆଖି ଆଗରେ ଭାସୁଛି ସେଇ ପୁରୁଣା ଦିନର ଛବି ସବୁ । ପନ୍ଦରବର୍ଷ ବୟସରେ ବୋହୂ ହୋଇ ଏଇଠି ପାଦ ଦେଇଥିଲେ । ସେତେବେଳେ ଘରେ ଶାଶୂ ଥିଲେ, ଶ୍ୱଶୁର ଥିଲେ, ଥିଲେ ବିଧବା ନଣନ୍ଦ ସାବିତ୍ରୀ । ଏଇଠି ସବୁ ପିଲାଙ୍କର ଜନ୍ମ । ପିଲାଏ ପଢ଼ାପଢ଼ି କରିବାକୁ ତାଙ୍କ ଭାଇଙ୍କ ପାଖକୁ ପୁରୀ ଚାଲିଗଲେ । କିନ୍ତୁ ସେ ଓ ସଦାନନ୍ଦ ଗାଁ ଛାଡ଼ି ନଥିଲେ । ଭେଦପୁରୁଷର ଭିଟାମାଟି, ତା'ର ତ ଗୋଟିଏ ଟାଣ ଅଛି । କିଏ କୁଆଡ଼େ ସବୁ ମରି ହଜିଗଲେ । ଦିନେ ପୁଣି ସଦାନନ୍ଦ ଚାଲିଗଲେ । ଆଉ ଏଠିକି ଫେରିବାକୁ ମନ କରିନାହାନ୍ତି ସେ । ଏ ଘରେ କି ଅବା ସୁଖ ? ଅଜାଣତରେ ଆଖିରୁ ଲୁହ ଗଡ଼ିଆସିଲା ।

"ବୋଉ, ଏବରୁ ସିନ୍ ଫିନ୍ ଏଠି କ୍ରିଏଟ୍ କର୍ନା କହୁଛି । ତୋର ଯାହା କନ୍ଦାକଟା କରିବା କଥା ଭିତରେ ଯାଇ କର । ଦେଖିଲୁ, ଆମେ ଯେମିତି ଚନ୍ଦ୍ରରୁ ଆସିଛୁ—ଗାଁଟାଯାକ ଲୋକ ଆସି ଭିଡ଼ ଜମେଇଲେଣି ।" ଫିସ୍ ଫିସ୍ କରି ସୁପ୍ରଭାତ କହିଲା ।

କିଏ ଜଣେ ଭିଡ଼ରୁ ଜୋର୍‌ରେ ପାଟି କରି ଉଠିଲା, "ବଡ଼ ମା, ତୁମେ ଆସିଛ !" ଧୂଳିଆ ପିଲାଙ୍କୁ ଠେଲି ବିମଳାଙ୍କୁ ଜାବୁଡ଼ି ଧରି ସବୁଜ କନ୍ତା ପିନ୍ଧିଥିବା ପ୍ରୌଢ଼ାଙ୍କର ବାହୁନା ଆରମ୍ଭ ହୋଇଗଲା, "ହାଇ ମୋ ବଡ଼ମା ଗୋ, ତୁମକୁ ନଦେଖି ଆଖି ଫୁଟି ଯାଇଥିଲା ଗୋ, ମୋ ବଡ଼ମା···ଏତେ ଦିନେକେ ଆମକୁ ମନେକଲ ଗୋ···"

ଦୋଦୋଚକ୍ତା ହେଉଥିଲେ ବିମଳା, "ତୁ ସୁଶୀଲା ନା ? ଆଲୋ, ତୋ ବାଳ କ'ଣ ପାଚିଗଲାଣି ? ଆ ଆ ଭିତରକୁ ଆ ।"

ଯେଉଁ ବେଗରେ ବାହୁନା ଆରମ୍ଭ ହୋଇଥିଲା, ସେଇ ବେଗରେ ଶେଷ ହୋଇଗଲା । "ଆରେ ଏ ନବା, କନେଷଗୁଡ଼ିକ ଭିତରକୁ ନେଇଆ । ପୂଜାଙ୍କୁ କହ ଚହା ବସେଇବ ।"

"ଚାଲ ସାଉଜ, ଭିତରକୁ ଚାଲ ।" ଶାନ୍ତ ଗଳାରେ ପର୍ଶୁରାମ କହିଲେ । ଠାକୁର ବ୍ୟାଗ୍‌ଟିକୁ ସଯତ୍ନରେ ଧରି ଘରେ ପାଦ ରଖିଲେ କମଳା । ପ୍ରଥମେ ସେ ବ୍ୟାଗ୍‌ଟି ଠାକୁର ଘରେ ରଖି ଆସିଲେ । ପରେ ହାତ ମୁହଁ ଧୋଇ ସଜାଡ଼ିବେ ।

ଠାକୁର ଘର ପାରି ହୋଇଗଲେ ତାଙ୍କର ଶୋଇବା ଘର । ଅଟ୍ରେ ଶିକୁଳି ଖୋଲିଲେ କମଳା । ସେଇ ଚିହ୍ନା ଚିହ୍ନା ଗନ୍ଧ । ଶାଳକାଠର ବଡ଼ ଖୋଦେଇକରା ପଲଙ୍କ ଉପରେ ନେଳିଆ ଧଳା ଚେକ୍ ଚେକ୍ ଚଦର ବୋଧହୁଏ ପର୍ଶୁ ପକେଇ ଦେଇଛନ୍ତି । ପରମ ତୃପ୍ତିରେ ଗଡ଼ିପଡ଼ିଲେ ସେ ।

× × × ×

ମାତ୍ର ଦୁଇଟା ଦିନ ହୋଇଛି; କିନ୍ତୁ ମନେହେଉଛି କେଉଁ ଆଦିମ ଯୁଗରୁ ସେମାନେ ରହିଆସିଛନ୍ତି ଏଠି । ଏଠି ସମୟ ବଡ଼ ବଡ଼ ଆଖି ଦେଖାଇ ଭୟ ଦେଖାଉ ନାହିଁ, ଦୈନନ୍ଦିନ ସହର ଜୀବନର ଦୁଶ୍ଚିନ୍ତା ଛୁଇଁ ପାରୁନାହିଁ । ହାତରେ ଅପର୍ଯ୍ୟାପ୍ତ ଅବସର । ସମୟ କଟେଇବା ପାଇଁ ଯିଏ ଯାହାର ପନ୍ଥା ବାଛିନେଇଛନ୍ତି । ଢନପୁଅ ଓ ଜୋଇଁଙ୍କର ବାହାର ବାରଣ୍ଡାରେ ବ୍ରିଜ୍ ଆଡ଼୍ଡା । ବେଳକୁ ବେଳ ସେମାନଙ୍କର ଚହା ଓ ସୁଖାଦ୍ୟ ପାଇଁ ଚିତ୍କାର । ଢନ ବୋହୂ ଓ ସ୍ୱାମୀଙ୍କର ସାଇକୁଲ ଗୋଟିଏ କିଣା ହୋଇଯାଇଛି । ବୁଲି ବୁଲି ସି' ଘରେ ଆଚାର, ତା' ଘରେ ବଡ଼ିଭଜା ଖିଆ, ଲୁଡ୍ ଖେଳ—ଏ ସବୁରୁ ଫୁରୁସତ୍ କାହିଁ ? ପିଲାମାନଙ୍କର ତ ଘରେ ଦେଖା ପାଇବା ଆହୁରି କଷ୍ଟ । ସମସ୍ତେ ଯାଇ ଜୁଟିଛନ୍ତି ପର୍ଶୁଙ୍କ ପାଖରେ । ପିଲା ରକ୍ଷଣା ପର୍ଶୁ ସଭିଙ୍କୁ କୋଳେଇ ଖେଳେଇ ସାରାଦିନ ରଖିଛନ୍ତି । ଦେଢ଼ବର୍ଷର ଏମି ସୁଦ୍ଧା ତା' ମା' ପାଖକୁ ଆସିବାକୁ ନାରାଜ । କେତେ ରକମର ଗପର ଝୁଡ଼ି ନେଇ ବସିଛନ୍ତି ପର୍ଶୁ । ଖାଇବା ଓ ଶୋଇବା ସମୟ ଛଡ଼ା ତାଙ୍କ ଘରୁ ପିଲା ଦଳକ ବାହାରୁ ନାହାନ୍ତି ।

କମଳାଙ୍କୁ ଖୁବ ଭଲ ଲାଗୁଛି । କେତେବେଳେ କେମିତି କଏ ଦେଖା ହେବାକୁ ଆସୁଛନ୍ତି । ସୁଖ-ଦୁଃଖ କରୁଛନ୍ତି, ପୁରୁଣା କଥା ଗପି ଆଖି ଛଳଛଳଉଚନ୍ତି । ବାକି ସମୟ ତାଙ୍କର କଟୁଛି ଠାକୁରଘରେ ନ ହେଲେ ବଗିଚାରେ ପଡ଼ି ପଡ଼ି । ଏଇମିତି ବଗିଚାରେ ଶୋଇରହି କ'ଣ ସବୁ ଭାବୁଥିଲେ ସେ । ହଠାତ୍ ତାଙ୍କର ଆଖି ପଡ଼ିଗଲା ବନ୍ଧଗଦା ତଳେ କଣିକିଆ ହୋଇ ରହିଥିବା ସିନ୍ଦୁକଟି ଉପରେ । ଶାଳକାଠରେ କମକୃଷ୍ଟ ହୋଇଥିବା ପୁରୁଣାକାଳିଆ ସିନ୍ଦୁକ । ବାହାଘର ବେଳର ଜିନିଷ । କୁଆଡ଼େ କେଉଁଠି ସବୁ ଭାଙ୍ଗିରୁଜି ଗଲଣି—ରହିଛି ଖାଲି ଏଇ ଦୁଇଟି—ଖଟ ଓ ସିନ୍ଦୁକ । କେବେ ବୋଧହୁଏ ସିନ୍ଦୁକରେ ତାଲା ପକେଇ ଦେଇଥିଲେ । ଚାବି କାହିଁ ? ତାଙ୍କ ପାଖରେ ତ ରହିବା କଥା । ଗୋଟିଏ ହୋସ୍‌ରେ ଉଠି ବସିଲେ ସେ ।

ହଁ ହଁ, ଲକ୍ଷ୍ମୀଙ୍କ କବାଟରେ ଥିଲେ ଥାଇପାରେ । ଧାଇଁଗଲେ ଠାକୁର ଘରକୁ । ଖୋଜି ପକାଇଲେ କବାଟ ଭିତରଟା । ମିଳିଗଲା, ଖୁବ ମିଳିଗଲା ।

ଶିଶୁର ଉତ୍ତେଜନା ନେଇ ବିମଳା ଖୋଲି ପକେଇଲେ ସିନ୍ଦୁକ । ଇସ୍—କେଉଁ ଯୁଗର ପୁରୁଣା ଲୁଗା, କାଗଜ । ସବୁ ଛିଣ୍ଡିଗଲାଣି । ଏଇତ—ବାହାଘର ସମୟର ଯୋଡ଼ି, ବଡ଼ପୁଅର ଏକୋଇଶିଆ ଜାମା । ହସିପକେଇଲେ ବିମଳା ।

ଆରେ, ଏଇଟା ପୁଣି କ'ଣ ? ପୁଟୁଳି ହୋଇ ତଳେ ରହିଛି କ'ଣଟାଏ ? ବିମଳା ଆଗ୍ରହରେ ପୁଟୁଳି ଖୋଲିଲେ । ଝମ୍ କରି ଭିତରୁ ଖସିପଡ଼ିଲା ପାଉଁଜି ହଳେ । ସତେ ତ, ଏ ପାଉଁଜି ହଳକ କଥା ସେ ଏକଦମ୍ ଭୁଲିଯାଇଛନ୍ତି । ହାତରେ ଧରି ସେ ବୁଲେଇ ବୁଲେଇ ଦେଖୁଥିଲେ । ଏବେ ବି କଳା ପଡ଼ିନି ଏ ରୁପା । ହଁ, କେତେ ଅଉ ପିନ୍ଧିଲେ ସେ ! ଅଥଚ ବାହାଘର ଆଗରୁ ବୋଉ ପାଖରେ କି ଜିଦ, "ମୋ ପାଇଁ ଚଉଡ଼ା ପାଉଁଜି ଗଢ଼େଇଦେ, ଯୋଉଟା ବହୁତ ଝୁମୁଝୁମୁ ହେଉଥିବ ।"

ବୋଉ ମୁଣ୍ଡରେ ହାତ ଦେଇଥିଲେ, "ଆଲୋ କି କଥା ! ତୁ ନାଚ କରିବୁ କି ? ତୋ ଶାଶୁଘର ଲୋକେ ଶୁଣିଲେ ରଖିବେ ?"

"ହଁ, ସମସ୍ତେ ପିନ୍ଧୁଛନ୍ତି—ଖାଲି ମୋ ବେଳକୁ ସବୁ ନାଲିଆଖି ।" କୋଳପୋଛା ବିମଳା ସବୁଦିନେ ଅଭିମାନୀ ।

ସାନଭଉଣୀର ଅଭିମାନକୁ ମୂଲ୍ୟ ଦେଇଥିଲେ କାଶୀନାଥ । ଯେଉଁଥର କାମରେ କଲିକତା ଯିବାକୁ ହେଲା, ଫେରିବାବେଳେ ସେଇଥର ଏଇ ପାଉଁଜି ହଳକ ନେଇ ଆସିଥିଲେ । କି ସୁନ୍ଦର ! ନାଲି, ନୀଳ ମିନାକରା, ତଳେ ଛୋଟ ଛୋଟ ଆମ୍ବକଷି । ପ୍ରତ୍ୟେକ ଆମ୍ବକଷିରୁ ଝୁଲୁଛି ତିନୋଟି କରି ଝୁମୁକା । ତାଙ୍କ ବୋଉ ମଧ୍ୟ ଅପସନ୍ଦ କରି ପାରି ନ ଥିଲେ । "ହଁରେ, ଭାରି ସୁନ୍ଦର ହୋଇଛି । ଦେ ମତେ, ମୁଁ ଭିତରେ ରଖିଦିଏ । ବାହାଘର-ବେଳେ ବିମଳା ପିନ୍ଧିବ ।"

ସେତେବେଳେ ଓଠ ଫୁଲେଇଥିଲେ ବିମଳା, ପାଦ କଚଡ଼ିଥିଲେ । କିନ୍ତୁ ବୋଉ କଥା ରହିଲା । ନୂଆ ପାଉଁଜି ପିନ୍ଧି ଝୁମୁଝୁମୁ ହୋଇ ଶାଶୁଘରେ ପଶିଥିଲେ ସେ ।

ହେଲେ, କେଇଟା ଦିନ ସେ ମନ ରହିଲା ? ଓଜନିଆ ଓଜନିଆ ପାଉଁଜି ହଳକ ପିନ୍ଧି କାମଦାମ କରିବା କି ବିରକ୍ତିକର ! ତା'ପରେ ସେଇ ଝୁମୁଝୁମୁ !! ପାଦ ଟିକିଏ ହଲିଗଲେ ସଙ୍ଗୀତର ଗୋଟାଏ ତରଙ୍ଗ ଯେମିତି । ଘରଟାଯାକ ଲୋକ ଜାଣୁଥିଲେ ବୋହୂ କୋଉଠି । ଯେଉଁ ପାଉଁଜି ପାଇବା ପାଇଁ ବିମଳା ତାଙ୍କ ବୋଉକୁ ବସେଇ ଉଠେଇ ଦେଇ ନଥିଲେ, ସେଇ ପାଉଁଜିରୁ ଖୁବ୍ ଶୀଘ୍ର ମନ ଛାଡ଼ିଗଲା ତାଙ୍କର ।

ଥରେ ସ୍ୱାମୀଙ୍କ ପାଖରେ ମୁହଁ ଖୋଲି କହିଥିଲେ, "ତୁମେ ଏତେଥର କଟକ ଯାଉଛ, ଗୋଟାଏ ଜିନିଷ ଆଣିଦେବ ?"

"କୁହ !" ସଦାନନ୍ଦଙ୍କ ଆଖିରେ ଆଗ୍ରହ ।

"ହଲେ ସରୁ ପାଉିଁଜ । ଏଇଟା ଏତେ ଝୁମୁଝୁମୁ ହେଉଛ ଯେ···ଘମଣ୍ଡେ କ'ଣ ଖବୃଥିବେ କୁହନ୍ତ !"

ପରଥର ହିଁ କଟକରୁ ତାଙ୍କ ପାଇଁ ସରୁ ପାଉିଁଜ ହଲେ ସ୍ୱାମୀ ଆଣି ଦେଇଥିଲେ । ଆଉ ବମଳା ଏଇ ସଉକର ଜନଷକୁ କନା ପୁଟୁଳାରେ ରଖି ଗଣ୍ଡେଇ ଦେଲେ ସିନ୍ଦୁକ ଭିତରେ ।

ଆଶ୍ଚର୍ଯ୍ୟ ! ଏତେ ବର୍ଷ ଭିତରେ ଥରେ ବ କେମିତ ମନେପଡ଼ନ । ଜଞ୍ଜାଳ । ହିଁ··· ସଂସାର ଜଞ୍ଜାଳ, ପିଲବୁଆଙ୍କ ଅଳଅର୍ଦ୍ଦଳି—ଏ ସବୁ ଭିତରେ ମୁଣ୍ଡ ଘୂରେଇ ଗହଣା ପିନ୍ଧିବା ସଉକ ରହଲା ବା କେମିତ ?

"ଏ ବୋଉ, କ'ଣ କରୁଛୁ ମ ? ରମା ପିଉସୀନାନୀ ଘର ଏତେ ବଢ଼ିଆ ହ୍ନ୍ୟପତ୍ରର ପିଠା କରଥିଲେ ଯେ ନ ଖାଇଲେ ବଶ୍ୱାସ ହେବନ । ତୁ ଯାଇଥିଲେ ଖାଇଆଆନ୍ତୁ ।" ସେପଟୁ କହ କହ ସୁଦୀପା ଘରେ ପଶିଲ, "ଧେତ୍—ତୋ ଖ୍ୱାସରେ ନାହିଁ, ତ ଆଉ··· ଆଲ୍ରେ ଏଇଟା ପୁଣି କ'ଣ ? ଦେଖି ଦେଖି···"

ଆଗ୍ରହରେ ତାଙ୍କ ହାତରୁ ପାଉିଁଜ ହଲକ ନେଇଗଲ ସେ । "ଏ ମା···କ ସୁନ୍ଦର ହୋଇଛି ! ବୋଉ, ଏଇଟା କାହାର ? ଇସ୍, କେତେ ସୂକ୍ଷ୍ମ କାମ ! ଜ୍ୱଲ୍ଲକ, ଜ୍ୱଲ୍ଲକ···" ସେଇଠୁ ଚିତ୍କାର କରିଉଠିଲ ସେ, "ଜଲଦି ଆସ, ବଢ଼ିଆ ଜନଷ ଦେଖିବ ଆସ ।"

ସୁଦୀପା ପାଖରେ ବ୍ରିଜ୍ ଖେଳାଳୀମାନେ ଖେଳ ବନ୍ଦ କରି ପହଞ୍ଚିଗଲେ । ପଛେ ପଛେ ତାନ ବୋହୂ ।

"ହ୍ୱାଓ ଫାଣ୍ଟାଷ୍ଟିକ୍ !"

"ଏମିତିକା ଛନ୍ଦା ଜନଷ ଆଜିକାଲ ଦେଖାଯାଏ ନାହିଁ ।"

"ଲଭ୍‌ଲି !"

ବମଳା ମୁରୁକେଇ ମୁରୁକେଇ ହସୁଥିଲେ, "ମୋ ବାହାଘର ବେଳର । ସେତେବେଳର ଜନଷ, କେମିତି ହୁଅନ୍ତା ନାହିଁ ? ତୁମ ମାମୁ କଲକତାରୁ ଆଣିଦେଇଥିଲେ । ଏତ୍ନ ଓଜନଥିଲା ଯେ, ମୁଁ ଖୋଲ ରଖିଦେଲ । ମୋର କ'ଣ ଆଉ ମନେଥିଲ କ ? ହଠାତ୍ ହାତ ପଡ଼ିଯିବାରୁ ସିନା ପାଇଲ ।"

"ଇସ୍ ବୋଉ, ସତରେ ତୁ'ଟା ନହାତ ୟୁସ୍‌ଲେସ୍ । ଏତେ ବଢ଼ିଆ ଜନଷ ଛୁଣ୍ଡାକନା ପୁଟୁଳି ସାଙ୍ଗରେ ଫୋପାଡ଼ି ଦେଇଛୁ ? ତୁ ଯାହା କହନା କାହିଁକ, ଏଇଟା ମୁଁ ନେଲ ।" ସୁଦୀପାଟା ବରୁଦିନେ ଏମିତ । ପିଲର ମା' ହେଲଣି, ଅଲ୍‌ଅଲପଣିଆ ଆଉଟ ଯାଉନ ।

ଅମିତ୍ ପଛରୁ ଯୋ ି ଲେ, "କଟକରେ ଥରେ ପଲସ୍ କରେଇ ନେବାକୁ ହେବ ।"

"ମୁଁ କ'ଣ କହୁଥିଲ କ", ରହ ରହ ପ୍ରୀତ କହିପକେଇଲ, "ବୋଉଙ୍କର ବାହାଘର ଜନଷ ଯେତେବେଳେ, ତୁମେ ନେଇଗଲେ ତାଙ୍କର ମନ ଝୁରୁପ ହେବ ।"

"ହଁ ନାନୀ, ଏଇଟା ଗୋଟିଏ ଗ୍ଲାସ୍-କେସ୍‌ରେ ରଖି ଡ୍ରଇଁଙ୍ଗରେ ସଜେଇବା ଭଲ

ଜନକ । ନା କ'ଣ ?" ମହିଆବୋଦ୍ ମତ ଦେଲ ।

ସାନ ସରୁ କଣ୍ଠରେ ଯୋଡ଼ିଲ, "ଦାମ୍ ଯଦିଓ ବେଶୀ ନୁହେଁ, ତଥାପି ଆନ୍‌ଟିକ୍ସ ଜିନିଷ ! ସଜାଡ଼ି ସାଇତି ଘରେ ରଖିବା କଥା ।"

ତା' ପରେ ସବୁ ଶାନ୍ତ, ନିସ୍ତବ୍ଧ । ପତରଟିଏ ପଡ଼ିଲେ ଶୁଣାଯିବ । ସମସ୍ତେ ଚୁପ୍ । ସେ ନୀରବତାର ଭାଷା ବିମଳା କିଛି କିଛି ପଢ଼ିପାରୁଛନ୍ତି । କିନ୍ତୁ ଅନେକଟା ଅବୋଧ । ଯେତିକ ବୁଝୁଛନ୍ତି, ସେତିକ ନିଜ ପାଖରେ ସ୍ୱୀକାର କରିବାକୁ ତାଙ୍କର ସାହସ ହେଉନାହିଁ । ସାଙ୍ଗ ସଙ୍ଗ ସମସ୍ତଙ୍କର ମୁହଁକୁ ଦେଖୁଛନ୍ତି ସେ । ତାଙ୍କ ଆଖି ବୋଧହୁଏ ଭୁଲ ଦେଖୁଛି । ବୋଧହୁଏ ସାମାନ୍ୟ ସାଧାରଣ କଥାବାର୍ତ୍ତାର ଅନ୍ତରାଳରୁ ତାଙ୍କର ଭବାତୁର ମନ ଅଧିକ ଅର୍ଥ ଖୋଜିବାର ଚେଷ୍ଟା କରୁଛି । ହବୁବେଳ ଭଳି ସେ ଅଯଥା ଡରୁଛନ୍ତି ।

ହେଲେ ···ଏଇ ଯେ ଗୃହାଣୀ ସେମାନଙ୍କର ! ନା—ବିମଳା ଭୁଲ ପଢ଼ିନାହାନ୍ତି । ଏ ଗୃହାଣୀର ଭାଷା ଅଛି । ସେଠି କ'ଣ ଚକ୍‌ଚକ୍ କରୁଛି ?

ଲୋଭ ? ଈର୍ଷା ??

ଅସମ୍ଭବ ! ଅସମ୍ଭବ !!

କ'ଣ ନେଇ ଲୋଭ କରିବେ ସେମାନେ ? ସାମାନ୍ୟ ସୁନା-ପାଞ୍ଚଶହ ଟଙ୍କାର ଜିନିଷ ପାଇଁ ! ଇଚ୍ଛା କଲେ ତ ଏଇଭଳି ଆଉ ଚାରିଟା ଗଢ଼ାଯାଇ ପାରିବ । ଆକାଶରୁ ତୋଳି ଅଣା ହୋଇଥିବା ଜିନିଷ ତ ନୁହେଁ ।

ତେବେ କ'ଣ ଖେଳୁଛି ସେମାନଙ୍କର ମନ ତଳେ ? କିଛି ଗୋଟାଏ ଲୁଚୁଛନ୍ତି ସମସ୍ତେ । ଆରେ ପିଲାଏ, କହୁଦଅରେ ! ବିକଳ ହୋଇଉଠିଥିଲେ ବିମଳା । ନଠେଇ ନଠେଇ ସେ ଦାନବୋଦ୍ ଓ ଝିଅ ମୁହଁକୁ ଦେଖୁଥିଲେ । ଏତେ ସୁନ୍ଦର ଭଲ ବୁଝାମଣାର ସମ୍ପର୍କ···ସେତେ କ'ଣ ପାଉଁଜିହଳକ ସେଥିରେ ତିକ୍ତତା ଭରିଦେବ !

ହୋଇପାରେନା ।

ଏଇତ ସେଦିନର କଥା । ପରିଷ୍କାର ମନେପଡ଼ୁଛି ତାଙ୍କର । ମହିଆଁବୋଦ୍ ବାପଘରୁ ତା' ଜନ୍ମଦିନରେ ଖୁବ୍ ସୁନ୍ଦର କାନଫୁଲ ହଳେ ଆସିଥିଲ । ଡଲୁ କାନଫୁଲ ଦେଖି କହିଥିଲ, "ଇସ୍, କି ସୁନ୍ଦର ! ମୁଁ ଏତେ ଭଲ ଡିଜାଇନ୍‌ର କାନଫୁଲ କେବେ ଦେଖିନାହିଁ ।"

ସାଙ୍ଗେ ସାଙ୍ଗେ କାନରୁ ଖୋଲି ଊର୍ମିଳା ଡଲୁକୁ ପିନ୍ଧେଇ ଦେଇଥିଲ ସେଇଟି । ଡଲୁର ଯେତେ ବାରଣ ସେ ଆଦୌ ଶୁଣିଲ ନାହିଁ । କହିଥିଲ, "ତୋ ପାଖରେ ରହିବା ଯାହା ମୋ ପାଖରେ ରହିବା ସେଯା । ମୋର ଇଚ୍ଛାହେଲେ ତୋଠୁ ମାଗି ପିନ୍ଧି ପାରିବିନି କି ?"

ଶାଢ଼ି, ଗହଣା କେଉଁଥିରେ ତ ଝିଅବୋହୂଙ୍କର ମତଭେଦ ଦେଖିନାହାନ୍ତି ସେ । ସୁଜାତା ମଧ୍ୟ ଯେତେଥର ଆସେ ଖାଲି ଭାଉଜମାନଙ୍କର ଜିନିଷ ଉପରେ ଅଧିକାର ବସାଏ । ଆଉ ନିଜ ଜିନିଷ ସେମାନଙ୍କୁ ଜବରଦସ୍ତି ପିନ୍ଧାଏ ।

ଏତେ ବର୍ଷ ଧରି ବିମଳା ତ ଏସବୁ ଦେଖି ଆସୁଛନ୍ତି । ତେବେ ଈର୍ଷା, ଦ୍ୱେଷ, କଳହ— ଏ ସବୁର ପ୍ରଶ୍ନ ଉଠୁଛି କାହିଁକି ? କିଛି ବୁଝିପାରୁ ନାହାନ୍ତି ସେ । କେତେବେଳକେ ସେ କହିଲେ, "ସେ ସବୁ କଥା ପରେ—ଏବେ ଜିନିଷଟି ମୋ ପାଖରେ ଥାଉ । ଯାଅ ତୁମେମାନେ ଖାଇବା ବ୍ୟବସ୍ଥା କେତେଦୂର ଗଲା ଦେଖ । ପିଲାମାନଙ୍କୁ ଖେକିକରିବଣି । ତଦାରଖ ନକଲେ ନନା ମାଛଝୋଳରେ ଝାଲ ଭଳି ବେଶି ଲଙ୍କା ଦେଇଦେବ ।"

× × × ×

ନା—ଅଯଥାରେ ବିମଳା ଭୟ ପାଉନାହାନ୍ତି । ତାଙ୍କ ମନ ଭିତରେ ଯେଉଁ ଅସ୍ୱସ୍ତିବୋଧ ଆସିବା ବେଳଠୁଁ ଦେଖାଦେଇଥିଲା, ସେଇଟି ସମ୍ପୂର୍ଣ୍ଣ ଅମୂଳକ ନୁହେଁ ।

ସୁଦୀପା କେଇଥର ଆସି ଏକାନ୍ତରେ କହିଗଲାଣି, "ବୋଉ ଲୋ, ତୋ ଜୋଇଁଙ୍କୁ ଖୁବ ଭଲଲାଗିଛି ପାର୍ଥିବ ହଲକ । ତୁ ତ ପିନ୍ଧିବୁ ନାହିଁ, ମତେ ଦେ ।"

ଭଟେଇ ହୋଇ ପୁଣି ବୋହୂମାନେ ଜଣକ ପରେ ଜଣେ ଆସିଛନ୍ତି । କେତେ ବାହାନାରେ—କିନ୍ତୁ ସମସ୍ତଙ୍କର ମନ ପଡ଼ିଛି ସେଇ ପାର୍ଥିବ ହଲକରେ । କେତେ ବୁଲେଇ ବଙ୍କେଇ ସେଇଠି କଥା ଶେଷ କରୁଛନ୍ତି ସେମାନେ । କାହିଁକି ? ଓହୋ କାହିଁକି ? ଖଟରେ ପଡ଼ି ପଡ଼ି କେବଳ ଭାବି ଚାଲିଛନ୍ତି ବିମଳା ।

ହଠାତ୍ ତାଙ୍କ ଆଖି ପର୍ଦ୍ଦା ସାମ୍ନାରେ ସବୁକିଛି ପରିଷ୍କାର ହୋଇଗଲା । ସେ ବୁଝିପାରିଲେ ନାହିଁ ହସିବେ କି କାନ୍ଦିବେ । ଓ, ଏଇ ତେବେ ଘଟଣା !!

ଓଠ କଣ ଟିକିଏ ମୋଡ଼ି ହୋଇଗଲା ତାଙ୍କର । ଏଇ ଯୋଉ ଟଣାଟଣି କାଲିଠୁଁ ଆରମ୍ଭ ହୋଇଛି, ସେଇଟା ତେବେ ପାର୍ଥିବ ନେଇ ନୁହେଁ, ତାଙ୍କର ସ୍ନେହ ନେଇ । ଆଜି ତାଙ୍କର ସ୍ନେହକୁ ପରଖ କରି ଦେଖିବାର ସମୟ ଆସିଛି ସେମାନଙ୍କ ସମ୍ମୁଖରେ । ବୟାଳିଶ ବର୍ଷର ପୁରୁଣା ଜିନିଷଟି କାହା ହାତରେ ଟେକିଦେବେ ସେ ? ସତାବନ ବର୍ଷର ବୁଢ଼ୀ—ତା' ସ୍ନେହ ନେଇ ଏତେ ଟଉଲମଉଲ କାହିଁକି ?

କି କଠିନ ପରୀକ୍ଷାରେ ପିଲାଏ ତାଙ୍କୁ ପକେଇଛନ୍ତି ! ଯେବେହେଲେ ବିମଳା ଧନ ବୋହୂ ଓ ଝିଅ ଭିତରେ ପାତରଅନ୍ତର କରିନାହାନ୍ତି । ତଥାପି ଏ ପରିସ୍ଥିତି ! ସ୍ନେହର ଦାବି ଧରି ଠିଆହୋଇଛନ୍ତି ଚାରିଜଣ । ବୋହୂର ଅଧିକାର ନେଇ ପ୍ରୀତି, ନିର୍ମଳା, ତନୁ ଏବଂ ଝିଅର ଅଧିକାର ନେଇ ସୁଦୀପା । କ'ଣ କରିବେ ବିମଳା ?

× × × ×

ପରଦିନ ଯିବା କଥା । ସ୍ଥିର ହୋଇଥିଲା ଝିଅଜୋଇଁ ସାତ ଘଣ୍ଟାବେଳେ ବାହାରିଯିବେ ସମସ୍ତେ । ରାତିରେ ଖାଇସାରି ବିମଳା ପୁରୁଣା ବାକ୍ସଟି ଏ ପଟକୁ ଥୁଇଲେ, ଜିନିଷପତ୍ର ବ୍ୟାଗ୍‌ରେ ରଖି-ଦେଇଛନ୍ତି । କାଲି ଯେଉଁ ଶାଢ଼ି ପିନ୍ଧିବେ ସେଇଟି କେବଳ ଖଟ ବାଡ଼ରେ ଝୁଲୁଛି । ସ୍ୱାଡ଼େ ସ୍ୱାଡ଼େ ଜିନିଷ ପଡ଼ିଛି । ଘରରୁ ସବୁ ସଜାଡ଼ି ରଖିବାକୁ ସମସ୍ତଙ୍କୁ କହିଦେଇଛନ୍ତି । ଦିନ-ବେଳଟା ଯେ କେମିତି କଟିଯିବ ଜଣା ପଡ଼ିବ ନାହିଁ । ବାହାରୁ ବାହାରୁ ପୁଣି ତେଣ

ହୋଇଗଲେ ରାସ୍ତାରେ ଗାତ ହୋଇଯିବ । ଆଉ ଯେଉଁ ଖାଲ ଢିପ ରାସ୍ତା, ସେଥିରେ ପୁଣି ନାହିଁ ନଥିବା ଗାଡ଼ିଘୋଡ଼ା । କ'ଣ ଦରକାର ? ଦିନରୁ ଦିନରୁ ବାହାରି ସନ୍ଧ୍ୟା ପୂର୍ବରୁ ଘରେ ପହଞ୍ଚିଗଲେ ଭଲ !

ସେପଟୁ ପଶିଆସିଲେ ସୁଦୀପା, ପ୍ରୀତି, ତନୁ ଓ ଊର୍ମିଳା—"ବୋଉ, ଜିନିଷ ସବୁ ସଜାଡ଼ି ନେଇଛନ୍ତି ତ ?" "ଆପଣଙ୍କର ଠାକୁର ବ୍ୟାଗ୍ କ'ଣ କାଲି ସଜଡ଼ା ହେବ ?"

ପାଖରେ ବସି କମଳାଙ୍କ ବେକରେ ହାତ ଛନ୍ଦେଇଦେଇ ସୁଦୀପା, "ବୋଉ, ତୋ ପାଉଁଜି ହଳକ ସିନ୍ଦୁକରେ ଫୋପାଡ଼ିଦେଇ ଯିବୁନାହିଁ—ମନେକରି ନେବୁ ।"

ଓଠରେ ହସ ଫୁଟେଇଲେ କମଳା, "ପାଉଁଜି ! ଓ, କହନ ସବୁ !" ହାଇମାରି ବହି ବନ୍ଦ କଲେ ସେ, "ଆଜି ଗୃଣ୍ଟାବେଳେ ପଣ୍ଡିଙ୍କ ଘରକୁ ଯାଇଥିଲି । ତାଙ୍କ ବଡ଼ ଝିଅ ଲକ୍ଷ୍ମୀ ପହିଲିପାଳି ବାପଘରକୁ ଆସିଛି । ଭାବିଲି କ'ଣ ଆଉ ଦେବି—ପାଖରେ ପାଉଁଜି ହଳକ ଥିଲା, ଦେଇଦେଲି ତାକୁ ।"

ସୁଦୀପା ଗମ୍ଭୀର ହୋଇ ଉଠିଗଲା । ଆଉ ସେପଟେ କମଳାଙ୍କ ସହ ତା'ର ଅନ୍ୟ କିଛି କଥା ନଥିଲା । ବଡ଼ ଦୁଇ ବୋହୂଙ୍କର ସ୍ୱର ଶୁଣାଯାଉଛି, "ଚାହିଁଥିଲେ ଟଙ୍କା ପାଞ୍ଚଶହ ଲକ୍ଷ୍ମୀ ହାତରେ ଧରେଇ ଦେଇପାରି ଥାଆନ୍ତେ ବୋଉ । ମୋ ପାଖରେ ଭଲ ନୂଆ ସିଲ୍କ ଶାଢ଼ି ଖଣ୍ଡେ ବି ରହିଛି, ତା' କ'ଣ ସେ ଜାଣନ୍ତି ନାହିଁ । ଦବାକୁ ହବ ତ ଏବେରୁ ଦେଇଥିଲେ ଯାଉ କ'ଣ ?" ଊର୍ମିଳାର ଅଭିମାନଭରା ସ୍ୱର ।

"ଥାଉ, ଥାଉ, ସେ ତ ଦିଆହେଲାଣି ଆଉ ଭାବି ଲାଭ କ'ଣ ?"

ସୁଦୀପା ସେ ବିଷୟରେ ଆଉ କାହାକୁ କଥା କହିବାକୁ ବି ଦେଲାନି । ସେ ଚର୍ଚ୍ଚା ସେଇଠି ବନ୍ଦ ହୋଇଗଲା ।

ସେମାନେ ସମସ୍ତେ ପାଖ କୋଠରୀରୁ ଚାଲିଗଲେଣି । ଅନ୍ଧାରରେ କମଳା ଭାବୁଥିଲେ ସେ କ'ଣ ଭୁଲ କଲେ ? ଭାଇଙ୍କର ସ୍ନେହକୁଆଁ ଜିନିଷ, ବାହାଘରର ସ୍ମୃତିବୋଲା ପାଉଁଜି ହଳକ ଦେଇଦେବା କ'ଣ ଠିକ୍ ହେଲା ?

ରାତିରେ ଭଲ ନିଦ ହେଲାନି ତାଙ୍କର । ଭୋରୁ ଭୋରୁ ଆଖି କେତେବେଳେ ଲାଗିଗଲା ସେ ଜାଣି ପାରିଲେ ନାହିଁ । ନିଦ ଭାଙ୍ଗିବା ବେଳକୁ ଗୁଡ଼ାଏ ବେଳ ହେଲାଣି । ପିଲାଙ୍କର ଜଳଖିଆ ପର୍ବ ପ୍ରାୟ ଶେଷ ହେବା ଉପରେ ।

ଇସ୍ ! କମଳା ତରତର ହୋଇ ଉଠିବସିଲେ । ସେପଟୁ ପ୍ରୀତିର ସ୍ୱର ଭାସି ଆସୁଥିଲା । ସେ ବେଶ୍ 'ବଡ଼ବୋହୂ' ସ୍ୱରରେ ପୂଜାଙ୍କ ନନାକୁ କହୁଥିଲା, "ବୋଉଙ୍କର ଆଜି ଉପାସ । ତାଙ୍କ ପାଇଁ କିଛି ରନ୍ଧା ହେବନାହିଁ । ତୁମେ ଦ'ପହରେ ଖାଲି ଭାତଟିଏ ରାନ୍ଧ । ମାଂସ ଆଜି ମୁଁ କରିବି ।"

"ନାଇଁ ମ"—ଊର୍ମିଳା ଯୋଡ଼ିଲା, "ଭାତ ନକରି ଫ୍ରାଏଡ୍ ରାଇସ୍ କଲେ କେମିତି ହୁଅନ୍ତା ?"

ତଳୁର ସ୍ୱର ଶୁଣାଗଲା, "ହେ ନନା, ତୁମର ଏଥର ଛୁଟି । ଖାଲି ମସଲା ଟିକଏ ବାଟିଦେଇ ଯାଅ । ଆଜି ଆମେ ହାତରେ ରାନ୍ଧିବୁ ।"

"ତୁମେ କେହି ରାନ୍ଧିବ ନାହିଁ"—ଗେହ୍ଲାଳିଆ ଗମ୍ଭୀର ସ୍ୱର ସୁଦାପାର, "ଆଜି ରାତିଠୁଁ ତ ତୁମେମାନେ ପୁଣି ସେପେଇ ଘରେ ପଶିବ । ଏ ବେଳା ମୁଁ ରାନ୍ଧିବ । ଆଜିର ଲଞ୍ଚ୍ ମେନୁ ହେଲା—ହାଇଦ୍ରାବାଦୀ ବିରିୟାନୀ ଓ ଦହି ରାଇତା । ହଁ, ତୁମେମାନେ ଇଚ୍ଛାକଲେ ଟହଲିଆ କାମ କରିପାର ।"

ନିଶ୍ଚିନ୍ତ ଭାବରେ ହାଇ ମାରି ଆଉଥରେ ବିଛଣାରେ ଗଡ଼ିପଡ଼ିଲେ ବିମଳା ।



# ଅନେକ ବସନ୍ତ ପରେ

"ପାରୁଲ୍ !"

ଅଗଣାର ତୁଳସୀ ଚଉରାଟା ଟପି ନିଜ ରୁମ୍ ଆଡ଼କୁ ଯାଉ ଯାଉ ରହିଗଲା ପାରୁଲ୍ । ମୁହଁ ବୁଲାଇ ସେଇଠାରୁ ପଚାରିଲା, "କ'ଣ ଜେଜେ ?"

"ମୋ' ପାଖକୁ ଆ' ତ ମା' ।"

ହାତର ବହି, ଖାତା ଓ ଝାଳଭିଜା ଶାଢ଼ୀକୁ ଚାହିଁଲା ପାରୁଲ୍ । କଲେଜ ଫେରନ୍ତା କ୍ଳାନ୍ତ ଦେହରେ । ଇଚ୍ଛା ହେଉଛି ଧାଇଁଯାଇ ବିଛଣା ଉପରେ ଟିକିଏ ଗଡ଼ି ପଡ଼ିବାକୁ । କିନ୍ତୁ ଜେଜେଙ୍କ ଡାକ ତ ଆଉ ଏଡ଼ାଇ ଦେଇ ହେବନାହିଁ । ଆଜି ନୁହେଁ, ତା' ଜନ୍ମରୁ ସେ ଦେଖି ଆସିଛି ଜେଜେଙ୍କୁ ଏଇ ଘରର ମୁରବୀ ରୂପେ । ତାଙ୍କର କୌଣସି କଥାରେ କେହି କେବେ ଅବାଧ୍ୟ ହେବା ସେ ଜାଣିନାହିଁ—ବାବା, ବଦେଇ, କକେଇ, ପିଇସୀ କେହି ନୁହେଁ । ସମସ୍ତଙ୍କ ପରି ସେ ମଧ୍ୟ ଜେଜେଙ୍କୁ ମାନି ନେଇଥିଲା ଘରର ସର୍ବମୟ କର୍ତ୍ତା ରୂପେ ।

"ଏଇଠି ଏଇ ଚେୟାରରେ ବସ ମା'···ଆଜି ଏତେ ଡେରି ଯେ ।"

"କେମିଷ୍ଟ୍ରି ପ୍ରାକ୍‌ଟିକାଲ୍ ଥିଲା ଜେଜେ ।"

"ଓ"—ଶେଯୋ ନାତୁଣୀର କ୍ଳାନ୍ତ ଶ୍ରାନ୍ତ ମୁହଁକୁ ଚାହିଁଲେ ଶ୍ରୀଯୁକ୍ତ ପ୍ରସନ୍ନ ମହାପାତ୍ର । ଆଃ—କେତେ ଶୁଖିଲାଟା ଦିଶୁଛି । ସାରାଦିନ ଖାଇନି ବୋଧେ । ସେ ଶୁଖିଲା ମୁହଁକୁ ଦେଖି ଯାହା ପଚାରିବାକୁ ସେ ଡାକିଥିଲେ ସବୁ ଭୁଲିଗଲେ ଯେମିତି । କଥାଟା ତଣ୍ଟି ପାଖରେ ଅଟକିଗଲା ତାଙ୍କର ।

"ତୁ ଆଜି କଲେଜରେ କିଛି ଖାଇନୁ କି ମା' ?" କୋମଳ କଣ୍ଠରେ ପ୍ରଶ୍ନ କଲେ ପ୍ରସନ୍ନବାବୁ ।

ମୁଣ୍ଡ ହଲେଇ ମନାକଲା ପାରୁଲ୍—"ଲିଜର୍ ପିରିୟଡ୍ ନଥିଲା ।"

"କେତେ ଶୁଖିଲାଟା ଦିଶୁଛୁ । ଯା, ଆଗ ଗୋଡ଼, ହାତ, ମୁହଁ ଧୋଇ କିଛି ଖାଇନେ । ···ହୋ' ପୂର୍ଣ୍ଣିମା ନନା, ଧାନନାନୀଙ୍କୁ କ'ଣ ଜଳଖିଆ ଖାଇବାକୁ ଦିଅ ।"

ସେପଟେ ଘରୁ ନନାର ମୁହଁଟା ଦିଶି ପୁଣି ଲୁଚିଗଲା । ପାରୁଲ୍ ଉଠି ଧୀରେ ଧୀରେ ନିଜ ରୁମ୍‌କୁ ଚାଲିଗଲା ।

ସେଇଆଡ଼େ ଚିନ୍ତିତ ଭାବରେ ଚାହିଁରହିଥିଲେ ପ୍ରସନ୍ନ ମହାପାତ୍ର । ବୟସ ଅସି ବୟାଅଶୀ ଛୁଇଁଲଣି । ମନଟା କିନ୍ତୁ ଅଛି ବାଇଶ ବର୍ଷର । ଶରୀର ଆଉ ମନ ଦୁହେଁ ତାଳ ଦେଇ ପାରୁନ । ହାଇ ବ୍ଲଡ୍ ପ୍ରେସର ତାଙ୍କର । ବର୍ଷେ ତଳେ ମାଇନର ହାର୍ଟ ଆଟାକ୍ ମଧ୍ୟ ହୋଇଯାଇଛି । ଜୀବନ ତାଙ୍କର ଏବେ ଡାକ୍ତରଙ୍କ ନିୟମ-କାନୁନରେ ବନ୍ଧା । ବ୍ୟବସାୟରୁ ଏଇ କେତେ ମାସ ହେଲ ଛୁଟି ନେଇଛନ୍ତି—ଅବସର ନୁହେଁ । ନିଜର ରକ୍ତ ଢାଳି ଯେଉଁ ବିରାଟ ବ୍ୟବସାୟର ସୌଧ ସେ ତୋଳିଛନ୍ତି, ନିଃଶ୍ୱାସ ପ୍ରଶ୍ୱାସ ଚାଲୁଥିବା ଯାଏ ସେଥିପ୍ରତି ସେ ବୀତସ୍ପୃହ ହେବେ ବା କେମିତି ?

ଦାୟିତ୍ୱ ପୁଅ, ନାତିଙ୍କୁ ଦେଇଦେଲେ ମଧ୍ୟ ସବୁ କମ୍ପାନୀର ଚେୟାରମ୍ୟାନ୍ ସେ ନିଜେ । ଏବେ ମଧ୍ୟ ବ୍ୟବସାୟ ସମ୍ପର୍କୀୟ ସବୁ ଗୁରୁତର ନିଷ୍ପତ୍ତି ସେ ନିଜେ ଇ ନିଅନ୍ତି । ଉଇଲ୍‌ରେ କାହାକୁ କ'ଣ ଦେଇଯାଇଛନ୍ତି ଜାଣିବା ପାଇଁ ଔତ୍ସୁକତା ଅଛି ସମସ୍ତଙ୍କର, କିନ୍ତୁ ପଚାରିବାର ସାହସ ନାହିଁ ।

ବଡ଼ପୁଅ, ବୋହୂ କଲିକତାରେ ଥାଆନ୍ତି । ପୁଅ ତାଙ୍କର ଆଇଡ୍‌ମିମ୍ ପ୍ଲାଣ୍ଟର ମ୍ୟାନେଜିଂ ଡାଇରେକ୍ଟର । ଏବେ ବଡ଼ ନାତି ବାପାଙ୍କୁ ସାହାଯ୍ୟ କରେ । ବୋହୂ ସେଇ କଲିକତାର ଝିଅ । ପ୍ରେସିଡେନ୍‌ସି କଲେଜର ଇଂରାଜୀ ଅଧ୍ୟାପିକା । ମଝିଆଁ ପୁଅ ୟୁ କ୍ରେଷ୍ଟ ଆମେରିକାରୁ ଟେକ୍‌ସଟାଇଲ୍ସ ଟେକ୍‌ନୋଲୋଜି ପାଶ୍ କରି ଆସିବା ପରେ ତାଙ୍କର ଟେକ୍‌ସଟାଇଲ ମିଲ୍ ବୁଝାବୁଝି କରେ । ଥାଏ ତାଙ୍କରି ପାଖରେ । ଦିଲ୍ଲୀରେ ଥାଆନ୍ତି ସାନପୁଅ, ବୋହୂ । ଏକ କୋଟି ଟଙ୍କାର ଗାରମେଣ୍ଟ ଏକ୍ସପୋର୍ଟ ବ୍ୟବସାୟଟା ସେ ଦୁଇଜଣଯାକ ବୁଝାବୁଝି କରନ୍ତି । ସାନବୋହୂ ନାମଜାଦା ଡ୍ରେସ୍ ଡିଜାଇନର୍ । ଝିଅପୁଅରେ ଗୋଟିଏ ଗେହ୍ଲାଝିଅ ତାଙ୍କର । ଜୋଇଁ ବମ୍ବେର ସୁନାମଧନ୍ୟ ଚାର୍ଟାର୍ଡ଼ ଆକାଉଣ୍ଟାଣ୍ଟ । ଗଡ୍‌ରେଜ କମ୍ପାନୀର ଚାକିରି ଛାଡ଼ି ସେ ଏବେ ନିଜର କନ୍‌ସଲ୍‌ଟାନ୍‌ସି ଖୋଲିଛି । ଏବେ ମଧ୍ୟ ସହରର ଲୋକେ ପ୍ରସନ୍ନ ମହାପାତ୍ରଙ୍କ ଝିଅ ବାହାଘର କଥା ମନେକରନ୍ତି ।

ଏଇ ଲକ୍ଷ ଲକ୍ଷ ଟଙ୍କାର ବ୍ୟବସାୟ—ସବୁ ତାଙ୍କରି ହାତଗଢ଼ା । ଯେତେବେଳେ ତିରିଶ ବର୍ଷ ବୟସରେ ନିମ୍ନ ମଧ୍ୟବିତ୍ତ ପରିବାରର ତୃତୀୟ ପୁତ୍ର ପ୍ରସନ୍ନ ମହାପାତ୍ର ସେତେବେଳର ସାତଶହ ଟଙ୍କାର ଦରମା ଛାଡ଼ି ସରକାରୀ ଋଣ ନେଇ ବ୍ୟବସାୟ କରିବାକୁ ସ୍ଥିର କଲେ, ଅନେକ ଭାବିଲେ ସେ ବୋଧହୁଏ ପାଗଳ ହୋଇ ଯାଇଛନ୍ତି । ଫିଲିପ୍‌ସ କମ୍ପାନୀର ସ୍ୱଚ୍ଛନ୍ଦ ଚାକିରି ଛାଡ଼ି ଯେ ବ୍ୟବସାୟର ଅନିଶ୍ଚିତତାକୁ ଡାକି ଆଣେ ସେ ପାଗଳ ନୁହେଁ ତ ଆଉ କ'ଣ ?

ସତରେ ପାଗଳ ହୋଇଯାଇଥିଲେ ପ୍ରସନ୍ନବାବୁ । ସେଦିନ କଥା ଏବେ ମନେପଡ଼ିଲେ ଶରୀରଟା ତାଙ୍କର ନିଥର, ନିଶ୍ଚଳ ହୋଇଯାଏ । ଆଣ୍ଠୁ ମାଡ଼ି ବସି ରାୟବାହାଦୁର ବିକ୍ରମ ଚୌଧୁରୀଙ୍କୁ ମାଗିଥିଲେ ପ୍ରମିଳାକୁ ! ପ୍ରମିଳା···ଯାହାର ସ୍ମୃତି ଏବେ ମଧ୍ୟ ପୁଲକ ଆଣେ ପ୍ରସନ୍ନବାବୁଙ୍କ ମନରେ । ଉହା ଉହା, ଟଣା ଟଣା ବଡ଼ ଆଖି ଦୁଇଟିର ଅବୁଝା ଭାଷାରୁ ସେ

କ'ଣ ବୁଝିଥିଲେ କେଜାଣି, ସବୁଦିନ ପାଇଁ ସେ ଆଖିର ଗହୀରତା ମାପିବା ପାଇଁ ଆଶାୟୀ ହୋଇଯାଇଥିଲେ ବିକ୍ରମ ଚୌଧୁରୀଙ୍କ ପାଖକୁ ।

ବଜ୍ର ଗମ୍ଭୀର କଣ୍ଠରେ ରାୟବାହାଦୁର ଶେଷ ନିଷ୍ପତ୍ତି ଶୁଣେଇ ଦେଇଥିଲେ, "ଏ ବାହାଘର ହୋଇ ପାରିବ ନାହିଁ ପ୍ରସନ୍ନ । ସନ୍ଧ୍ୟାର ବାହାଘର ମୁଁ ସ୍ଥିର କରିଛି ମୋ ପୁଅ ରଣବୀର ସହିତ । ସନ୍ଧ୍ୟାର ବାପା ଭବତୋଷଙ୍କର ମଧ୍ୟ ସେଇଆ ଇଚ୍ଛା ଥିଲା ।" ଟିକିଏ ରହିଯାଇ ସେ ପୁଣି କହିଲେ, "ଫିଲିପ୍‌ସ କମ୍ପାନୀରେ ତୁମର କିରାଣି ହୋଇଯିବା କଥା ମୁଁ ଶୁଣିଛି । କିନ୍ତୁ···ଲେଟ୍ ଅସ୍ ଫେସ୍ ଇଟ୍ ୟଙ୍ଗମ୍ୟାନ୍—ଦରମା ଗଣ୍ଡାକ ଛଡ଼ା ସନ୍ଧ୍ୟାକୁ ସ୍ୱାଚ୍ଛନ୍ଦ୍ୟ ଦେବାକୁ ତୁମର ଅଛି କ'ଣ ?

ରାୟବାହାଦୁରଙ୍କ ବନ୍ଧୁ କନ୍ୟା ସନ୍ଧ୍ୟା । ବନ୍ଧୁ, ବନ୍ଧୁପତ୍ନୀଙ୍କର ଅକାଳ ବିୟୋଗରେ ତା'ର ସମସ୍ତ ଦାୟିତ୍ୱ ସେ ନିଜେ ବହନ କରିଥିଲେ ।

ଶେଷ ଥରକ ପାଇଁ ଅନୁନୟଭରା କଣ୍ଠରେ କହିଥିଲେ ପ୍ରସନ୍ନବାବୁ, "ଆପଣ ସନ୍ଧ୍ୟାକୁ ଟିକିଏ ପଚାରନ୍ତୁ ମଉସା । ତାର ଯଦି ଇଚ୍ଛା ଥାଏ···"

ଭ୍ରୂଲତା ଦୁଇଟି କୁଞ୍ଚିତ କରି ତାଙ୍କୁ କିଛି ସମୟ ଚାହିଁ ରହିଥିଲେ ରାୟବାହାଦୁର ବିକ୍ରମ ଚୌଧୁରୀ । ଆଖିରୁ ଚଷମାଟା ଖୋଲି ପୋଛୁ ପୋଛୁ ସେ ପୁଣି କହିଥିଲେ, "ଠିକ୍ ଅଛି । ସନ୍ଧ୍ୟାକୁ ମୁଁ ଏ ବିଷୟରେ ପଚାରିବି । ଚିନ୍ତା କର ନାହିଁ ପ୍ରସନ୍ନ, ତା' ମତକୁ ମୁଁ ନିଶ୍ଚୟ ସମ୍ମାନ ଦେବି ।"

ଅଥଚ ସବୁଠାରୁ ଆଶ୍ଚର୍ଯ୍ୟଜନକ ଘଟଣା ସେଇଠି ଘଟିଥିଲା । ସନ୍ଧ୍ୟା ନିଜେ ହିଁ ନାହିଁକରି ଦେଇଥିଲା । ପ୍ରସନ୍ନ ମହାପାତ୍ରଙ୍କ ପ୍ରତି ତା'ର କୌଣସି ଦୁର୍ବଳତା ନାହିଁ । ଚୌଧୁରୀ ମଉସାଙ୍କ ନିଷ୍ପତ୍ତି ହିଁ ଶେଷ ।

ସ୍ଥାଣୁ ପାଲଟିଥିଲେ ପ୍ରସନ୍ନ ମହାପାତ୍ର । ଆଘାତର ପ୍ରଥମ ଧୋକ୍ଟା କଟିଯିବା ପରେ ହୃଦୟରେ ସ୍ଥାନ ନେଲା ସ୍ତୂପୀକୃତ ଘୃଣା—ସନ୍ଧ୍ୟା ପ୍ରତି, ସମଗ୍ର ଚୌଧୁରୀ ପରିବାର ପ୍ରତି । ଏବେ ବେଳେ ବେଳେ ଭାବନ୍ତି ପ୍ରସନ୍ନବାବୁ । ସେ କ'ଣ ସେଇ ଆଖି ଦୁଇଟିର ଭାଷାକୁ ଠିକ୍ ଭାବରେ ପଢ଼ି ପାରି ନଥିଲେ, ନା ଚୌଧୁରୀ ବଂଶର ଐଶ୍ୱର୍ଯ୍ୟ ସନ୍ଧ୍ୟାର ଆଖିରେ ମାୟା ଅଞ୍ଜନ ଲଗାଇ ଦେଇଥିଲା ?

ସେଇ ଘଟଣା ପରେ ଚାକିରି ଛାଡ଼ି ବ୍ୟବସାୟ କରିବାକୁ ସେ ସ୍ଥିର କରିଥିଲେ । ବ୍ୟବସାୟର ଐଶ୍ୱର୍ଯ୍ୟ ଚାକିରିରେ ବା କାହିଁ ? ଐଶ୍ୱର୍ଯ୍ୟ ଆହରଣ କିନ୍ତୁ ପ୍ରସନ୍ନ ମହାପାତ୍ରଙ୍କର ଲକ୍ଷ୍ୟ ନଥିଲା, ଲକ୍ଷ୍ୟ ଥିଲା ଚୌଧୁରୀବଂଶର ବ୍ୟବସାୟର ମୂଳୋତ୍ପାଟନ କରିବା ଏବଂ ସେହି ଲକ୍ଷ୍ୟ ହାସଲ କରିବାପାଇଁ ସେ ଏକନିଷ୍ଠ ଭାବରେ ଲାଗିପଡ଼ିଥିଲେ । ବାଷଠି ବର୍ଷ ବୟସରେ ସେ ଯେତେବେଳେ ହାଇ ବ୍ଲଡ୍‌ପ୍ରେସର ଯୋଗୁଁ ଶଯ୍ୟାଶାୟୀ ହୋଇପଡ଼ିଥିଲେ, ପୁଅମାନେ ଅନୁରୋଧ କରିଥିଲେ—ବାପା, ଏଥର ବିଶ୍ରାମ ନିଅନ୍ତୁ ।

ବିଶ୍ରାମ !! ହସିଥିଲେ ପ୍ରସନ୍ନବାବୁ । ତାଙ୍କ ଲକ୍ଷ୍ୟ ସାଧନର ଶେଷ ପାହାଚ ଯେ ଆଉରି ବାକି ।

ଏହାର ପାଞ୍ଚ ବର୍ଷ ପରେ ସେ ବେନାମୀ "ଚୌଧୁରୀ ଟେକ୍‌ସଟାଇଲ୍‌ସ ମିଲ୍‌ସ"ର କାରଖାନା ଧରିଥିଲେ । ଇନ୍‌ଫ୍ଲେସନ୍‌ର ଏ ଯୁଗରେ ଲୁଗା ବଜାରର ପୂର୍ବ ଚମକ ଏବେ ଅତୀତ, ସମସ୍ତେ ବାରଣ କରିଥିଲେ ପ୍ରସନ୍ନ ମହାପାତ୍ରଙ୍କୁ । ଲୁଗାକଲମାନଙ୍କର ସେ ଏବେ 'ଘୋଡ଼ା ଛ' ଟଙ୍କାକୁ ଦାନା ନ' ଟଙ୍କା' ଅବସ୍ଥା । ସେ କିନ୍ତୁ କାହାର ମତ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲେ । ତାଙ୍କ କମ୍ପାନୀର ବୋର୍ଡ଼ ଅଫ୍ ଡାଇରେକ୍ଟରସ୍‌ଙ୍କର ଧରୁ ମୁଣ୍ଡ ଚେୟାରମ୍ୟାନଙ୍କ ଜିଦ ଆଗରେ ହାର ମାନିଗଲା ।

ସମସ୍ତଙ୍କର ଭବିଷ୍ୟତ ବାଣୀକୁ ଭୁଲ ପ୍ରମାଣିତ କରି ମାତ୍ର ଦେଢ଼ବର୍ଷ ମଧ୍ୟରେ 'ଚୌଧୁରୀ ଟେକ୍‌ସଟାଇଲ୍‌ସ ମିଲ୍‌ସ'ର ପୂର୍ବଶ୍ରୀ ଫେରିଆସିଲା । ସେତେବେଳେ କିନ୍ତୁ ଏହାର ନାମ ବଦଳି ଯାଇ ହୋଇଥିଲା 'ନ୍ୟୁ ଓ୍ୱେଭ୍ ଟେକ୍‌ସ୍‌ଟାଇଲ୍‌ସ ମିଲ୍‌ସ' । ମନ ଖୋଲି ହସିଥିଲେ ପ୍ରସନ୍ନ ମହାପାତ୍ର ସେଦିନ । ଚୌଧୁରୀ ପରିବାର ଉପରେ ଶେଷ ପ୍ରତିଶୋଧ ସେ ନେଇ ପାରିଛନ୍ତି ।

"କେଜେ !" ...ଭାବନାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା ମହାପାତ୍ରଙ୍କର । ସାମ୍ନାରେ ଷ୍ଟ୍ର' କପ୍ ଧରି ଠିଆ ହୋଇଛି ପାରୁଲ୍—ମହିଆଁ ପୁଅର ନଡ଼ିଝିଅ । "ସେତେବେଳଠୁଁ ଏମିତି ବସିଛ କେଜେ, କ'ଣ ଏତେ ଭାବୁଛ ସେ !"

ସିଧା ହୋଇ ପାରୁଲ୍ ମୁହଁକୁ ଗ୍ରହିଲେ ପ୍ରସନ୍ନବାବୁ । ଗୋରା ମୁହଁଟା କେମିତି ଶେତାଳିଆ ଦିଶୁଛି । ଆଖି ତଳେ କଳା କଳା ଦାଗ । ଚେହେରାଟା କ'ଣ କଲାଣି ? ଜୋର୍ କରି ମୁହଁରେ ଫିକାଳିଆ ହସ ଫୁଟେଇବାର ଚେଷ୍ଟା କରୁଛି । ବନ୍ଧୁ ଗଣେଶ ବାବୁଙ୍କ ଅଜାଡ଼ିଆ କଥା ମନେପଡ଼ିଗଲା—"ଶୁଣୁଛ ପାରୁଲ୍‌ର ମନଟା ଅନ୍ୟଆଡ଼େ ବନ୍ଧା ପଡ଼ିଗଲାଣି ।"

"ଓଃ—ବସ ମା' ବସ, ତୋ' ମୁହଁଟା କାହିଁକି ଏମିତି ଦିଶୁଛି ! କ'ଣ ହୋଇଛି ମା ?"

"କିଛି ନାହିଁ କେଜେ । ଆଜି ନା ଲଗି ଲଗି ପାଞ୍ଚଟା ପିରିଅଡ୍, ତା'ପରେ ପୁଣି ପ୍ରାକ୍‌ଟିକାଲ୍ । ବାବା ! ଅବସ୍ଥା ଗଲାଣି ।" କଥାଟାକୁ ହାଲୁକା କରି ପାରୁଲ୍ କହିଲା ।

"ମୋଠାରୁ କଥା ଲୁଚଉଛୁ ? ତୋ' ମନରେ କିଛି ଅଭାବ ରହିଯାଇନି ତ ?"

"ଏମିତି କାହିଁକି କହୁଛ କେଜେ ! ତୁମେ ମୋତେ ଯାହା ଦେଇଛ, ସହରରେ କେତେଜଣ ଝିଅଙ୍କର ଅଛି ?"

"ହଁ...ତୋ' ପାଇଁ ପଇସାର ଅଭାବ ରଖିନି । କିନ୍ତୁ ମନରେ କିଛି ଅଭାବ ନାହିଁ ତ ମା' ?"

"ନାଇଁ କେଜେ !" କେମିତି ଏକ ଦୃଢ଼ ସ୍ୱରରେ ପାରୁଲ୍ କହିଲା ।

"ଦେଖ ମା, ମୋର ମନେହୁଏ କ'ଣ ଯେମିତି କେଉଁକଥା ତୋ' ମନରେ ଦୁଃଖ... କଥାଟା ବାହାର ଲୋକଙ୍କଠାରୁ ଶୁଣିବା ଅପେକ୍ଷା ରୁ ଯଦି ନିଜେ କହନ୍ତୁ..."

ସେମିତି ସ୍ଥିର ଭାବରେ ତଳକୁ ମୁହଁ ପୋତି ଠିଆ ହୋଇଥିଲା ପାରୁଲ୍ । ଆଖି କୋଣରେ

ବୋଧେ ଦୁଇ ବୁନ୍ଦା ଲୁହ ଚକ୍ ଚକ୍ କରୁଥିଲା, ଅନ୍ଧାରରେ ଠିକ୍ ଦେଖିପାରୁ ନଥିଲେ ପ୍ରସନ୍ନବାବୁ ।

"ତୋ' ବୁଢ଼ା ପୁଅକୁ କିଛି କହିବୁ ନାହିଁ ତ ମା'—ଅତି କୋମଳ କଣ୍ଠରେ ଅଭିମାନ ଭରା କଥାଟା ସେ କହିଲେ ।

"ଜେଜେ !" ସହିବାର ବନ୍ଧ ସବୁ ଯେମିତି ଭାଙ୍ଗିଗଲା ପାରୁଲ୍‌ର । ଜେଜେଙ୍କ ଆଣ୍ଠୁ ଭିତରେ ମୁହଁ ମାଡ଼ିଦେଇ ସକ୍ ସକ୍ ହୋଇ କାନ୍ଦି ପକେଇଲା ।

"ମତେ କିଛି ପଚାରନା ଜେଜେ—ତୁମକୁ କହିବା ଭଳି କିଛି କଥା ନାହିଁ । ତୁମେ ନିଶ୍ଚିନ୍ତ ରୁହ...ତୁମ ମନରେ କଷ୍ଟ ଦେବା ଭଳି କୌଣସି କାମ ମୁଁ କେବେହେଲେ କରିବିନାହିଁ ।" ଏକା ନିଃଶ୍ୱାସକେ କହିପକାଇଲା ପାରୁଲ୍ ।

ଏ କଥାର କୌଣସି ଜବାବ ଦେଲେ ନାହିଁ ବୃଦ୍ଧ ପ୍ରସନ୍ନବାବୁ । ନାତୁଣୀ ମୁହଁରୁ ସବୁକଥା ଶୁଣିବାକୁ ଯେମିତି ସେ ଅପେକ୍ଷା କରୁଥିଲେ ।

ସଜାଡ଼ି ହୋଇ ବସିଲା ପାରୁଲ୍, "ଜାଣେ ଜେଜେ, ଶୁଭବ୍ରତ ଓ ମୋ' କଥା କେଉଁଠାରୁ ଶୁଣିଛ ବୋଧେ । ଶୁଭବ୍ରତ ମୋତେ ପ୍ରଥମରୁ ଭଲ ଲାଗଥିଲେ । କିନ୍ତୁ ଏ ସମ୍ପର୍କ କେବଳ ଅଶାନ୍ତିରେ ହିଁ ଶେଷ ହେବ ଜାଣି ସେ ସମ୍ପର୍କ ମୁଁ ସବୁଦିନ ପାଇଁ ଭାଙ୍ଗି ଦେଇଛି ।"

ଚୁପ୍ ହୋଇଗଲା ପାରୁଲ୍ । ତା' ଜେଜେଙ୍କ ମୁହଁରେ ମଧ୍ୟ କଥା ନଥିଲା । କିଛି ସମୟର ନୀରବତା ପରେ ହଠାତ୍ ସେଠାରୁ ଉଠି ଚାଲିଗଲା ପାରୁଲ୍ । ପ୍ରସନ୍ନବାବୁ ସେଇମିତି ଚିନ୍ତାମଗ୍ନ ଥିଲେ ।

ପରେଶବାବୁ ଯେତେବେଳେ ଘରେ ପହଞ୍ଚିଲେ ଆଠଟା ବାଜିଯାଇଥିଲା । ମିଲ୍‌ରୁ ପ୍ରାୟ ଏହି ସମୟରେ ସେ ଫେରନ୍ତି । ସିଡ଼ି ଦେଇ ନିଜ ରୁମ୍‌କୁ ଯାଉ ଯାଉ ଆଶ୍ଚର୍ଯ୍ୟରେ କ୍ଷଣେ ରହିଗଲେ । ସେଇଠାରୁ ପ୍ରସନ୍ନବାବୁଙ୍କ ରୁମ୍ ଭିତର ସେ ପରିଷ୍କାର ଭାବରେ ଦେଖି-ପାରୁଥିଲେ । କ୍ଷିପ୍ର ଗତିରେ ଆଗେଇଗଲେ ସେଇଆଡ଼େ । ପ୍ରସନ୍ନ ମହାପାତ୍ରଙ୍କ ମୁହଁରେ ପାଇପ୍ । ସାମ୍ନାରେ ସ୍କଚ୍ ହୁଇସ୍କିର ଅଧାଭରା ଗ୍ଲାସ୍ । କେଉଁ ଭାବନା-ରାଜ୍ୟରେ ହଜି ଯାଇଛନ୍ତି ସେ ।

"ବାବା, ଏ କ'ଣ ? ଡାକ୍ତର ପରା ମନାକରିଥିଲେ ।"

ହାତର ଇଙ୍ଗିତରେ ସେଠାରୁ ଚାଲିଯିବା ପାଇଁ ଇଙ୍ଗିତ କଲେ ବୃଦ୍ଧ ମହାପାତ୍ର ।

"ବାବା..." ପ୍ରତିବାଦ ଭଙ୍ଗୀରେ ପୁଣି କ'ଣ କହି ଆସୁଥିଲେ ପରେଶବାବୁ ।

ଏଥରକ ମୁଣ୍ଡ ଟେକି ମଝିଆଁ ପୁଅ ମୁହଁକୁ ସିଧା ଚାହିଁଲେ ପ୍ରସନ୍ନ ମହାପାତ୍ର । ସେ ଦୃଷ୍ଟିରେ କ'ଣ ଥିଲା କେଜାଣି, ମୁହଁପୋତି ସେଠାରୁ ଚାଲିଗଲେ ପରେଶବାବୁ ।

ଶୁଭବ୍ରତ...ଶୁଭବ୍ରତ ଚୌଧୁରୀ । ପ୍ରସନ୍ନବାବୁ ଯଦି ଜାଣିଥାଆନ୍ତେ, ଚୌଧୁରୀ ପରିବାର ଉପରେ ତାଙ୍କର ଶେଷ ଆଘାତ ବୁମେରାଂ ପରି ତାଙ୍କ ଉପରକୁ ଫେରି ଆସିବ, ତେବେ

ସେ ବୋଧହୁଏ କେବେହେଲେ ଶୁଭବ୍ରତ ଚୌଧୁରୀଙ୍କୁ ମ୍ୟାନେଜ୍‌ମେଣ୍ଟ ଟ୍ରେନି ରୂପେ ନିଯୁକ୍ତ ଦେଇନଥାନ୍ତେ । ପରିଷ୍କାର ଭାବରେ ମନେପଡ଼ୁଛି ଦୁଇ ବର୍ଷ ତଳର ଇଣ୍ଟରଭ୍ୟୁ କଥା । ପ୍ରାର୍ଥୀମାନଙ୍କର ବାୟୋଡାଟା ଉପରେ ଆଖି ବୁଲାଉ ବୁଲାଉ ଏହି ଶୁଭବ୍ରତ ଚୌଧୁରୀର ଦରଖାସ୍ତ ପାଖରେ ଅଟକିଯାଇଥିଲେ 'ନ୍ୟୁ ଓ୍ୱେଭ୍ ଟେକ୍‌ସଟାଇଲ୍‌ସ ମିଲ୍‌ସ'ର ଚେୟାରମ୍ୟାନ ପ୍ରସନ୍ନ ମହାପାତ୍ର । ଆଶ୍ଚର୍ଯ୍ୟ !

ଆହୁରି ଆଶ୍ଚର୍ଯ୍ୟ ହୋଇଥିଲେ ଇଣ୍ଟରଭ୍ୟୁ ଦିନ ଶୁଭବ୍ରତ ସାଙ୍ଗରେ କଥାବାର୍ତ୍ତା କରି । ମନେ ମନେ ଖୁସି ହୋଇଥିଲେ ଯେ ଶୁଭବ୍ରତର ଜନ୍ମ ଅନ୍ତତଃ ପନ୍ଦର ବର୍ଷ ଆଗରୁ ହୋଇନାହିଁ । ତାହେଲେ ବୋଧହୁଏ ଚୌଧୁରୀ ଟେକ୍‌ସଟାଇଲ୍‌ସ ମିଲ୍‌ସ କେବେହେଲେ ତାଙ୍କର ହୋଇପାରି ନ ଥାଆନ୍ତା । ସୁଦୀର୍ଘ ଗୌର ତନୁ, ବୁଦ୍ଧିଦୀପ୍ତ ଚକ୍ଷୁ । ଅଭାବ ନାହିଁ ଯୋଗ୍ୟତାର । କାନପୁର ଆଇ. ଆଇ. ଟି.ରୁ ଇଞ୍ଜିନିୟରିଂ ପାସ୍ କରି ସାରିବା ପରେ ଅହମ୍ମଦାବାଦର ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ ଅଫ ମ୍ୟାନେଜମେଣ୍ଟରୁ ଏମ୍. ବି. ଏ. କରିଛି ।

ଅଥଚ ଏତେ ଯୋଗ୍ୟତା ଥାଇ ମଧ୍ୟ ନିଜ ପରିବାରର ପରମ ଶତ୍ରୁ ପ୍ରସନ୍ନ ମହାପାତ୍ରଙ୍କ କମ୍ପାନୀରେ ଚାକିରି କରିବା ପାଇଁ ଟିକେ ଦ୍ୱିଧା ନାହିଁ । ମନେ ମନେ ଚକିତ ହେଉଥିଲେ ପ୍ରସନ୍ନବାବୁ । ଶୁଭବ୍ରତର ଆତ୍ମଗୌରବ କ୍ଷୁଣ୍ଣ କରିବା ପାଇଁ ସମସ୍ତ ପ୍ରକାର ଯୋଜନା କରି-ଦେଇଥିଲେ ଯେମିତି । ହାର୍ଟ ଆଟାକ୍ ହେବା ଦିନଠାରୁ ଶୁଭବ୍ରତ ହିଁ ସବୁ ରିପୋର୍ଟ, ଫାଇଲ୍ ନେଇ ତାଙ୍କ ଘରକୁ ଯାଉଥିଲା । ତା' ଉପରେ ହାକିମାତି କରି କେମିତି ଏକ ସାତ୍ତ୍ୱିକ ଆନନ୍ଦ ପାଉଥିଲେ ସେ । ଆଶ୍ଚର୍ଯ୍ୟର କଥା, ଏସବୁ ଶୁଭବ୍ରତକୁ ଛୁଇଁ ପାରୁ ନଥିଲା ଯେମିତି । ତା'ର ପ୍ରଫେସନାଲିଜିମ୍‌ରେ ବିସ୍ମିତ ହୋଇଥିଲେ ପ୍ରସନ୍ନ ମହାପାତ୍ର ।

ଅଥଚ ଏ ସବୁ କ'ଣ ହୋଇଗଲା ! ପାରୁଲ୍ ଆଉ ଶୁଭବ୍ରତ !! ଏଇ ପାରୁଲ ଏବେ ତାଙ୍କୁ କହିଗଲା ଯେ ଏ ସମ୍ପର୍କ ସେ ନିଜେ ଭାଙ୍ଗି ଦେଇଛି । ସମ୍ପର୍କ କ'ଣ ଏମିତି ଭାଙ୍ଗି ହୁଏ ? ମୁହଁ ଉପରେ ଜୋର୍ କରି କହିଦେଲେ କ'ଣ ସବୁ ବଦଳିଯାଏ ? ଭଲପାଇବାର ଉତ୍ସକୁ ଏମିତି କ'ଣ ଶେଷ କରିଯାଇପାରେ ? ସେ କ'ଣ ପାରିଛନ୍ତି ? ଦୀର୍ଘ ଷାଠିଏ ବର୍ଷ ପରେ ସେ କ'ଣ ଭୁଲିପାରିଛନ୍ତି ସନ୍ଧ୍ୟାକୁ ? ଆଉ କେହି ନଜାଣନ୍ତୁ ପଛକେ, ସେ ନିଜେ ଜାଣନ୍ତି, ଚୌଧୁରୀ ପରିବାର ସହିତ ତାଙ୍କର ଏ ବିଦ୍ୱେଷ ସନ୍ଧ୍ୟାର ସ୍ମୃତିକୁ ପ୍ରଜ୍ୱଳିତ କରି ରଖିଛି କେବଳ । କେହି ନଥିଲାବେଳେ ହଠାତ୍ ମନ-ପ୍ରାଙ୍ଗଣକୁ ପଶିଆସେ ସତର ବର୍ଷର ଶ୍ୟାମଳୀ ଝିଅଟିଏ, ଭସା ଭସା କଥାକୁହା ଆଖି, ଥର ଥର ଓଠ, ଲମ୍ବା ବେଣୀ ।

ପ୍ରେମର ଅନ୍ୟ ନାମ ଜ୍ୱଳନ ନୁହଁ ତ ଅଉ କ'ଣ ? ସନ୍ଧ୍ୟାର ଆଘାତ ସତ୍ତ୍ୱେ, ଏ ଦୀର୍ଘ ଷାଠିଏ ବର୍ଷର ବ୍ୟବଧାନ ସତ୍ତ୍ୱେ ତାଙ୍କ ହୃଦୟ-ମନ୍ଦିରରେ ଏବେ ବି ସନ୍ଧ୍ୟା ବିଦ୍ୟମାନ । ସେ ପାରିନାହାନ୍ତି, ପାରିବ କ'ଣ ପାରୁଲ ? ତାଙ୍କରି ନାତୁଣୀ ତ ! ସତରେ କ'ଣ ଶୁଭବ୍ରତକୁ ସେ ଭୁଲିପାରିବ ? ପାରୁଲର ଶୁଖିଲା ମୁହଁ ମନେପଡ଼ିଯାଉଥିଲା ପ୍ରସନ୍ନ ବାବୁଙ୍କର—ଆହା, ବିଚାରୀଟା କେତେ କଷ୍ଟ ପାଉଛି ? ଗେହ୍ଲା ନାତୁଣୀ ପାଇଁ ମନଟା

ବିକଳ ହୋଇ ଉଠିଲା ତାଙ୍କର । ନା, ତାଙ୍କ ପରି ପାରୁଲର ଯାଏ ଜୀବନ ହାହାକାରରେ ଭରିନଯାଉ ।

କି ଏକ ନିଷ୍ପତ୍ତି ନେଇ ଉଠିପଡ଼ିଲେ ପ୍ରସନ୍ନ ମହାପାତ୍ର । ଝରକା ଦେଇ ଗୃହିଁଲେ । ପାରୁଲ କୋଠରିର କବାଟ ତଳ ଫାଙ୍କ ଦେଇ ଆଲୁଅ ଦେଖାଯାଉଛି । ଶୋଇନି ପାରୁଲ । ବସି ବସି ଭାବୁଥିବ ଶୁଭବ୍ରତ କଥା । ନହେଲେ ଉଦାସୀ ଆଖି ନେଇ ଗୃହିଁଥିବ ଅଷ୍ଟମୀ ଜହ୍ନକୁ ।

ନା…ନା…

"ଜେଜେ ତୁମେ ! ଶୋଇନ !" କବାଟ ଖୋଲି ଆଶ୍ଚର୍ଯ୍ୟ ହୋଇଗଲା ପାରୁଲ । "ନାଇଁ ମା, ତୋ ଘରର ଆଲୁଅ ଦେଖି ଜାଣିଲି ତୁ ମଧ୍ୟ ଶୋଇନୁ । ଭାବିଲି ଯାଏଁ ଦେଖେ, ଝିଅଟା କ'ଣ କରୁଛି ।"

"ମୁଁ ଶୋଇପଡ଼ିବି ଏବେ । କିନ୍ତୁ ତୁମେ କାହିଁକି ଶୋଇନ ଏ ଯାଏଁ ? ଦେହ ଖରାପ ହେଲେ ବୁଝିବ !" କେମିତି ଆକଟିବା ସ୍ୱରରେ ପାରୁଲ କହିପକାଇଲା ।

"ମୋ ମା'ଟା ଏଠି ଏତେ କଷ୍ଟ ପାଉଛି—ଏ କଥା ଜାଣିବା ପରେ ମୋର କ'ଣ ନିଦ ହେଉଛି ।"

କିଛି କହିଲା ନାହିଁ ପାରୁଲ । କ'ଣ ଭାବିବା ପରି ହୋଇ ମହାପାତ୍ର କହିଲେ, "କାଲି ଶୁଭବ୍ରତକୁ କହିବୁ ମୋତେ ଥରେ ଦେଖାକରିବ ।"

ଏଥରକ ମୁଣ୍ଡ ଟେକିଲା ପାରୁଲ୍ । "ତାଙ୍କର କିଛି ଦୋଷ ନାହିଁ ଜେଜେ, ସବୁ ଦୋଷ ମୋର ।"

ହସିପକାଇଲେ ପ୍ରସନ୍ନବାବୁ, "ଆରେ ଦୁଷ୍ଟୀ, ଦେଖିପାରୁନ—ଡାକୁଛି ପଗ୍ଭରିବାକୁ ସେ ଏତେ ଯୋଗ୍ୟର ପିଲା, ଅଥଚ ଗୋଟାଏ ଝିଅର ପିଲାକଥା ନିଷ୍ପତ୍ତି ମାନିନେଲା ! ମତେ ତ ଥରେ ପଗ୍ଭରିଥାଆନ୍ତା !"

କାବା ହୋଇ ପାରୁଲ୍ ଗୃହିଁରହିଥିଲା ତାଙ୍କୁ ।

"ହଁ, ତାକୁ ଆଉ ଥରେ ତାଗିଦ କରିଦେବି, ମୋ ଗେହ୍ଲୀ ମା'ର ସବୁ ଖବର ବୁଝିବାରେ ଯେମିତି ହେଳା ନକରେ ।"

"ଜେଜେ"—ତାଙ୍କ ଛାତିରେ ମୁହଁ ଲୁଚାଇ କାନ୍ଦିପକାଇଲା ପାରୁଲ୍, କାନ୍ଦୁ କାନ୍ଦୁ ପୁଣି ହସିପକାଇଲା ସେ । ସେ ଲୁହାବୋଳା ମୁହଁର ହସ ଦେଖି ମନେ ମନେ ଚିନ୍ତା କରୁଥିଲେ ପ୍ରସନ୍ନବାବୁ, ଏ ଆନନ୍ଦର ଅଫୁରନ୍ତ ଫୁଆରକୁ ସେ ଏତେ ଦିନ ରୁଦ୍ଧ କରି ରଖିଥିଲେ ଯାହା !



# ଆକାଶ ଯେଉଁଠି କଥା କହେ

ବାରହଜାର ଫୁଟ ତଳ ପୃଥିବୀର ରଙ୍ଗ ଦିଶୁଛି ଧୂସର । ଆଉ ଆକାଶର ନୀଳ ଗୁମ୍ଫା ଚିରି ଉଡ଼ିଯାଉଛି ଇନ୍ଦର୍ ମାଲହୋତ୍ରାର ମିଗ୍-୨୧ ଫାଇଟର୍ ଉଡ଼ାଜାହାଜ । ଗୋଟାଏ 'ରେକି' ଏକ୍ସରସାଇଜ୍ ସାରି ବେସ୍‌କୁ ଫେରିଆସୁଛି ସେ । ମନରେ ଭାବନାର ହାଲୁକା ବାଦଲମାନ କ୍ଷଣକେ ପାଇଁ ତାକୁ ଅନ୍ୟମନସ୍କ କରିଦେଇଛନ୍ତି । ହଠାତ୍ ତା' ଇୟର୍‌ଫୋନ୍ ଦେଇ କଣ୍ଟ୍ରୋଲର୍‌ର ଆୱାଜ ତାକୁ ଫେରେଇ ଆଣିଲା କକ୍‌ପିଟ୍‌ର ଜଗତକୁ ।

—"ଆଲ୍‌ଫା କଣ୍ଟ୍ରୋଲ ଟୁ ଡେଲ୍‌ଟା ଫୋର୍—ଅନ୍ ଟୁ ଏୟାର ଟ୍ରାଫିକ୍ କଣ୍ଟ୍ରୋଲ, ରିଡ୍ୟୁସ୍ ଓ୍ୱାନ୍ ଥାଉଜାଣ୍ଡ, କମ୍ ଇନ୍ ଫର୍ ଲ୍ୟାଣ୍ଡିଙ୍ଗ୍..."

—"ରୋଜର୍—ଡେଲ୍‌ଟା ଫୋର୍ ଅନ୍ ଚ୍ୟାନେଲ୍ ଓ୍ୱାନ୍, କମିଙ୍ଗ ଇନ୍ ଫର୍ ଲ୍ୟାଣ୍ଡିଙ୍ଗ୍ ।" ଉତ୍ତର ଦେଲା ଇନ୍ଦର୍ ।

ମିଗ୍-୨୧ ବିମାନକୁ ଟିକିଏ ବାଁକୁ କଡ଼େଇନେଲା ସେ । ବାର ହଜାର ଫୁଟରୁ ତଳକୁ ଖସୁଛି ତା' 'ଡେଲ୍‌ଟା ଫୋର୍' । ଧୂସର ପୃଥିବୀ ରଙ୍ଗ ବଦଳେଇ ସବୁଜ ଦେଖାଯାଉଛି । ଧୀରେ ଧୀରେ ରନ୍‌ୱେ ମଧ୍ୟ ପରିଷ୍କାର ଦେଖାଗଲା । ଆଉ ଟିକିଏ ପରେ ତା' ବିମାନ ପୁଣି ଫେରିଆସିବ ରନ୍‌ୱେର ଟାରମାକ୍ ଉପରକୁ । ଗତିରୋଧକ ଆକାଶଛତା ଯୋଡ଼ିକ ଖୋଲିଗଲାଣି । ଗୋଟାଏ ଗର୍ଜନରତ ଦୈତ୍ୟ ପରି ଇନ୍ଦର୍‌ର ବିମାନ ପୃଥିବୀ ସ୍ପର୍ଶକଲା । ଇଅର୍‌ଫୋନ୍‌ରେ କଂଟ୍ରୋଲ ଟାୱାର କହୁଛି—"ଗୁଡ୍ ଲ୍ୟାଣ୍ଡିଙ୍ଗ୍ ପାଇଲଟ୍ ।"

'ଜି' ସୁଟ୍‌ର ଉପରଟା ଖୋଲିବା ଆଗରୁ ସାମ୍ନାରେ ସ୍କ୍ୱାଡ୍ରନ୍ ଲିଡର୍ ମିଶ୍ରଙ୍କୁ ଦେଖି ବିରକ୍ତ ଅନୁଭବ କଲା ସେ । ମନକୁ ମନ ଗୁଣୁ ଗୁଣୁ ହେଲା—'ଶଳା, ପୁଣି ଆସିଗଲା ମୋ ଶନି ।'

"ହାଏ ସୁଇଟ୍ ହାର୍ଟ"—ମିଶ୍ର ସବୁବେଳେ ଏମିତି କଥା କହନ୍ତି । ମିଲିଟାରୀ କାଇଦାରେ ତାଙ୍କୁ ଅନିଚ୍ଛା ସତ୍ତ୍ୱେ ଅଭିବାଦନ ଜଣାଇ ରେଷ୍ଟ ରୁମ୍ ଭିତରକୁ ପଶୁ ପଶୁ ତା' ଆଖି ପଡ଼ିଗଲା ଡିଉଟି ଚାର୍ଟ ଉପରେ ।

ତା' ପରଦିନ ସକାଳ ୬ଟାବେଳେ ତାକୁ ଟ୍ରେଜେରିରୁ ଟଙ୍କା ଆଣି ଏଅାର ମ୍ୟାନ୍‌ମାନଙ୍କ ଦରମା ବାଣ୍ଟିବାକୁ ପଡ଼ିବ । ମିଶ୍ରଙ୍କ ଦସ୍ତଖତ ତା ତଳେ ।

“ବ୍ଲଡି ସନ୍ ଅଫ୍ ଏ···” ଫାଟିପଡ଼ିଲା ଇନ୍ଦର୍ । ଏତେଗୁଡ଼ାଏ ଲୋକ ଥାଉ ଥାଉ ଗୋଟାଏ ପାଇଲଟ୍‌କୁ ଦରମା ବାଣ୍ଟିବାକୁ କହିବାଟା ନିହାତି ଛତରମି ନୁହେଁ ତ ଆଉ କ’ଣ ?

× × × ×

କବାଟରେ ଜୋର୍ ଧକ୍କାଟାଏ ପକାଇଲା ଇନ୍ଦର୍ । ଭିତରୁ ବନ୍ଦ ଥିଲା ସମ୍ଭବତଃ—“ଉଠ୍ ବେ, ଦିନ ବାରଟା ଯାଏ ଶୋଇରହିଛୁ ।”

ଭିତରୁ କୌଣସି ସ୍ୱର ଶବ୍ଦ ନପାଇ ଆଉ ଥରେ ଧକ୍କାଏ ଦେଲା କବାଟରେ । ମନେହେଲା, ସେ ଧକ୍କାରେ ଏଥର ଫୋର୍ସ ବ୍ୟାଚେଲର୍ସ ମେସ୍‌ର କବାଟଟା ଯେମିତି ଆଉ ଟିକକରେ ଭାଙ୍ଗିଯିବ । ଅଳ୍ପ ବହୁତେ ସମସ୍ତଙ୍କ କାନରେ ସେ ଶବ୍ଦଟା ପଡ଼ିଥିଲା । କିନ୍ତୁ ଏ ସବୁରେ ଅଭ୍ୟସ୍ତ ସମସ୍ତ ଅନ୍ତେବାସୀମାନେ । ମାଂସ କଷ୍ଟୁ କଷ୍ଟୁ ରେପେଷ୍ଟା ହରକିଷନ ଅର୍ଦଲି ନନ୍‌କୁ ଆଡ଼େ ଚାହିଁ ଟିକିଏ ହସିଥିଲା ଯାହା ।

ଏଥରକ କବାଟଟା ଖୋଲି ଡ୍ରେସିଂ ଗାଉନ୍‌ର ଫିତାଟା ବାନ୍ଧୁ ବାନ୍ଧୁ ଭିତରୁ ବାହାରି ଆସିଲା ସୁପ୍ରଭାତ—“ହ୍ୱାଟ୍ ଦ ବ୍ଲଡି ହେଲ୍—କବାଟଟା ଭାଙ୍ଗି ଦେବୁ ନା କ’ଣ ?”

ଅଣ୍ଟାରେ ହାତ ଦେଇ ସୁପ୍ରଭାତ ଆଡ଼େ ଏକଦୃଷ୍ଟିରେ ଚାହିଁ ଉଚିତ୍ ନାଟକୀୟ ଭଙ୍ଗୀରେ କହିଉଠିଲା ଇନ୍ଦର୍, “ସେୟା ତ କରିଥାଆନ୍ତି ବନ୍ଧୁ ! ଏତେ ଡାକିବା ପରେ ତୁମର କୁମ୍ଭକର୍ଣ୍ଣ ନିଦ ଯେତେବେଳେ ନ ଭାଙ୍ଗିଲା, ଭାବିଲି ବିରହ ଜ୍ୱାଳାରେ ବନ୍ଧୁ ମୋର ଆଉ ଆତ୍ମହତ୍ୟା କରିନାହାନ୍ତି ତ ?”

“ସ୍କେପ୍ ବେ ! ବିରହ ଜ୍ୱାଳା !! ଆତ୍ମହତ୍ୟା !!!” ଛିଗୁଲେଇ କହିଲା ସୁପ୍ରଭାତ—“ବୁଧବାର ଗୋଟାଏ ତ ଅଫ୍ ଡେ ମୋର । ଡେରଯାଏଁ ଶୋଇ ଟିକିଏ ରିଲାକ୍ସ କଲେ କ୍ଷତି କ’ଣ ? ଅଧିକାଂଶ ଦିନ ତ ମର୍ଣ୍ଣିଂ ଡ୍ୟୁଟି—ସକାଳ ଛଅଟାରେ ରିପୋର୍ଟ କର । ମଣିଷ କେଉଁଦିନ ଟିକିଏ ଶାନ୍ତିରେ ଶୋଇପାରେ ?” ହାଇଟାଏ ମାରି ଦେହମୋଡ଼ି ହେଉ ହେଉ ଚିତ୍କାର ଛାଡ଼ିଲା ସୁପ୍ରଭାତ—“ହୋପ୍ସ ନନ୍‌କୁ ! ଦୋ ଚାୟ ।”

କିଚେନ୍‌ରୁ ନନ୍‌କୁର ଠିକ୍ ସେମିତିଆ ଉଚ୍ଚ ଗଳାର ଆୱାଜ ଆସିଲା, “ଅଭି ଲାୟା ସାବ୍ ।”

“ଆ ଭିତରକୁ । ଆଜି ଏତେ ଜଲ୍‌ଦି କେମିତି ?” ଖଟ ଉପରେ ଆଉ ଥରେ ଗଡ଼ିପଡ଼ିଲା ସୁପ୍ରଭାତ ।

“ସ୍କ୍ୱାଡ୍ରନ୍ ଲିଡର ମିଶ୍ର ସାଙ୍ଗରେ ଝଗଡ଼ା କରି ଚାଲିଆସିଛୁ । ହୋଃ—କ’ଣ ଭାବିଛି ସେ ନିଜକୁ ? ନିଜେ ତ ଆଡ୍‌ମିନିଷ୍ଟ୍ରେସନ୍ ଲାଇନ୍‌ରେ ରହିଲା, ସେଇଥିପାଇଁ ଇଡିୟଟ୍ ଈର୍ଷାରେ ଜଳୁଛି । ଶଳା, ଭାରତର ଶ୍ରେଷ୍ଠ ପାଇଲଟ୍‌ମାନେ ଯଦି ସକାଳ ଛ’ଟାରେ ଅଧୀନସ୍ଥମାନଙ୍କର ଦରମା ବାଣ୍ଟିବେ, ତେବେ ଜାଗୁଆର, ମିଗ୍, ହଣ୍ଟର ଚଳେଇ ଦେଶର ସୁରକ୍ଷା କରିବେ କ’ଣ କୃଷକମାନେ ? ଭଲକରି ଦୁଇପଦ ଶୁଣେଇଦେଇ ଆସିଛି । କ’ଣଟା ବା ଆଉ ଅଧିକା

କରିବ ? ଯାଇ ଯାଇ କହିବ ସି. ଓ. କୁ । ସି. ଓ. ତ ନିଜେ ଜଣେ ସିନିୟର ପାଇଲଟ୍ ଥିଲେ—ସେ ନିଶ୍ଚୟ ଓଲଟା ଗାଳିଦେବେ ମିଛିକୁ ।"

"ଶଏଲ୍ ଇନ୍ଦର୍ ! ତୋର ହବୁଦିନେ କିଛୁ ନା କିଛୁ ଝାମେଲା । ୟୁ ଆର୍ ଅଲଓ୍ୱେଜ୍ ଅପ୍ ଟୁ ସମ୍‌ଥିଙ୍ଗ୍ । ଏମିତି କେଉଁଦିନ କୋର୍ଟ ମାର୍ସିଲ୍ ହୋଇଯିବ ତୋର ।" ସେମିତି ତନ୍ଦ୍ରାରେ ମୁହଁମାଡ଼ି ସୁପ୍ରଭାତ କହିଲା ।

"ଆରେ ଭାଇ, ଗୋଟାଏ ତ ଜୀବନ—ଆଇ ଓ୍ୱାଣ୍ଟ ଟୁ ଟ୍ରୁଲି ଲିଭ୍ ଦିସ୍ ଲାଇଫ୍ । ଏ ପାଇଲଟ୍ ଜୀବନରେ କିଛି ନିଶ୍ଚିତତା ଅଛି ? କାଲି ହୁଏତ ଖବରକାଗଜରେ ଗୋଟାଏ କଣରେ ବାହାରିବ—'ଭାରତର ପଶ୍ଚିମ-ସୀମାନ୍ତରେ କୌଣସି ଏକ ସ୍ଥାନରେ ବାୟୁସେନାର ଗୋଟିଏ ବିମାନ ଖସିପଡ଼ିଛି । ଏଥିର ଚାଳକ ଫ୍ଲାଇଟ୍ ଲେଫ୍‌ଟନାଣ୍ଟ ଇନ୍ଦର୍ ମାଲ୍‌ହୋତ୍ରାଙ୍କ ଘଟଣାସ୍ଥଳରେ ମୃତ୍ୟୁ ହୋଇଯାଇଛି । ସରକାର ଶୋକସନ୍ତପ୍ତ ପରିବାରକୁ ପଚିଶ ହଜାର ଟଙ୍କା କ୍ଷତିପୂରଣ ଦେବାପାଇଁ ସ୍ଥିର କରିଛନ୍ତି···ଇତ୍ୟାଦି ଇତ୍ୟାଦି ।"

ହୋ ହୋ ହୋଇ ହସିବା ଆରମ୍ଭ କଲା ସୁପ୍ରଭାତ—"ୟୁ ଜୋକର୍ !" ପୁଣି ହାଇଟାଏ ମାରି କଡ଼ ଓଲଟେଇଲା ସେ । "ତୁ ମ୍ୟାଗାଜିନ୍ ଦେଖ୍ ବସି ବସି—ଗ୍ୟ'ଟା ଆସିବା ଯାଏଁ ମୁଁ ଟିକିଏ ଶୋଇପଡ଼େ ।"

"ଆରେ ଆରେ ଶୋଉଛୁ କ'ଣ ? ତୋ ସାଙ୍ଗରେ କିଛି ଜରୁରି କଥାବାର୍ତ୍ତା ଅଛି ।"

ସୁପ୍ରଭାତ କିଛି ଉତ୍ତର ଦେଲା ନାହିଁ ।

"ଠିକ୍ ଅଛି, ଶୋଇଥା ! ତୋର ଚିଠିଟାଏ ଅଫିସ୍ ଠିକଣାରେ ଆସିଥିଲା, ସେଇଟା ନେଇ ଆସିଛି । ଦେଖେଁ କ'ଣ ଲେଖାହୋଇଛି···'ହେ ମୋର ପ୍ରାଣ ରଞ୍ଜନ, ତୁମ ବିହୁନେ ବ୍ୟର୍ଥ ଏ ଜୀବନ' କାବ୍ୟରେ ! ତା' ପରେ ତ ଯାହା ଲେଖାହୋଇଛି ପଢ଼ି ହେବନି । କି ରୋମାଣ୍ଟିକ୍ ଚିଠି ! କିଏ ଦେଇଛି ? ଉଁ···ଇତି ତୁମର ଜୀବନସଙ୍ଗିନୀ ଶୋଭନା ।"

"ଶୋଭନା !" ଏକା ଡିଆଁକେ ଖଟରୁ ଉଠିଆସି ଇନ୍ଦର ହାତରୁ ଲଫାପାଟା ଛଡ଼େଇ ନେଲା ସୁପ୍ରଭାତ । ସବୁ ନିଦ ଯେମିତି ଆଖିରୁ ତା'ର ଚାଲିଯାଇଥିଲା ।

ଲଫାଫାଟା ଏପଟ ସେପଟ କରି ଦେଖିଲା ସେ । ଆଖି ଦୁଇଟା ଆଶ୍ଚର୍ଯ୍ୟରେ ବଡ଼ ବଡ଼ ହୋଇଗଲା ତା'ର । ଲଫାପାଟା ଯେ ବନ୍ଦ । ଇନ୍ଦର କିଛି ନଜାଣିବା ପରି ଷ୍ଟେଟ୍‌ସମ୍ୟାନ୍ ଭିତରେ ମୁହଁଟା ଲୁଚେଇଦେଇଛି ସେତିକିବେଳକୁ । ସବୁ ବୁଝିଗଲା ସୁପ୍ରଭାତ । ଗୋଇଠାଟାଏ ମାରିଲା ଇନ୍ଦର ପିଠିକୁ, "ୟୁ ବ୍ଲଡି ସ୍କାଉଣ୍ଡ୍ରେଲ୍ ।"

ହସି ହସି ପାଟିକରିଉଠିଲା ଇନ୍ଦର୍, "ଆରେ ମରିଯିବି ! ଛାଡ଼ିଦେ ଭାଇ, ଛାଡ଼ିଦେ ।"

"କହ୍ନୁ ଇନ୍ଦର୍, ତୁ ଶୋଭନା କଥା ଜାଣିଲୁ କେମିତି ? ମୁଁ ତ କହିନି କୌଣସି ଦିନ ।"

"ସେଇଠି ତ ଭୁଲ୍‌ଟା କରିଛୁ ! ହୁଁ···ମତେ କହିବୁ କାହିଁକି ? ଏନ୍. ଡି. ଏ.ରୁ ତୋ ସାଙ୍ଗରେ ଏତେ ଘନିଷ୍ଠତା ଅଥଚ ଏମିତି ଗୋଟାଏ କଥା ଲୁଚେଇ ରଖିଛୁ ମୋଠାରୁ !" ଅଭିମାନଭରା କଣ୍ଠରେ କହିପକାଇଲା ଇନ୍ଦର୍ ।

"ଭୁଲ ହୋଇଗଲାରେ ! ଛୁଟିରୁ ଫେରି ତତେ କହିବ କହିବ ବୋଲି ଏତେ ଦିନ ଚାଲିଗଲା।" କାନ ଧରିଲା ସୁପ୍ରଭାତ। "କିନ୍ତୁ କହନା, ଜାଣିଲୁ କେମିତି ଏ କଥା ?"

"ବାଃ ! ଏ କଥା ଆମ ଏଆର୍ ଫୋର୍ସ ଷ୍ଟେସନ୍‌ରେ କିଏ ନଜାଣେ ? ପ୍ରତି ଦୁଇ ଦିନ ଛଡ଼ା ଦିନରେ ରଙ୍ଗୀନ ସୁବାସିତ ଲଫାପାରେ ମୋଟା ମୋଟା ଚିଠି ଆଉ ଲଫାପା ପଛରେ ଗୋଲ୍ ଗୋଲ୍ ଅକ୍ଷରରେ ଲେଖା 'ଶୋଭନା'। ଏଥିରେ ପୁଣି ଆଉ ଜାଣିବାକୁ କ'ଣ ରହିଲା ? ହରକିଷନ୍ ମଧ୍ୟ ଜାଣିଥିବ ଯେ ସାବ୍‌ଙ୍କ ମେମ୍‌ସାବ୍‌ଙ୍କର ଚିଠି ଆସୁଛି !" ହସି ହସି କହିଲା ଇନ୍ଦର୍।

"ସାବ୍ ଚ୍ଚଏ"—ନନ୍ଦକୁ ଟ୍ରେରେ ଚା' ନେଇ ପହଞ୍ଚିଲା। ଦୁଇ ବନ୍ଧୁଙ୍କର ଦୃଷ୍ଟି ଚାଲିଗଲା ତା' ଉପରକୁ। ଇନ୍ଦର୍ ଦୁଇପାଦ ଆଗେଇଗଲା ତା ଆଡ଼େ। "ଆବେ ଇଡ଼ିୟଟ୍—ଚା' ଦୁଇକପ୍ କରି ଆଣିବାକୁ ଏତେ ସମୟ ଲାଗୁଚି।"

"ସାବ୍, ଗୋଟାଏ ତ ଷ୍ଟୋଭ୍। ହରକିଷନ୍ ମାଂସ ବସେଇଥିଲା ଲଞ୍ଚ ପାଇଁ। ଅଧାରୁ କାଢ଼ିଦେଇଥିଲେ ମାଂସ ଆଉ ସିଝି ନଥାଆନ୍ତା।"

"ସତରେ କି ଅବସ୍ଥା ହେଲଣି ଏ ମେସ୍‌ର ! ଦୁଇଦୁଇଟା ଗ୍ୟାସ୍ ଚୂଲି ଅକାମୀ ହୋଇ ପଡ଼ିଛି—ଅଥଚ ଗ୍ୟାସ୍ ସପ୍ଲାଇ ନାହିଁ। ଏଥରକ ଓ୍ୱେଲ୍‌ଫେୟାର୍ ମିଟିଙ୍ଗ୍‌ରେ ମତେ କଂପ୍ଲେନ୍ କରିବାକୁ ପଡ଼ିବ।"

କ'ଣ କରିବାକୁ ହେବ ନହେବ ସେ ବିଷୟରେ ଦୁଇ ବନ୍ଧୁଙ୍କର ଆଲୋଚନା ଲାଗିଗଲା। ଶୋଭନା କଥା ବନ୍ଦ ହୋଇଗଲା ସେଇଠି। ଏହାକୁ ଉପଯୁକ୍ତ ସମୟ ମନେକରି ଖାଲିଟ୍ରେ ନେଇ ସେ ଜାଗା ଛାଡ଼ି ଚାଲିଗଲା ନନ୍ଦକୁ।

× × × ×

ବାହାରେ ଝିପ୍ ଝିପ୍ ବର୍ଷାଟା ଅଳ୍ପ ସମୟ ପାଇଁ ବନ୍ଦହୋଇଯାଇଛି। ଘଣ୍ଟାଏ ଉପଭୋଗ କରିବା ପାଇଁ ବାର୍‌କୁ ଆସିଛନ୍ତି ଦୁଇବନ୍ଧୁ। ଚକ୍ ଚକ୍ ଧଳା ରଙ୍ଗର ପୋଷାକ ପିନ୍ଧି ଛିଡ଼ାହୋଇଛି ବାର୍‌ମ୍ୟାନ୍ ଇମ୍ତିଆଜ୍।

"ମୁଁ ଆଜ ପିଇବ ହ୍ୱିସ୍କି—ଉଇଥ୍ ସୋଡ଼ା ଏଣ୍ଡ୍ ଲଟ୍‌ସ ଅଫ୍ ଆଇସ୍"—ଇନ୍ଦର ଇମ୍ତିଆଜ୍ ଆଡ଼େ ଚାହିଁ କହିଲା।

"ବାଃ—ରମ୍ ପିଇବା ଲୋକ ତୁ ! ଆଜ ମୁଁ ଟ୍ରିଟ୍ କରୁଛି ବୋଲି ହ୍ୱିସ୍କି, ପୁଣି ସୋଡ଼ା ଆଉ ଲଟ୍‌ସ ଅଫ୍ ଆଇସ !"

ହୋ ହୋ ହୋଇ ହସିଉଠିଲେ ଦୁଇଜଣ। ଅର୍ଡ଼ର ଦେବା ଆଗରୁ ଇମ୍ତିଅଜ୍ ଚାଲିଗଲା। ସାହେବମାନଙ୍କର ମନ ବୁଝି ବୁଝି, ତ ଏଇ ବାର୍‌ରେ ତା'ର ପଚିଶ ବର୍ଷ ହୋଇଗଲା।

ହାତରେ ହ୍ୱିସ୍କିର ଗ୍ଲାସ୍‌କୁ ଘୂରାଇ ଘୂରାଇ ସୁପ୍ରଭାତ କହୁଥିଲା ଶୋଭନା କଥା—"ତୋର ମନେଅଛି ଇନ୍ଦର୍, ଏନ୍. ଡି. ଏ. ବେଳର କଥା। ସେଇ ରୁଟିନ ବନ୍ଧା କଠିନ ଜୀବନରେ

ଯେତେବେଳେ ଟିକିଏ ସମୟ ମିଳୁଥିଲା ଆମେ କଳ୍ପନା କରୁଥିଲେ ଆମର ସ୍ୱପ୍ନପରୀ କଥା । ତୋର ଚଏସ୍‌ଟା ଠିକ୍ ମୋ ପରି ଥିଲା । ସୁଶ୍ରୀ, ସୁନ୍ଦରୀ ଝିଅଟିଏ—କଥାକୁହା ଆଖି, ଖଣ୍ଡାଧାର ପରି ନାକ, ଅଙ୍କିଦେବା ଭଳି ଭ୍ରୂ ଆଉ ସରୁ ଗୋଲାପୀ ଓଠ । ମୁଣ୍ଡରେ ସାମାନ୍ୟ ଓଢ଼ଣା । ଓଢ଼ଣା ତଳେ ଲମ୍ବା କଳା ବାଳର ଖୋସାଟିଏ । ସକାଳୁ ବେଡ୍ ଟି' ଦେଇ ବିଛଣାରୁ ଉଠେଇଦେବ ସେ । ଆଉ ବଳେଇ ବଳେଇ ନିଜ ହାତରେ ଖୁଆଇଦେବ କେତେ କ'ଣ ସୁସ୍ୱାଦୁ ପଦାର୍ଥ । ବର୍ଷାଦିନରେ ସେ ଭଜିବ ଗରମ ଗରମ ପକୁଡ଼ି ଆଉ ମୁଣ୍ଡଫଟା ଖରାରେ ପିଇବାକୁ ଦେବ ଆଇସ୍ କୋଲ୍ଡ଼ ଲସି । ଠିକ୍ ସେମିତି ଝିଅଟାଏ ଶୋଭନା, ହଁରେ, ବଙ୍ଗେଇ କରି କହୁ କହୁନ । ଆମ ସ୍କୁଲ୍ ସ୍ୱାମୀର ସହରର ଝିଅ । କେମିତି ଏତେଦିନ ଦେଖା ହୋଇନଥିଲା କେଜାଣି ?"

ସ୍ୱପ୍ନଭରା ଦୃଷ୍ଟିନେଇ ଗ୍ଲାସ୍‌କୁ ଦେଖୁଥିଲା ସୁପ୍ରଭାତ । ସେ ରଙ୍ଗୀନ ପାନୀୟର ମାଦକତାରେ କୈଶୋରର ସ୍ୱପ୍ନ ସବୁ ଆଖି ମିଟିମିଟି କରି ହସୁଛନ୍ତି ଯେମିତି ।

"ବିଉଟିଫୁଲ୍ ! ସୁନ୍ଦର ଏଇ ପ୍ରେମ କାହାଣୀ ! ବାହାଘରଟା କେବେ ହେଉଛି ଶୁଣେ ।" —ଇନ୍ଦର ପଚାରିଲା ।

ମୁହଁ ଟେକିଲା ସୁପ୍ରଭାତ । ସେଠି ନଥିଲା କିଛି ସମୟ ଆଗର ସେଇ ସ୍ୱପ୍ନଭରା ସ୍ୱାହାଣି । ସିଗାରେଟ୍‌ଟା ମୁହଁରୁ କାଢ଼ି ଉତ୍ତର ଦେଲା, "ବାବା କହିଲେ ମୁଖାର୍ଜୀ ଖାନଦାନ୍‌ରେ ସେ ଗୋଟାଏ ପଞ୍ଜାବୀ ଝିଅକୁ ସାମିଲ କରିପାରିବେ ନାହିଁ । ଆଉ ମା'...କଥାଟା ଶୁଣିବା ଦିନଠାରୁ ଖାଲି କାନ୍ଦୁଛି । ସେ କଲିକତାରେ କେଉଁ ଝିଅ ଠିକ୍ କରିଥିଲା ମୋ ପାଇଁ । ଏବେ ତାର ଚଳା ସେମାନଙ୍କୁ ସେ ମୁହଁ ଦେଖାଇବ କେମିତି ? ଏ ସବୁ ଶୁଣି ଭାବିଥିଲି ଆଉ ବାହା ହେବି ନାହିଁ । କହୁ ତୁ କହ, ଶୋଭନାକୁ ଭୁଲିବି କେମିତି ? ମୁଁ ବନ୍ଧାପଡ଼ିଯାଇଛି ତା' ପାଖରେ, ଇନ୍ଦର ।" ଏକା ନିଃଶ୍ୱାସକେ କହିପକାଇଲା ସୁପ୍ରଭାତ ।

"ତାହେଲେ ଅପେକ୍ଷା କରିଛୁ କାହିଁକି ?"

"ମାନେ ?"

"ଗେଟ୍ ସେଟ୍ ଫର୍ ୟୋର୍ ମ୍ୟାରେଜ୍—ବାହାଘରର ଯୋଗାଡ଼ କର ।" ଇନ୍ଦର ମୁହଁକୁ ସେମିତି ଆଶ୍ଚର୍ଯ୍ୟରେ ଚାହିଁଥିଲା ସୁପ୍ରଭାତ ।

"ଆରେ ବୋକା ! ଚାହିଁଛୁ କ'ଣ ଏମିତି ? ବାହାଘର ଏଇଠି ହେବ, ମୁଁ କରେଇବି । ଆର୍ଯ୍ୟ ସମାଜ ମନ୍ଦିରରେ ହିଁ ହେବ । ତୋ ଘରେ ସମସ୍ତେ ମନା କରିବେ ବୋଲି ତୁ କ'ଣ ନିଜ ଜୀବନ ନଷ୍ଟ କରିଦେବୁ ? ମୁହଁ ଶୁଖାଇ ବସି ସିଗାରେଟ୍ ଜାଳିବା ଆଉ ମାତାଲ ହେବା କିବା ଚପକରମାନଙ୍କ ସାଜେ—ଫ୍ଲାଇଟ୍ ଲେଫ୍‌ଟନାଣ୍ଟ ସୁପ୍ରଭାତ ମୁଖାର୍ଜୀଙ୍କୁ ନୁହେଁ । ତୋ ବାହାଘର ହେବ ରଏଲ୍ ଷ୍ଟାଇଲ୍‌ରେ । ତେଣିକି ଘର ଲୋକ ଭାଗ ନେଅନ୍ତୁ ବା ନ ନେଅନ୍ତୁ···ଠିକ ?" ଇନ୍ଦର ପଚାରିଲା ।

"ଷ୍ୟୁର !" ଯେମିତ ସମ୍ମୋହିତ ଭାବରେ ଇନ୍ଦର ସାଙ୍ଗରେ ହାତ ମିଳାଇଲା ସୁପ୍ରଭାତ ।

× × × ×

ସେଇ କଥା ସବୁ ସୁପ୍ରଭାତ ଶୋଭନାକୁ କହୁଥିଲା । ଇନ୍ଦର ସେଇଠି ବସି ଶୋଭନା କରିଥିବା ବେକ୍‌ଡ୍ ପୁଡ଼ିଙ୍ଗ୍‌କୁ ଚାଟି ଚାଟି ଖାଉଥିଲା ।

"ବୁଝିଲ ଶୋଭନା, ମୁଁ ନଥିଲେ ଏ ମାଇଚିଆ ସୁପ୍ରଭାତ ତମକୁ ଆଦୌ ବାହାହୋଇ-ପାରିନଥାଆନ୍ତା—ଏ କଥାଟା ମନେରହେ ଯେମିତ ! ସବୁଦିନେ ଏମିତ ଭଲ ଭଲ ଜିନିଷ ରାନ୍ଧି ଖୁଆଇବାକୁ ହେବ ।"

"ଇସ୍—ଆମ ବାହାଘରଟା କରେଇ ଖାଲି ବଡ଼ କାମଟାଏ କରିପକେଇଛ ନା—" ଖୁସିରେ କଳୁ ଚକ୍ ଚକ୍ କରୁଥିଲା ଶୋଭନାର ମୁହଁ । କିଛି ସମୟ ପରେ ପୁଣି ସେ କହିଉଠିଲା, "କାହିଁ, ନିଜେ ବାହାହୋଇପଡ଼ୁନ ! ତୁମ ସ୍ତ୍ରୀ ତୁମକୁ କେତେ କ'ଣ ରାନ୍ଧି କରି ଖୁଆଇବ ! କ'ଣ ସେ ବ୍ୟାଚେଲର୍‌ସ ମେସ୍ ଛାଡ଼ି ମ୍ୟାରେଡ୍ ଆପାର୍ଟମେଣ୍ଟକୁ ଆସିବାର ଇଚ୍ଛା ନାହିଁ ?"

"ଇଚ୍ଛା ତ ବହୁତ ଅଛି, ହେଲେ ମୋର ସେ ଭାଗ୍ୟ କାହିଁ ? ସଂସାରରେ ତ ଗୋଟାଏ ଶୋଭନା କେମି ଅଛନ୍ତି !" ସୁପ୍ରଭାତ ଆଡ଼େ କଣେଇ ଚାହିଁ ଇନ୍ଦର କହିଲା ।

ପୁଣି ଆଙ୍ଗୁଠିଟା ଚାଟୁ ଚାଟୁ ଧୀରେ ଧୀରେ କହିଲା, "ଅବଶ୍ୟ ତୁମେ ଯଦି ହଁ କର... ତେବେ ସୁପ୍ରଭାତ ସାଙ୍ଗରେ ଡାଇଭୋର୍ସ ମୁଁ ଖୁସିରେ ଯୋଗାଡ଼ କରିଦେବି । ଉପର ମହଲରେ ମୋର ବେଶ୍ ଜଣାଶୁଣା ଅଛନ୍ତି ।"

ଜୋର୍‌ରେ ହସିବାକୁ ଲଗିଲେ ଇନ୍ଦର ଆଉ ସୁପ୍ରଭାତ ।

"ଧେତ୍—ଯେତେ ସବୁ ବାଜେକଥା ।" ରୋଷେଇ ଘର ଭିତରେ ପଶିଗଲା ଶୋଭନା ।

ଡାଇନିଂ ଟେବୁଲ୍ ପାଖରୁ ଇନ୍ଦର ପାଟି କରି ଉଠିଲା, "ଆରେ...ମିଛ ଭାବିଲ କି ଶୋଭନା ? ସୁପ୍ରଭାତକୁ ପଚାର, ସେ ମଧ୍ୟ କହିବ । ସ୍ୱାମୀପତ୍ନୀ ସମ୍ପର୍କରେ ଆମ ଦୁହିଁଙ୍କର କଳ୍ପନାଟା ଠିକ୍ ଏକାପରି ଥିଲା । ଜିତିଗଲା ସୁପ୍ରଭାତ । ତୁମ ସାଙ୍ଗରେ ମୋର ଆଗରୁ ଦେଖା ହେଲାନି ଯାହା—ହାଏ ବଦ୍‌ନସିବ ଦିଲ୍ ।"

"ଥାଉବେ, ଏତେ ଦୀର୍ଘଶ୍ୱାସ ନନେଲେ ମଧ୍ୟ ହେବ । ଶୋଭନା ତ ଅଛି । ଏ ଅନନ୍ତି ଚିତାଭସ୍ମ ପାଇଲାଟି ଜୀବନରେ ମୋର ଯଦି କେବେ କିଛି ହୋଇଯାଏ, ତେବେ ତୁ ତାକୁ ବାହାହୋଇପଡ଼ିବୁ ।"

ଧାଇଁଆସିଲା ଶୋଭନା, "ତୁମକୁ କେତେ ହଜାର ଥର ମନାକରିଛି ଏମିତ ଖରାପ କଥା ନକହିବାକୁ ! ଆଉ କେତେ ଗୁଣ ନିସ୍ତମ ପକାଇବ ? ହଁ...ମୋ କଥା ତୁମେ କେବେ ଆଉ ଭାବ ସେ !" ଦୁଇ ଆଖିରେ ତା'ର ଲୁହ ଟଳମଳ କରୁଥିଲା ।

ସେଇ ଆଡ଼କୁ ଚାହିଁ ଚୌକିରୁ ଉଠିପଡ଼ିଲା ଇନ୍ଦର । ସେମିତ ଶୋଭନା ମୁହଁକୁ ଦେଖି ଦେଖି କହିଲା, "ମୁଁ ଯାଉଛିରେ ସୁପ୍ରଭାତ । ନହେଲେ ତୋ ଶ୍ରୀମତୀଙ୍କ କୃପାରୁ ଯେଉଁ

ବେକ୍ଡ୍ ପୁଡ଼ିଙ୍ଗ୍ ଖାଇବାକୁ ମିଳୁଛୁ ସେଇଟା ବନ୍ଦ ହୋଇଯିବ । ତା' ବଦଳେ ତୋ ଘରକୁ ଆସିବା ମଧ୍ୟ !"

× × × ×

ହସିପକାଇଲା ଶୋଭନା । ସତରେ ଇନ୍ଦର୍ ଆଉ ସୁପ୍ରଭାତ ଥିଲେ ଘରଟା କେମିତି ପୂରିଯାଏ । କେହି ନାହାନ୍ତି ଏବେ, ସବୁ କେମିତି ଖାଲି ଖାଲି । ଗତକାଲି ସକାଳଠାରୁ ସ୍କ୍ୱାଡ୍ରନ୍ ଯାଇଛନ୍ତି ପଶ୍ଚିମ ସୀମାନ୍ତର କେଉଁ ଏକ ଅଜଣା ସ୍ଥାନକୁ ଏକ୍ସରସାଇଜ୍ ପାଇଁ ।

× × × ×

ସେଇ ଅଜଣା ସ୍ଥାନର ଭଙ୍ଗା ଏୟାର୍ ବେସ୍‌ରେ ରମ୍ ପିଉ ପିଉ ଚିନ୍ତାଶୀଳ ଥିଲେ ଇନ୍ଦର ଓ ସୁପ୍ରଭାତ । ସମସ୍ତେ ଜାଣନ୍ତି ଏୟାର୍ ଏକ୍ସରସାଇଜ—ଏଥିର ସତ କଥାଟା ? ଭାରତ ସରକାରଙ୍କ ସୋଭିଏଟ୍ ଇଣ୍ଟେଲିଜେନ୍ସ ଖବର ଦେଇଛନ୍ତି କରାଚୀର ୨୫୦ କିଲୋମିଟର ଉତ୍ତର-ପୂର୍ବକୁ ପାକିସ୍ଥାନୀ ଆଣବିକ ବିଶେଷଜ୍ଞମାନେ ଦିନ ରାତି ଗୋଟାଏ ନିଷିଦ୍ଧ ଅଞ୍ଚଳରେ ଅନବରତ କାମ କରିଚାଲିଛନ୍ତି । ଖୁବ୍ ସମ୍ଭବତଃ ଏଇଠି ତିଆରି ହେବ ପାକିସ୍ଥାନର ପ୍ରଥମ ପରମାଣୁ ବୋମା ।

ସୁପ୍ରଭାତ ଆଜି ରାତିରେ ଯିବ କୋଡ଼ିଏ ହଜାର ଫୁଟ ଉପରୁ ସେଇ ଜାଗାର ଫଟୋ ଉଠେଇବାକୁ । ବିଶ୍ୱସ୍ତ ସୂତ୍ରରୁ ଜଣାପଡ଼ିଛି ଯେ କରାଚୀର ସବୁଠୁ ଶକ୍ତିଶାଳୀ ରାଡ଼ାର୍‌ର ପ୍ରିଭେଣ୍ଟିଭ୍ ମେଣ୍ଟିନାନ୍ସ ଚାଲିଛି । ଏହାଠୁ ବଳି ସୁବର୍ଣ୍ଣସୁଯୋଗ ଆଉ ଆସିବନି ।

ହଠାତ୍ ସୁପ୍ରଭାତ କହିପକାଇଲା, "ଇନ୍ଦର୍, ମୁଁ ଖାଲି ଭାବୁଛି ଶୋଭନା ଓ ତା' ଅନାଗତ ସନ୍ତାନ କଥା । କାଲି ମତେ ପାକିସ୍ଥାନ ବର୍ଡ଼ର ଭିତରେ ପଶିବାକୁ ହେବ ଉଡ଼ାଜାହାଜ ନେଇ । ମିଶନ୍ ସଫଳ ହୋଇପାରେ, କିନ୍ତୁ ମୋର ଫେରିଆସିବାଟା ଆଉ ବୋଧେ ହେବନାହିଁ ଟିକିଏ କିଛି ଏପଟ ସେପଟ ହେଲେ ।"

ତା' ହାତକୁ ଚିପିଦେଲା ଇନ୍ଦର୍ ।

"ଯଦି ଏୟାର୍ ଭାଇସ୍ ମାର୍ଶାଲ ରାଓ ରାଜି ହୋଇଥାଆନ୍ତେ, ତେବେ ମୁଁ ନିଶ୍ଚୟ ଏଇ ମିଶନ୍‌ରେ ଯାଇଥାଆନ୍ତି ସୁପ୍ରଭାତ ।"

"ସେ କଥା ତ ହେଲାନି ।"—ହଠାତ୍ ଉଚ୍ଛଳ ଭାବରେ କହିଉଠିଲା ସୁପ୍ରଭାତ । "ତୁ ମୋ କଥା ରଖିବୁ ଇନ୍ଦର୍ ! ମୋର ଯଦି କିଛି ହୋଇଯାଏ, ତେବେ ଶୋଭନା ଆଉ ତା' ଅନାଗତ ସନ୍ତାନର ଦାୟିତ୍ୱ ତୁ ହିଁ ବହନ କରିବୁ । ଶୋଭନା ଆଉ ଯିବ କୁଆଡ଼େ ? ମୋତେ ବାହା ହେବା ପରଠାରୁ ତା' ନିଜ ଘର ସାଙ୍ଗରେ ସବୁ ସମ୍ପର୍କ କାଟିଲା ସେ । ଆଉ ଆମ ଘରେ ତ ତାକୁ ଏ ପର୍ଯ୍ୟନ୍ତ କେହି ଗ୍ରହଣ କରିନାହାନ୍ତି···କଥା ଦେ ଇନ୍ଦର୍ !" ଅନୁନୟ କରିବା ଭଙ୍ଗୀରେ ସୁପ୍ରଭାତ କହିଲା ।

"କଥା ଦେଉଛି"···ତଳକୁ ମୁହଁ ପୋତି ଇନ୍ଦର୍ କହିଲା ।

× × × ×

ଦୀର୍ଘନିଃଶ୍ୱାସ ନେଲା ଇନ୍ଦର୍ । ଏ ସବୁ କେମିତି କ'ଣ ହୋଇଗଲା ? ସୁପ୍ରଭାତ ମଣିଷଟା ଏଇ କେତେଟା ଦିନ ଆଗରୁ ଥିଲା, ଏବେ ସେ କେଉଁଠି ? ମୃତ୍ୟୁ ପରେ ମଣିଷ ଯାଏ କୁଆଡ଼େ ? ସତରେ କ'ଣ ପରଜନ୍ମ ଅଛି ? ଆଃ ସୁପ୍ରଭାତ—ତେର ଚଉଦ ବର୍ଷର ବନ୍ଧୁତ୍ୱ ଆମର ଏମିତି ଶେଷ ହୋଇଗଲା !

ମିଶନ୍ ତା'ର ସଫଳ ହୋଇଥିଲା ସତ—କିନ୍ତୁ ସତ୍ତାର୍ ବିଷୟରେ ମିଳିଥିବା ଖବର ଥିଲା ଆଂଶିକଭାବେ ଭୁଲ । ପାକିସ୍ଥାନୀ ବିମାନ ବାହିନୀର ଦୁଇଟି ଏଫ୍-୧୬ ସୁପ୍ରଭାତର ପେଟ୍ରୋଲ ଟ୍ୟାଙ୍କରେ ବାନ୍ଧି ଦେଇଥିଲେ ଶକ୍ତିଶାଳୀ 'ଏୟାର୍ ଟୁ ଏୟାର୍ ମିଶାଇଲ୍' । ଜ୍ୱଳନ୍ତ ବିମାନକୁ ଭାରତ ସୀମାନ୍ତ ଭିତରକୁ ଆଣିବା ମାତ୍ରେ ବିଦ୍ୟୁତ ଗତିଟାକୁ ଅଟକାଇ ତା ଉଡ଼ାଜାହାଜ ଗୋଟାଏ ଗହମ କ୍ଷେତରେ ପଡ଼ିଥିଲା । କକ୍‌ପିଟ୍‌ଟା ସହିତ ଅଧା ଉଡ଼ାଜାହାଜ ମାଟିର ପନ୍ଦର ଫୁଟ ତଳୁ ଖୋଳ ବାହାର କରାଯିବା ପରେ ମିଳିଥିଲା ଗୋଟିଏ ତରୁଣ ପାଇଲଟ୍‌ର ଗୋଟାଏ ହାତ ଆଙ୍ଗୁଠି, ଆଉ ସୁନାମୁଦିଟିଏ…ବାସ୍ ।

ମାସେ ହୋଇଗଲାଣି । ଶୋଭନା ପାଖକୁ ଯାଇନି ଇନ୍ଦର୍ । ସୁପ୍ରଭାତର ସେଇ ଆଙ୍ଗୁଠି ଗୋଟାଏ କଫିନରେ ମୁଦାଇ, ତା ହାତରେ ସୁନାମୁଦି ଫେରାଇ ଦେବାକୁ ଯାଇଥିଲା ସେ । ଶୋଭନା ଯେମିତି କ ପଥର ! ଆଖି ଦୁଇଟା ଅସମ୍ଭବ ଭାବରେ ଶୁଖିଲା । ଫାଙ୍କା ଫାଙ୍କା ଦୃଷ୍ଟିରେ ସେ ଚାହିଁରହିଥିଲା ବହୁ ଦୂରକୁ ।

ମନରେ ଜୋର୍ ଆଣି ସେଦିନ ସନ୍ଧ୍ୟାରେ ଇନ୍ଦର୍ ଗଲା ଶୋଭନା ପାଖକୁ । କଲିଂବେଲ୍‌ରେ ହାତ ଦେଉ ଦେଉ ଭାବୁଥିଲା ଆଉ ମାସ କେଇଟା କଥା—ତା' ପରେ ତ ଏ କ୍ୱାର୍ଟର୍ସ ଛାଡ଼ିବାକୁ ହେବ ଶୋଭନାକୁ ।

"ଆରେ ଇନ୍ଦର୍—ଆସ"—ମୁହଁରେ ଶୁଖିଲା ହସ ଫୁଟାଇ ଶୋଭନା କହିଲା ।

ସେଇ ଘର । ଫ୍ରିଜ୍ ଉପରେ ସେଇ ଫଟୋ—ବାହାଘର ବେଳର । ଇନ୍ଦର୍‌କୁ ଜୋର୍‌ରେ ଜାବୁଡ଼ି ଧରିଛି ସୁପ୍ରଭାତ । ଅନେଇ ହସୁଛି ନବବଧୂ ଶୋଭନା ।

ଶୋଭନାର କଥାରେ ତା' ଚମକ ଭାଙ୍ଗିଲା । "ଘର କେବେ ଛାଡ଼ିବାକୁ ହେବ ଇନ୍ଦର୍ ? ତୁମେ ସବୁ କଥା ବୁଝାବୁଝି କରି ନ କହିଲେ ମୁଁ ଏକା ଏକା କରିବି କ'ଣ ?" ଶେଷ ଆଡ଼କୁ ତା' କଣ୍ଠଟା କେମିତି ଭାରି ଭାରି ହୋଇଯାଇଥିଲା ।

ଇନ୍ଦର୍ ଆଖିରେ ଲୁହ ଚାଲିଆସିଲା । ଶୋଭନାର ପାପୁଲିକୁ ନିଜର ଦୁଇ ହାତରେ ଚାପିଧରି ସେ କହିଲା, "ଶୋଭନା, ଏମିତି ଏକ ସମୟରେ ଏ କଥାଟା କହୁଛି ବୋଲି ବିରକ୍ତ ହେବ ନାହିଁ । ସୁପ୍ରଭାତକୁ ମୁଁ କଥା ଦେଇଥିଲି ତା'ର ଯଦି କିଛି ହୋଇଯାଏ ତେବେ ତୁମର ସବୁ ଦାୟିତ୍ୱ ମୁଁ ନେବି । କୁହ, ମତେ ଗ୍ରହଣ କରିବ ?"

ଆସ୍ତେ ନିଜ ହାତ ପାପୁଲିକୁ ଖସେଇ ଆଣିଲା ଶୋଭନା—"ଥାଉ ଇନ୍ଦର୍ ! ମୁଁ ଏ ସବୁ କଥା ଚିନ୍ତା କରିନି । ଏ ଘର ଛାଡ଼ିବା ପରେ ମୁଁ ଘର ଭଡ଼ା କରି ଏଇ ସହରରେ ରହିବି । ଏୟାର୍ ଫୋର୍ସ ଜେଣ୍ଟର ଗାର୍ଡେନ ସ୍କୁଲରେ ଶିକ୍ଷୟିତ୍ରୀ ପାଇଁ ଦରଖାସ୍ତ କରିଥିଲି । ମୋ

ସ୍ବୀକାରଣା ହୋଇଯାଇଛି ସେଠି ।" ଢୋକ ଗିଳି ପୁଣି କହିଲା ଶୋଭନା, "ତା'ଛଡ଼ା ତୁମକୁ ମୁଁ ସବୁଦିନ ବନ୍ଧୁଭାବରେ ଦେଖିଥିଲି । ଅନ୍ୟ କିଛି ରୂପେ ଏବେ ଚିନ୍ତା କରିବାଟା ମଧ୍ୟ କଠିନ । ମତେ ସମୟ ଦିଅ, ଇନ୍ଦର ।"

ଶୋଭନାର ଏ କଥା ପଛରେ ଆକାଶଭରା ଦୁଃଖ, କେତେ ଯେ ହାହାକାର । ଚୁପ୍ ହୋଇ ଠିଆହୋଇଛି ଇନ୍ଦର୍ ।

"କିଛି କହୁଲନି ଯେ ? ସବୁଦିନ ସାହାଯ୍ୟ କରିବ ତ ମୋତେ ? ଏତେ ବଡ଼ ସଂସାରରେ ମୁଁ ଯେ ନିହାତି ଏକା ।" —ସକସକ ହୋଇ କାନ୍ଦିପକାଇଲା ଶୋଭନା ।

ଶୋଭନାର ମୁଣ୍ଡ ସାଉଁଳାଇ ଇନ୍ଦର୍ ଏଥର କହିଲା, "ତୁମ ପାଖରେ ମୁଁ ଅଛି ଶୋଭନା, ତୁମେ ଏକା ଆଉ କେମିତି ? ସୁପ୍ରଭାତକୁ ମୁଁ କଥା ଦେଇଥିଲି—କଥା ରକ୍ଷିବି ନିଶ୍ଚୟ । ତୁମେ ଯଦି ମତେ କୌଣସି ଦିନ ଗ୍ରହଣ ନକର, ତେବେ ମଧ୍ୟ ମୋ ମନରେ କିଛି ଦୁଃଖ ରହିବ ନାହିଁ । ଆଉ କେବେ ଯଦି ମୋର ଅତି ନିଜର ହେବା ପାଇଁ ମନ ସ୍ଥିର କର···" ଖୁବ୍ ଧୀରଭାବରେ ହସିଲା ଇନ୍ଦର୍ । ନିଜର ଦୁଇହାତ ପାପୁଲି ଆଡ଼େ ଚାହିଁ କେମିତି ଏକ ଚହଲିତ କଣ୍ଠରେ କହିଲା, "ସେଇଦିନ ପାଇଁ ମୁଁ ଅପେକ୍ଷା କରି ରହିବି ।"

× × × ×

ରନ୍‌ୱେ୍ ଓ୍ୱାନ୍ ଉପରେ ଥିଆହୋଇଛି 'ଡେଲ୍‌ଟା ଫୋର୍'—ଇନ୍ଦର ମାଲହୋଡାର ମିଗ୍-୨୧ ଦାନବ । ଗଭିର ଅନ୍ଧାର ଭିତରେ ତା'ର ଫିଉସ୍ ଲେଜ୍ ଚକ୍ ଚକ୍ କରୁଛି । ଏଇ ବୋଧେ ଟିକିଏ ଆଗରୁ ତା'ର ପେଟ୍ରୋଲ ଟ୍ୟାଙ୍କ ଭର୍ତ୍ତି କରାହୋଇଛି । ପବନରେ ହାଇ ଅକ୍ଟେନ ପେଟ୍ରୋଲ୍‌ର ମାତାଲ ଗନ୍ଧ । ଲମ୍ବା ନିଃଶ୍ୱାସ ନେଲା ଇନ୍ଦର୍ । ଏଇ ବାସ୍ନାକୁ ଭଲପାଇବା ପାଇଁ ତ ତା'ର ଜନ୍ମ । କକ୍‌ପିଟ୍ ଭିତରେ ପଶିବାକୁ ଯାଇ ନିଜ ଭିତରେ ଗୋଟାଏ ନୂଆ ମଣିଷର ଅସ୍ତିତ୍ୱ ଅନୁଭବ କରୁଛି ସେ । ସେଇ ଉଡ଼ାଜାହାଜ, ସେଇ ରନୱେ୍, ସେଇ ଏକା ଚିହ୍ନା ମାହୋଲ୍—ଅଥଚ ପ୍ରତ୍ୟେକ ଥର ଗୋଟାଏ ଅଲଗା ଶିହରଣ, ଏକ ଭିନ୍ନ ସ୍ୱାଦ । ଗର୍ଜିଉଠିଛନ୍ତି ଡେଲ୍‌ଟା ଫୋର୍‌ର ଇଞ୍ଜିନ୍ । କଣ୍ଟ୍ରୋଲ ଟାଓ୍ୱାର କହୁଚି—କ୍ଲିଅର୍ ଫର୍ ଟେକ୍ ଅଫ୍ ଅନ୍ ରନ୍‌ୱେ୍ ଓ୍ୱାନ୍ ।

କ୍ଲାଇମ୍ବ ଟୁ ଏଲଭ୍ ଥାଉଜାଣ୍ଡ । କଲ୍ ଆଲ୍‌ଫା କଣ୍ଟ୍ରୋଲ୍ ।

—ରୋଜର୍ ଟେକିଂ ଅଫ୍ ।

ଗୋଟାଏ ଯନ୍ତ୍ରଣାର ଇସ୍ତାହାର ଗ୍ଲାଡ଼ଗଳା ପରି ଶେଷ ଗର୍ଜନ କରି ହଠାତ୍ ଉପରକୁ ଉଠିଯାଉଛି ମିଗ୍-୨୧ । ଅଳ୍ପ ବାଁକୁ ବାଙ୍କି, ଚକ ଦିଓଟିକୁ ଭିତରକୁ ନେଇ ନେଇ ତଳକୁ ଅନେଇଲା ଇନ୍ଦର୍ । କେତେବେଳେ ଧୂସର, କେତେବେଳେ ଅନ୍ଧକାର, କେବେ ବା ସବୁଜ ! ହସିଲା ମନକୁ ମନ । ଥ୍ରଟଲ୍ ପୁରା ଟାଣି ଅଣିଲା । ମ୍ୟାକ୍‌ସ ସ୍ପିଡ୍, ଭର୍ଟିକାଲ୍ ଟେକ୍ ଅଫ୍ । ଗୋଟିଏ ପୃଥିବୀ, ଅନେକ ରଙ୍ଗ ।

# ନୀରବ ପର୍ବତ

ସମସ୍ତେ ଧରିନେଇଥିଲେ ଅଭିଜିତ୍ ଆଉ ଚାକିରିବାକିରି ପାଇବନି । ଏମିତିକି ଅଭିଜିତ୍ ମନରେ ବି କିଛି ଆଶଙ୍କା ରହିଯାଇଥିଲା । ସେ ଦିନେ ଶୁଭକାନ୍ତକୁ କହିଥିଲା, "ଏମାନେ କେହି ବୁଝନ୍ତିନାହାନ୍ତି କାହିଁକି ? ମୁଁ ତ ଆଉ ଭାଇଙ୍କ ଭଳି ଭଲ ଷ୍ଟୁଡେଣ୍ଟ ନୁହେଁ । କମ୍ପିଟିଟିଭ୍ ପରୀକ୍ଷା ଦେଇ ଚାକିରି ପାଇବା କ'ଣ ଏତେ ସହଜ ?"

ଶୁଭକାନ୍ତ ଆଶ୍ଚର୍ଯ୍ୟ ହୋଇଥିଲା । ଉତ୍ତର ଦେଇଥିଲା, "ଆଇ. ଏ. ଏସ୍. ବା ବ୍ୟାଙ୍କ ଚାକିରି ଛଡ଼ା କ'ଣ ଆଉ ଚାକିରି ନାହିଁ ? ତୁ ଅନ୍ୟ ରାଜ୍ୟସ୍ତରୀୟ ପରୀକ୍ଷାପାଇଁ ଚେଷ୍ଟା କରୁନୁ କାହିଁକି ?"

ଅଭିଜିତ୍ ଚେଷ୍ଟା କରିଥିଲା । ଘରେ ବାପା, ମା', ଭାଇ, ଭାଉଜଙ୍କର ନାକଟେକା ଏବଂ ବାହାରେ ଉଚ୍ଚପଦସ୍ଥ ଜନ ଭଦ୍ରଲୋକଙ୍କର ତାଚ୍ଛଲ୍ୟକୁ ଗୋଡ଼ରେ ଆଡ଼େଇ ଦେଇ ସେ ପରୀକ୍ଷା ଦେଇଥିଲା । ଯେଉଁଦିନ ଚାକିରି ପାଇଯାଇଛି ବୋଲି ଚିଠି ପାଇଥିଲା, ସେଦିନ ତା'ର କି ଆନନ୍ଦ ! ଆଗ ଯାଇ ଖବରଟା ଦେଇଥିଲା ଉଷସୀକୁ । ସ୍କୁଲରୁ ବୋଧହୁଏ ସଦ୍ୟ ଫେରିଥିଲା ସେ । ଶାଢ଼ି ବଦଳେଇ ନଥିଲା ସେ ପର୍ଯ୍ୟନ୍ତ । ଅଭିଜିତ୍‌ର ଉଚ୍ଛ୍ୱସିତ ଆନନ୍ଦ, ଅସୀମ ପ୍ରାପ୍ତିର ସୁଖରେ ଉଷସୀ ଯୋଗ ଦେଲାନାହିଁ । କିଛି ବୁଝିନପାରି ଅଭିଜିତ୍ ଅବାକ୍ ହେଲା । ଆଘାତ ପାଇଲା । ତା'ର ମନୋଭାବ ପ୍ରତି ଟିକେମାତ୍ର ଭ୍ରୂକ୍ଷେପ ନକରି ଶେଷରେ ଉଷସୀ ଦାନ୍ତ ଚିପି କହିଥିଲା, "ହଁ, ଯେତେ ଯାହାହେଲେ ନନ୍-ଗେଜେଟେଡ୍ ଚାକିରି ତ !"

ଅଭିଜିତ୍‌ର ସମସ୍ତ ଉତ୍ସାହରେ ଭଟ୍ଟା ପଡ଼ିଯାଇଥିଲା ସେତେବେଳକୁ । ଉଷସୀ ଘରୁ ଫେରିବାବେଳେ ସେ ସ୍ଥିର କରିନେଲା ଯେ ଘରେ ଚାକିରି ପାଇବା କଥା କହିବ ନାହିଁ । ଉଷସୀ ଯେଉଁଠି ବୁଝିଲା ନାହିଁ, ସେଠି ଘରଲୋକେ କ'ଣ ବୁଝିବେ ? ଅହେତୁ ସମାଲୋଚନା, ଅହେତୁ ଆଘାତ । ନା, ଧୈର୍ଯ୍ୟ ନାହିଁ ତା'ର ।

କିନ୍ତୁ ଘର ବାରଣ୍ଡାରେ ପାଦ ଦେଇ ତାକୁ କେମିତି ଅଲଗା ଅଲଗା ଲାଗିଲା । ଘରର ସାଧାରଣ ଶାନ୍ତ ପରିବେଶରେ ପରିବର୍ତ୍ତନ ଆସିଛି । ଗୋଟାଏ ଖୁସି ଖୁସି ଭାବ ଘେରିରହିଛି ଇଟା, ଚୂନ, ସିମେଣ୍ଟରେ ତିଆରି ହୋଇଥିବା ଦୁଇ ମହଲା ଘରଟିକୁ । ତାକୁ ଚକିତ କରି ଦାଣ୍ଡକୁ ଭାସିଆସିଲା ବାପାଙ୍କର ଜୋର୍ ହସ । ଭାଇ ମଜାଳିଆ ସ୍ୱରରେ କ'ଣ ଯେମିତି କହିଲେ । ବାପା ସମାଲୋଚନା କରିବା ଛଡ଼ା ଆଉ କିଛି କରିପାରନ୍ତି ? ପାରନ୍ତି ହସି ? ବୋଧହୁଏ ଭାଇ ପ୍ରମୋସନ ପାଇଛନ୍ତି ।

"ଆରେ, ଏଇ ତ ଅଛି ! ! କ'ଣ ମୁହଁଟାକୁ ଲମ୍ବକରି ବସିଛ ? ତୁମେ ଭାବିଥିଲ ହଠାତ୍ କହିଦେଇ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେବ—ନୁହେଁ ?" ହାତ ଧରି ଭିତରକୁ ଟାଣି ନେଇ ନେଇ ଭଉଜ କହିଲେ ।

ମା' ହସି ହସି ପୂଜା ଘରୁ ବାହାରିଆସିଲ, "ମୁଁ ତୋ ବନ୍ଧୁ-ଖାତା ସଜାଡ଼ୁ ସଜାଡ଼ୁ ତୁରୁ ଆପଏଣ୍ଟମେଣ୍ଟ ଲେଟର୍ ପାଇଲି । ଏତେ ବଡ଼ ଖବର ଆମକୁ ଲୁଚେଇ ରୁ ଯାଇଥିଲୁ କୁଆଡ଼େ ?"

ଯାଇପଟ୍ଟା ହାଲୁରେ କାମୁଡ଼ି ବାପା କହିଲେ, "ମୁଁ ତ ତୋ ଉପରୁ ଆଶା ଛାଡ଼ି ଦେଇ ଥିଲି । ଯାହେଉ, ଏତେ ଭଲ ଚାକିରି ହୋଇଗଲା ।"

ଭଲ ଚାକିରି ? ଉଷସୀ ପାଖରୁ ପାଇଥିବା ଥଣ୍ଡା ବ୍ୟବହାରର ପ୍ରଭାବ ସେ ପର୍ଯ୍ୟନ୍ତ ଯାଇନଥିଲା—ଅଉ ଏମାନେ କହୁଛନ୍ତି ଭଲ ଚାକିରି ? ଏବେ ବି କାନରେ ବାଜୁଯାଉଛି ଉଷସୀର କଥା କେଇପଦ—"ହଁ, ଯେତେ ଯାହାହେଲେ ନନ୍‌ଗେଜେଟେଡ୍ ଚାକିରି ତ !" କିନ୍ତୁ ଘରେ ସମସ୍ତେ ଏତେ ଖୁସି କାହିଁକି ? ଚାକିରିଟା ସେଲ୍‌ସଟ୍ୟାକ୍ସର ବୋଲି ?? ନିଜ ଲୋକଙ୍କ ସମ୍ପର୍କରେ ଏମିତିକା କଥା ଚିନ୍ତା କରିବା ପାଇଁ ଅଭିଜିତ୍‌କୁ ବାଧିଲା । ମନରୁ ସବୁ ଆଶଙ୍କା ପୋଛିନେଇ ସେ ଘରଲୋକଙ୍କ ଆନନ୍ଦରେ ସାମିଲ ହୋଇଗଲା ।

ପୋଷ୍ଟିଂ ଆସିଲା—ଶିଲିଗୁଡ଼ି । ଏଇଠୁ କିଛି ବାଟ ପରେ ହିମାଳୟ । ମାତ୍ର କେଇ ଘଣ୍ଟାର ରାସ୍ତା ଦାର୍ଜିଲିଂ । ପ୍ରଥମେ ପଡ଼େ ଚାହା ବଗିଚା । ତା' ପରେ ପରେ ଘାଟି ରାସ୍ତା ଓ ଘଞ୍ଚ ଜଙ୍ଗଲ । ଆଉ ଏଇଠୁ ରାସ୍ତା ଯାଇଛି ଭୁଟାନ—ଫୁଣ୍ଟସିଲିଙ୍ଗକୁ । ପୁଣି ଅଜଣା ରୋମାଞ୍ଚଭରା ସିକିମ ଓ ଅନ୍ୟାନ୍ୟ ଉତ୍ତରପୂର୍ବ ରାଜ୍ୟକୁ । ଅନ୍ୟପଟେ ଆରମ୍ଭ ହୋଇଛି ନେପାଳ ସୀମାନ୍ତ । ଦୁଇଦିନିଆ ଟୁରିଷ୍ଟ ପାଇଁ ଶିଲିଗୁଡ଼ି ଗୋଟିଏ ନିଦୁଆ ଷ୍ଟେଟ ସହର । ହିମାଳୟକୁ ସମତଳ ଭୂଇଁରୁ ଗୋଟାଏ ପାହାଚ ।

ଏହାଛଡ଼ା ଶିଲିଗୁଡ଼ିର ଅନ୍ୟ ଏକ ପରିଚୟ ଅଛି ଗୋଟାଏ ବଡ଼ ବ୍ୟବସାୟ କେନ୍ଦ୍ର ହିସାବରେ । ଏଇଠୁ ମାଲ୍ ଯାଏ ଚାରିଆଡ଼କୁ । ଟ୍ରେନ୍‌ରେ, ଟ୍ରକ୍‌ରେ ଜିନିଷ ଲଦାହୋଇ ଆସେ ଶିଲିଗୁଡ଼ି । ଏଠାରୁ ଛୋଟବଡ଼ କ ପାହାଡ଼ୀ ରାସ୍ତାରେ ହାତ ବଦଳ ହୋଇ ଚାଲିଯାଏ ପର୍ବତଘେରା ଦୂରଦୂରାନ୍ତର ସହରମାନଙ୍କୁ । ଆଇନ୍‌ସମ୍ମତ ବ୍ୟବସାୟ ପାଖାପାଖି ଶିଲିଗୁଡ଼ିରେ ଗଢ଼ିଉଠିଛି ବେଆଇନ୍ ଚୋରା କାରବାରର ଗୋଟିଏ ବିଶେଷ କେନ୍ଦ୍ର । ହିମାଳୟର ସାନ୍ନିଧ ଖୋଜୁଥିବା ସାଧାରଣ ଦର୍ଶକର ଆଖି ଅନ୍ତରାଳରେ କୋଟି କୋଟି ଟଙ୍କାର ହେର୍‌ଫେର୍ ଚାଲେ ଏକ ସମାନ୍ତରାଳ ସଭ୍ୟତାର ସଦସ୍ୟମାନଙ୍କ ଭିତରେ । ସ୍ମଗଲିଂ—ଶିଲିଗୁଡ଼ି ସହରର ବ୍ୟତିକ୍ରମ ବ୍ୟବସାୟ । ଏପାଖରୁ ହେଉ ବା ସେପାଖରୁ—ଶିଲିଗୁଡ଼ି ପାର କରାଇଦେଲେ ହେଲା । ବାସ୍—ତା'ପରେ ଖାଲି ଟଙ୍କା—ହିମାଳୟ ପରି ଅଜସ୍ର ଟଙ୍କା ।

ଟ୍ରେନିଂରୁ ଗୁଡ଼ାଏ ଆଦର୍ଶବାଦର ପୁଞ୍ଜି ଧରି ଅଭିଜିତ୍ ଆସି ପହଞ୍ଚିଲା ସହରରେ ପ୍ରଥମ ଚାକିରିର ଅସଂଖ୍ୟ ସ୍ୱପ୍ନ ନେଇ ।

ଗ୍ରୁକଣରେ କଛ ମାସ କଟିଗଲ । ସହରରେ ପୁରୁଣା ହୋଇ ଆସିଲ ଅଭିଜିତ୍ । ଏଇ ସମୟରେ ପ୍ରଥମ ଥର ପାଇଁ ତାକୁ ଚେକ୍ ପଏଣ୍ଟରେ ଡ୍ୟୁଟି ଦେବାକୁ ପଡ଼ିଲ ।

ଅଫିସ୍ରେ ତା' ସହକର୍ମୀ ଦେବେନ୍ଦ୍ର ଆଖିମିଟିକା ମାରି କହିଥିଲ, "ଭାଇ, ତୋ ଆଦର୍ଶ-ଫାଦର୍ଶ ଘରେ ଡାଳ ଦେଇଯିବୁ । ନଚେତ୍ ଲଭ ତ କାହାର କଛ ହେବନ, ବରଂ ପସ୍ତେଇବୁ ତୁ ।"

ଆଶ୍ଚର୍ଯ୍ୟରେ ଅଭିଜିତ୍ ପଗ୍ଗ୍ରିଥିଲ, "ମାନେ ?"

"ମାନେ ?" ଭ୍ରୂ ଦୁଇଟି ଟେକଦେଇ ଦେବେନ୍ଦ୍ର ବୁଝେଇଥିଲ, "ଏପଟେ ଅର୍ଥାତ୍ ଚେକ୍‌ଗେଟ୍ଆଡ଼େ ଦରକାରି ନିୟମ ଚଳେ ନାହିଁ । ସେଠାକାର ନିୟମ ସ୍ୱତନ୍ତ୍ର । ତାକୁ ପାଳନ କରିବାକୁ ସମସ୍ତେ ବାଧ୍ୟ । ଯେତେ ଶୀଘ୍ର ପାରିବୁ ସେହି ନୀତ-ନିୟମକୁ ମୁଖସ୍ଥ କରିଦେ । ଜୀବନରେ ଅର୍ଥାତ୍ ଗ୍ରୁକର ଜୀବନରେ ସୁଖୀ ହେବୁ ।"

ଦେବେନ୍ଦ୍ରର ଅଙ୍କାବଙ୍କା କଥା ଅଭିଜିତ୍ ଭଲଭାବରେ ବୁଝିନଥିଲ । ସତ କହିବାକୁ ଗଲେ ବୁଝିବା ପାଇଁ ଇଚ୍ଛା କରିନଥିଲ । ଚେକ୍‌ଗେଟ୍ ପାଖରେ ବସି ସିଗାରେଟ୍ ଟାଣିବା-ବେଳେ କଛ ଗୋଟାଏ ଅସ୍ୱସ୍ତି ଭାବ ଘେରିରହିଥିଲ ତାକୁ । ତା' ସାମ୍ନାରେ ନାଚ କରୁଥିଲେ ଦେବେନ୍ଦ୍ରର ଅଙ୍କାବଙ୍କା କଥା ଆଉ ଘର ଲୋକଙ୍କର "ଭଲ ଗ୍ରୁକର" ପାଇବାର ଆନନ୍ଦ । ଚେଷ୍ଟାକରି ମନ ଭିତରୁ ସମସ୍ତ ଆଶଙ୍କାକୁ ପୋଛିଦେଲ ଅଭିଜିତ୍, କନ୍ତୁ ଅସ୍ୱସ୍ତି କଟାଇ ପାରିଲ ନାହିଁ ।

ତାକୁ ଏବଂ ତା'ର ଆଦର୍ଶବାଦକୁ ଚ୍ୟାଲେଞ୍ଜ କରି ଗ୍ରତ ସାଢ଼େ ବାରଟାରେ ଟ୍ରକଟିଏ ଆସିଲ । ହାତ ଦେଖାଇ ଅଭିଜିତ୍ ଅଟକାଇଦେଲ । ଟ୍ରକରେ ବୋଝେଇ କାଠ ।

"ପେପର୍‌ସ ?" ଆବଶ୍ୟକୀୟ କାଗଜ ପାଇଁ ହାତ ବଢ଼ାଉ ବଢ଼ାଉ ସେ ଜାଣିଥିଲ ଏ କାଠର କାଗଜ ସେ ପାଇବ ନାହିଁ । ତଥାପି ମୁହଁରେ କୌଣସି ଭାବ ନଫୁଟାଇ ସେ ଆଉଥରେ ମାଗିଲ—"ପେପର୍‌ସ ?"

ଡ୍ରାଇଭର ପାଖ ସିଟ୍‌ରେ ବସିଥିଲ ମୁଣ୍ଡରେ ଲମ୍ବା ପଗଡ଼ି ଗୁଡ଼ାଇ ଲୋକଟିଏ । ଅଭିଜିତ୍ ପ୍ରଶ୍ନର ଉତ୍ତରରେ ସେ ହାତ ବଢ଼େଇଦେଲ ବାହାରକୁ । ହାତରେ ତା'ର କାଗଜ ପରିବର୍ତ୍ତେ ଥିଲ ଗ୍ରେଟ କନା ଛଅଣି ବଟୁଆଟିଏ । ବଟୁଆ ଭିତରେ କ'ଣ ଅଛି ସେ କଥା ଆଉ ପଗ୍ଗ୍ରିବାର ଆବଶ୍ୟକତା ନଥିଲ । ଶିଳଗୁଡ଼ିରେ ପହଞ୍ଚିବା ପରଠାରୁ ତା' କାନରେ ପଡ଼ିଥିବା ଉଡ଼ାଖବର, ଦେବେନ୍ଦ୍ରର ଆଖି ମିଟିକାମରୁ ଅଙ୍କାଲଥା କଥା—ସବୁ ସତ !! ଏମିତ ଖୋଲଖୋଲ୍ ଭାବରେ ଏତେ ବେଆଇନ କାମ ଗ୍ଲେ କେମିତ ? ଘୃଣା ଓ ରାଗରେ ତା'ର ଶରୀର ଭିତର କମ୍ପି ଉଠିଲ । ଗୋଲମାଲ ହୋଇଗଲ ତା' ମୁଣ୍ଡ ଭିତରେ । ଚିତ୍କାର କରି ତାକୁ ଲାଞ୍ଚ ଦେବାର ପରିଣାମ ଉପରେ ଗ୍ରେଟକାଟିଆ ଭାଷଣ ଦେବା ଆରମ୍ଭ କରିଦେଲ ସେ । ଆଶ୍ଚର୍ଯ୍ୟ, ଲୋକ ଦୁଇଟି ନିର୍ବିକାର ! ଦ୍ୱିଗୁଣ ସ୍ୱରଗ୍ରାମରେ ଏଥର ଗାଳି ବର୍ଷଣ କରିବା ସେ ଆରମ୍ଭ କରିଦେଲ । ଦମ୍ ନେବା ପାଇଁ ଯେତେବେଳେ ଅଭିଜିତ୍

କ୍ଷଣକ ପାଇଁ ଚୁପ୍ ହେଲା, ଠିକ୍ ସେଠିକବେଳେ ପଗଡ଼ିପିନ୍ଧା ଲୋକଟି ଡ୍ରାଇଭରକୁ ଚାହିଁ ତଚ୍ଛାକଲାଭଳି ହସିଲା । "ନମସ୍କାର ସାର୍ ହେଁ ଶାଳା" ଏବଂ ପର ମୁହୂର୍ତ୍ତରେ ଦୁଇଜଣ ଟ୍ରକ୍ ନେଇ ଚାଲିଗଲେ । ଅପମାନିତ ଅଭିଜିତ୍ ଅବଶ୍ୱାସ୍ୟ ଦୃଷ୍ଟିରେ କେବଳ ଚାହିଁ ରହିଲା ସେ ଦିଗରେ । କ'ଣ ସେ କରିବ ? କ'ଣ କରିଯାଇପାରେ ??

ପରଦିନ ସକାଳୁ ସକାଳୁ ଅଫିସ୍‌ରେ ପହଞ୍ଚି ଏ ଘଟଣା ସମ୍ପର୍କରେ ରିପୋର୍ଟ ଲେଖି ଆସିଲା ସେ । ଅଫିସ୍‌ର ସବୁ କୋଣରେ ଏବେ ଆଖି ଠାରିଠାରି, ହସର ଚାପା ଗୁଞ୍ଜନ କାହିଁକି ?

ମୁହଁକୁ ଯଥାସମ୍ଭବ ଗମ୍ଭୀର କରି ଅଭିଜିତ୍‌କୁ ତା' ଉପର ଅଫିସର୍ ଆଶାବାଣୀ ଶୁଣାଇଥିଲେ—ଏ ଘଟଣାର ଶୀଘ୍ର ତଦନ୍ତ କରାଯିବ, କିନ୍ତୁ କେଇ ମାସ କଟିଗଲା ପରେ ମଧ୍ୟ ଫାଇଲ୍ ଘୁଞ୍ଚିଲା ନାହିଁ ।

ଏ ଭିତରେ ତାକୁ କେଇଥର ଡ୍ୟୁଟି ଦେବାକୁ ପଡ଼ିଛି । ଅପମାନିତ ହେବାକୁ ମଧ୍ୟ ହୋଇଛି । ବିରକ୍ତରେ କମିଶନର୍‌ଙ୍କ ଅଫିସ୍‌କୁ ଚିଠି ଲେଖିଲା ସେ ।

ଚିଠି ଦେବାର ଦଶ ପନ୍ଦର ଦିନ ପରର ଘଟଣା—ତଥାପି ଉତ୍ତର ଆସିନାହିଁ । ସେଦିନ ରାତିରେ ସେ ପାଖ ହୋଟେଲରୁ ରୁଟି ତରକାରୀ ଖାଇ ଘରେ ଶୋଇପଡ଼ିଥାଏ । କବାଟ ଧଡ଼ ଧଡ଼ ଶବ୍ଦରେ ନିଦ ଭାଙ୍ଗିଗଲା ତା'ର । ଲାଇଟ ଜଳାଇ ସମୟ ଦେଖିଲା । ଦୁଇଟା ବାଜିଛି । ଏତେ ରାତିରେ କିଏ ? ହାତରେ ଦେଢ଼ଫୁଟିଆ ଛୁରୀ ଧରି ସେଇ ଆଠ ଦଶଜଣ ବାହାରେ ଠିଆ ହୋଇଥିଲେ ସେମାନଙ୍କୁ ଚିହ୍ନିବାରେ ଅଭିଜିତ୍‌ର ଭୁଲ୍ ହେଲା ନାହିଁ । ଏମାନେ ସେଇ କାଠ ବ୍ୟବସାୟୀର ଲୋକ । କାଠ ନେଇ ଯାଉଥିବା ଟ୍ରକ୍‌ରେ ଏମାନଙ୍କୁ ପ୍ରାୟ ଦେଖିଛି ସେ । ସେମାନଙ୍କଠାରୁ ବାରମ୍ବାର ଅପମାନିତ ହୋଇଛି । ଏତେ ରାତିରେ ପୁଣି ଛୁରୀ ଧରି କାହିଁକି ?

ଭୟ ପାଇଲା ନାହିଁ ସେ । ଖୁବ୍ ନମ୍ରର ସହିତ ପଚାରିଲା, "କ'ଣ ଦରକାର ?"

"କିଛି ନାହିଁ ସାର୍ । ଆପଣଙ୍କୁ ଟିକିଏ ମାପିବା ପାଇଁ ଆସିଥିଲୁ ।" ବିନମ୍ର ସ୍ୱର ସେମାନଙ୍କର ନେତା ଭଳି ଦିଶୁଥିବା ମୁଣ୍ଡରେ ପଗଡ଼ିବନ୍ଧା ଲୋକଟି କହିଲା । ତାହାର ହାତରେ ଛୁରୀଟି ଧରି ବାଁ ହାତ ପାପୁଲିରେ ଘଷି ଘଷି ସେ ଅଭିଜିତ୍ ଆଡ଼କୁ ମାଡ଼ି ଆସିଲା । ତା' ଆଖିରେ ଆଖି ମିଳାଇ ଠିଆ ହୋଇ ରହିଲା ଅଭିଜିତ୍ । ଲୋକଟି ସନ୍ଦକୁ ସନ୍ଦ ଛୁରୀ ଦେଇ ମାପି ବସିଲା ତାକୁ ।

"ଆବେ ଏ ରାମେଶ୍ୱର—ୟାଦ୍ ରଖ୍—ସାଢ଼େ-ଚାର ଚାକୁ । ଶୁଣିଲୁ ସାର୍ ।"

ସେମାନେ ଚାଲିଗଲେ । ରାତିର ଅନ୍ଧକାରରେ ଗୋଟି ଗୋଟି ହୋଇ ସମସ୍ତେ ଲୁଚିଯିବା ପର୍ଯ୍ୟନ୍ତ ସେମିତି ବାହାରେ ଠିଆ ହୋଇ ରହିଲା ସେ । ତା'ପରେ ଆସ୍ତେ କବାଟ ବନ୍ଦ କରି ଖଟରେ ଗଡ଼ିପଡ଼ିଲା । କାହିଁକି ଆସିଥିଲେ ସେଇ ଲୋକମାନେ ? ଇଚ୍ଛା କରିଥିଲେ ତ ତାକୁ ମାରି ଶରୀରଟାକୁ କେଉଁଠି ହେଲେ ଫୋପାଡ଼ି ଦେଇ ପାରିଥାଆନ୍ତେ । ତା' ନକରି·· ଛୁରୀରେ ମାପିବାର ଉଦ୍ଦେଶ୍ୟ କ'ଣ ? ଭବିଷ୍ୟତ ପାଇଁ ଚେତାବନୀ ! ଭୟ ଦେଖାଉଥିଲେ

ତାକୁ ?—ଫ୍—କଡ଼ ଓଲଟାଇ ସେ ଶୋଇପଡ଼ିଲା ।

ପରଦିନ ଅଫିସ୍ । ଗୁରୁ ଘଟଣା ରିପୋର୍ଟ କଲା । ଜାଣିଥିଲା ଏଦ୍ୱାରା କୌଣସି ଫଳ ହେବ ନାହିଁ । ତଥାପି କର୍ତ୍ତବ୍ୟ ।

ଏମିତି କଟିଗଲା କେତୋଟି ଦିନ । ପୁଣି ଡ୍ୟୁଟି । ନିର୍ଲିପ୍ତ ଭାବରେ ଚେକ୍-ଗେଟ୍ ଡ୍ୟୁଟିରେ ବସିରହିଲା ଅଭିଜିତ୍ । କାହିଁକି ସେ ଡ୍ୟୁଟିର ନାଟକ ଏଠି ପ୍ରତି ରାତିରେ ହୁଏ !! ଚେକ୍-ଗେଟ୍ ଭାଙ୍ଗି ଯାଇଛି କେବେଠାରୁ । ଗେଟ୍ ଥିଲେ ବା କ'ଣ ହୁଅନ୍ତା ? ଯେଉଁମାନେ ଗ୍ରେଭ ବ୍ୟବହାର କରିବା ପାଇଁ ସମ୍ପୃକ୍ତ କର୍ମକର୍ତ୍ତାମାନଙ୍କଠାରୁ ଅନୁମତି ପାଇସାରିଛନ୍ତି, ସାମାନ୍ୟ କାଠର ଗେଟ୍‌ଟିଏ ତାଙ୍କୁ ଅଟକାଇଦେବ ?

ଟ୍ରକ୍ ଆସୁଛି । ଦୂରରୁ ଟ୍ରକ୍‌ର ହେଡ୍ ଲାଇଟ୍ ଦେଖି ମଧ୍ୟ ଉଠିଲା ନାହିଁ ଅଭିଜିତ୍ । ଇଚ୍ଛା ହେଲେ ସେମାନେ ରହିବେ ନ ହେଲେ ନାହିଁ । ତା'ର କରିବାର ବା କ'ଣ ଅଛି ? କାଗଜ ସେମାନେ ଦେଖାଇବେ ନାହିଁ । ଯନ୍ତ୍ର ଦାନବଟିକୁ ସେ ଦୁଇ ହାତରେ ଅଟକାଇବାର ପ୍ରଶ୍ନ ଇ ଉଠେ ନାହିଁ । ଏହା ଭିତରେ ତା'ର ଯଥେଷ୍ଟ ଅଭିଜ୍ଞତା ହୋଇଛି । ଅଯଥା ଗାଳି ଗୁଲଜ କରିବା, ଜେଲ୍ ଜୋରିମାନାର ଭୟ ଦେଖାଇବା—ଏ ସବୁରୁ ଊର୍ଦ୍ଧ୍ୱକୁ ଉଠିଯାଇଛି ଅଭିଜିତ୍ । ନିର୍ଲିପ୍ତ ଭାବରେ ସିଗାରେଟ୍ ପିଇ ଚାଲିଲା ସେ ।

ଟ୍ରକ୍‌ଟି ସାମ୍ନାରେ ରହିଲା । ପୁଣି ସେଇ ନାଟକ ? ଓଠରେ ବିଦ୍ରୂପଭରା ହସଟିଏ ଖେଳିଗଲା ତା'ର । ନା—ଏଥରକର ନାଟକୀୟତାରେ ନୂତନ ରୂପ ଆସିଛି । ଅର୍ଥଲାଳସା ନୁହେଁ—ସାଂଘାତିକ ଭୟ । ଟ୍ରକ୍‌ରୁ ଯେଉଁ ଦୁଇଜଣ ଧପ୍ ଧପ୍ କରି ଓହ୍ଲାଇ ଆସିଲେ ସେମାନଙ୍କର ହାତରେ ଥିଲା ଦୁଇଟି ଭୟଙ୍କର ପିସ୍ତଲ୍ । ଅଭିଜିତ୍ ଜାଣେ, ଏଗୁଡ଼ିକ ଖେଳଣା ନୁହେଁ । କିନ୍ତୁ କି ଏକ ବେପରୱା ଭାବ ଘେରି ଯାଇଥିଲା ତାକୁ । ତା' ହାତ କମ୍ପି ଉଠିଲା ନାହିଁ କି ଓଠ ଥରିଲା ନାହିଁ । ସିଗାରେଟ୍ ଦୂରକୁ ଫୋପାଡ଼ି ଦେଇ ଅଣ୍ଟାରେ ହାତ ଥାପି ଠିଆହୋଇପଡ଼ିଲା । ପିସ୍ତଲ୍ ଟ୍ରିଗର୍‌ରେ ଆଙ୍ଗୁଳି ରଖି ଲୋକ ଦୁଇଜଣ ଅଭିଜିତ୍‌ର ଗୋଡ଼ଠାରୁ ମୁଣ୍ଡଯାଏଁ ଘୂରେଇ ଘୂରେଇ ଆଣିଲେ । ପିସ୍ତଲ୍ ଦେଇ ଆଳତି କରୁଥିଲେ ପରି !

ନା—ଆଉ ନୁହେଁ । ଆଉ ସହ୍ୟ ହେବ ନାହିଁ । ଏମିତି ଏମାନେ ବାରମ୍ବାର ଅପମାନ କରିଯାଉଥିବେ ଏବଂ ସେ ନିର୍ଲିପ୍ତ ଭାବ ଦେଖାଇ ସହିଯାଉଥିବ ! ଚୁଲିକୁ ଯାଉ ଅଫିସ୍‌ର ନୀତି ନିୟମ !

ପରଦିନ ଅଭିଜିତ୍ ପହଞ୍ଚିଗଲା ଲୋକାଲ ଥାନାରେ । ଅଧଘଣ୍ଟାଏ ତାକୁ ବସେଇଦେଲେ ଥାନାବାବୁ ଏବଂ ଡ୍ୟୁଟି ରେଜିଷ୍ଟରରେ ମନୋନିବେଶ କଲେ । ମଝିରେ କିଛି କହିବାପାଇଁ ଚେଷ୍ଟା କରିଥିଲା ଅଭିଜିତ୍ । କିନ୍ତୁ ତଳେ ଖୋଲା ହୋଇ ରହିଥିବା ଫାଇଲ୍ ଆଡ଼େ ମୋଟା ଆଙ୍ଗୁଠିଟିଏ ଦେଖାଇ ସାମାନ୍ୟ ବଙ୍କା ହସ ହସିଲେ ଥାନାବାବୁ । ସେ ହସକୁ ଅନୁବାଦ କଲେ ବୋଧହୁଏ ଏପରି ହୁଅନ୍ତା—ପ୍ଲିଜ୍—କାମଟା ହୋଇଯିବାକୁ ଦିଅନ୍ତୁ ।

ଅଭିଜିତ୍ ଅପେକ୍ଷାକଲା ।

ତା'ପରେ ଆହୁରି ଗୁରିଟି ଫାଇଲ୍ ଦେଖି ସାରିବା ପରେ ଗୁହା ପିଆର ପାଳି । ଗୁହା-ପର୍ବର ସମାପ୍ତି ପରେ ଅଭିଜିତ୍ କଥା ଶୁଣିବା ପାଇଁ ସଜାଡ଼ି ହୋଇ ବସିଲେ ମଧ୍ୟବୟସ୍କ ସବ୍‌ଇନ୍‌ସପେକ୍ଟର, "ଏଥର କୁହନ୍ତୁ ସାର୍, ଆପଣଙ୍କର କେମିତି ପାଦ ପଡ଼ିଲା ?"

ମୁଣ୍ଡ ଭିତରେ ଫୁଟୁଥିବା ଅସଂଖ୍ୟ ବୁଦ୍‌ବୁଦକୁ ନିୟନ୍ତ୍ରଣରେ ରଖି ଅଭିଜିତ୍ ଯାବୁପର୍ଯ୍ୟନ୍ତ ଶାନ୍ତଭାବରେ ଦେଖାଇଦେଲା ଜାଠ ଗ୍ରହଣ କଥା ବର୍ଣ୍ଣନା କଲା । ସବୁ ଶୁଣିଲେ ସବଇନ୍‌ସ-ପେକ୍ଟର । ମାନେ ବାବୁ ପଡ଼ିବ—ଖୁବ୍ ମନଦେଇ ଶୁଣିଲେ । ଟେବୁଲ୍ ଉପରେ ଓଦା କନାରେ ବନ୍ଧା ହୋଇ ରହିଥିବା ପାନପୁଡ଼ିଆରୁ ଦୁଇଟି ପାନ କାଢ଼ି ଏକା ସାଙ୍ଗରେ ପାଟିରେ ଗୁଞ୍ଜି ଦେଉ ଦେଉ ସେ କହିଲେ, "ଆଃ—ଏଇଟା ଆମକୁ ବଳେଇଯିବ ? ଚିନ୍ତା କରନ୍ତୁନାହିଁ ଆଜ୍ଞା—ଆଜି ବାରଟାରେ ପୋଲିସ୍ ଚେକ୍ ପଏଣ୍ଟରେ ପହଞ୍ଚିଯିବ ।"

ଡ୍ୟୁଟି ନଥିଲେ ବି ସେଦିନ ଚେକ୍ ପଏଣ୍ଟ୍‌ରେ ପହଞ୍ଚିଗଲା ଅଭିଜିତ୍ । ସେଦିନ ଡ୍ୟୁଟିରେ ଥିବା ସହକର୍ମୀ ଜଣକ ତା'ର ଆକସ୍ମିକ ଆଗ୍ରହ ଦେଖି ଆଶ୍ଚର୍ଯ୍ୟ ହେଲେ ନିଶ୍ଚୟ, କିନ୍ତୁ କିଛି କହିଲେ ନାହିଁ । ଆଜି ସମୟ କଟୁନି ତା' ପାଇଁ । ଦଶଟା—ସାଢ଼େ ଦଶଟା—ଥରକୁ ଥର ସେ ଘଡ଼ି ଦେଖୁଛି । ଏଗାରଟା ବାଜିବାକୁ ପାଞ୍ଚ ମିନଟ୍ ।

ଆରେ, ଏ କ'ଣ ? ଏ ତ ହେବାର ନୁହେଁ । ଅବିଶ୍ୱାସର ଦୃଷ୍ଟିରେ ଅଭିଜିତ୍ ଗୁହିଁରହିଥିଲା ମାଡ଼ିଆସୁଥିବା ଟ୍ରକ୍‌ଟିକୁ । ବାରଟା ବାଜିବାକୁ ବହୁତ ଡେରି । ଏତେ ଶୀଘ୍ର ଆସିଗଲା ଆଜି ?

ସବ୍‌ଇନ୍‌ସପେକ୍ଟରଙ୍କର ଆଶ୍ୱାସନା ବାଣୀ ମିଥ୍ୟା ହେବେ ? ଟ୍ରକ୍ ମୁହୂର୍ତ୍ତକ ମଧ୍ୟରେ ଅତିକ୍ରମ କରି ଗ୍ରଲିଗଲା । ନିଶବ୍ଦ ରାତିରେ ଏକ ଭୟଙ୍କର ପରିବେଶ ସୃଷ୍ଟିକରି ଭାସିଆସିଲା ଗଗନଚୁମ୍ବୀ ସମ୍ମିଳିତ ହସ । କିଏ ଜଣେ ଘାଗଡ଼ା ଗଳାରେ କହିଲା ବୋଧେ, "ଅରେ, କହାଁ ହୈ ରେ ସାବ୍‌କା ଫୌଜ ?" ହାତ ମୁଠା ମୁଠା କରି ଅସହାୟ ଭାବରେ ଗ୍ରଲି-ଯାଉଥିବା ଟ୍ରକ୍ ଆଡ଼େ ଗୁହିଁ ରହିଲା ଅଭିଜିତ୍ । ନା—ଆଉ ଅପେକ୍ଷା କାହା ପାଇଁ ? ସହକର୍ମୀଙ୍କୁ ପରେ କଥା ନକହି ଘରଆଡ଼େ ମୁହାଁଇଲା ସେ ।

ସେପଟୁ ଟ୍ରିଂ ଟ୍ରିଂ କରି ସାଇକେଲ୍‌ଟିଏ ଆସୁଛି । ତା'ର ପାଖରେ ରହିଗଲା । ସାଇକେଲ୍‌ରୁ ଓହ୍ଲେଇପଡ଼ି ତାଙ୍କୁ ସାଲ୍ୟୁଟ୍ କଲା ଅବସର ନେବା ପାଇଁ ଆଉ କେତେ ମାସ ବାକିଥିବା ବୁଢ଼ା ହାବିଲଦାର । ହାତରେ ଲଠିଟିଏ । ଅଭିଜିତ୍ ସାଲ୍ୟୁଟ୍‌ର ପ୍ରତ୍ୟୁତ୍ତର ନଦେଇ ଅନ୍ଧକାର ଭିତରକୁ ଆଗେଇଗଲା ।

ତା'ପର ଥରର ଡ୍ୟୁଟି । ସିକ୍ ଲିଭ୍ ନେଇ ରହିଯିବ ବୋଲି ଭାବିଥିଲା ସେ । ଏଇ କେତେଦିନ ଧରି ମୁଣ୍ଡ ଭିତରେ ଗୋଟାଏ ଅଦ୍ଭୁତ ଯନ୍ତ୍ରଣା ହେଉଛି । କିଏ ଯେମିତି ଛୁଞ୍ଚ ଧରି ମସ୍ତିଷ୍କ ଭିତରର ବିଭିନ୍ନ ସେଲ୍‌କୁ ଫୋଡ଼ିଦେଉଛି । ଗୁକିରି ଛାଡ଼ିଛାଡ଼ିଦେଇ ପଳେଇ-ଯିବାକୁ ଇଚ୍ଛା ହେଉଛି ବାରମ୍ବାର । କିନ୍ତୁ ତା' କ'ଣ ହୁଏ ? ଓଃ—ଆଜି ଅନ୍ତତଃ ନ

ଆସିଥିଲେ ହୋଇଥାଆନ୍ତା । ନିଜ ଉପରେ ତା'ର ଅବିଶ୍ୱାସ—ଦୁର୍ବଳ ଶରୀର ନେଇ ଯଦି ଅପମାନ ସହି ନ ହୁଏ, ତେବେ···?

ଟ୍ରକ୍ ଆସିଲା । ରହିଗଲା । ଅଶ୍ଳୀଳ ହସ ହସି ଦଳଟାଯାକ ଓହ୍ଲେଇପଡ଼ିଲେ । ଶରୀରର ସମ୍ମୁଖୀନ ହେବା ପାଇଁ ଅଭିଜିତ୍ ଗସ୍ତୁ ପ୍ରସ୍ତୁତ ହୋଇ ରହିଲା ।

"ମାନ୍‌ଗଏ ସାବ୍—ଆପଣଙ୍କ ଚମଡ଼ା ସତରେ ଗଣ୍ଡା ଚମଡ଼ାଠୁଁ ମୋଟା । ଏଣୁ ଫାଏଦା ନାହିଁ । ତେଣୁ ବି ସାହାଯ୍ୟ ନାହିଁ । ତଥାପି···"

"ସାଦ୍ ଜରୁର୍ ଆପଣ ଗାନ୍ଧୀଙ୍କ ଶିଷ୍ୟ ଥିଲେ ।"

"ଆରେ, ସାବ୍‌କା ଉମ୍ର ହି କ୍ୟା ହୈ ! ହୁଏତ ଖୋଦ୍ ଗାନ୍ଧୀବାବା ଥିଲେ ପୂର୍ବ ଜନ୍ମରେ···ହି···ହି ।"

"କାହିଁକି ପ୍ରତଥର ଡ୍ୟୁଟି ପାଇଁ ଆସୁଛନ୍ତି ? ନ ଆସିଲେ ବି କେହି ଆପଣଙ୍କ ନାଁରେ ରିପୋର୍ଟ କରିବେ ନାହିଁ । ଘରେ ଆରାମରେ ଶୋଇ ଜବାନ୍ ଶରୀରରୁ ଉଷୁମ ଟାଣନ୍ତୁ···"

"ଚୁପ୍ ବେ ଶାଲା—ମାଲୁମ୍ ନହିଁ କ୍ୟା ସାବ୍‌କା ଶାଦୀ ଅଭିତକ୍ ନହିଁ ହୁଆ ।"

"ତୋ କ୍ୟା ହୁଆ ? ବିବି ନାହିଁ ବୋଲି କ'ଣ ସଂସାରରେ କେହି ଝିଅ ନାହାନ୍ତି ? ହାଁ ସାବ୍ , ହୁକୁମ କଲେ ଆମେ ରୋଜ୍ ରାତରେ ନୂଆ ନୂଆ ବିବି ଯୋଗେଇଦେବୁ ।"

ଅଭିଜିତ୍‌ର ଆଖି ସାମ୍ନାରେ ଲାଲ୍ ପର୍ଦ୍ଦାର ଏକ ଆସ୍ତରଣ ଝୁଲିଗଲା । ଅସୁସ୍ଥ ଶରୀର, ଏତେଦିନର ଅପମାନ, କିଛି କରି ନପାରିବାର କ୍ଷୋଭ, ସବୁ ମିଶି ତାକୁ କରିଦେଲା ଭିନ୍ନ ଗୋଟିଏ ମଣିଷ । ସେଠି ସେ ସଭ୍ୟ, ଶିକ୍ଷିତ ଯୁବକ ନୁହଁ—ସେ ରକ୍ତମାଂସର ମଣିଷଟିଏ । ଗୋଟାଏ ଝଙ୍କରେ ଜଣକର ଅଣ୍ଟାରୁ ଛୁରୀ କାଢ଼ିଆଣି ଅନ୍ଧଙ୍କ ଭଳି ବୁଲେଇବାରେ ଲାଗିଲା ସେ । ଟ୍ରକ୍ ଷ୍ଟାର୍ଟ ଦେଇ ଗୁଳିଗଲାବେଳେ ତା' ମୁଣ୍ଡରେ ସବାର ହୋଇଥିବା ଭୂତ ଓହ୍ଲେଇଯାଇଥିଲା । ରମେଶ୍ୱର ନାମକ ବ୍ୟକ୍ତିଟି ଡାହାଣ ହାତରେ ବାଁ କାନ୍ଧକୁ ଚିପି ରଖିଛି କାହିଁକି ? ତା' ଆଙ୍ଗୁଠି ସନ୍ଧି ଦେଇ ଯେଉଁ ତରଳ ପଦାର୍ଥ ବୋହିଯାଉଛି ସେ କ'ଣ ରକ୍ତ ? ଅଭିଜିତ୍ ଖୁନ ?

ସେ କିଛି ବୁଝିବାର ଅବସର ପାଇଲା ନାହିଁ ନା କିଛି ବୁଝେଇବାର । ସକାଳୁ ଘରୁ କେମିତି ବନ୍ଧାହୋଇ ଥାନାକୁ ଗଲା, କେମିତି ଏକତରଫା କେସ୍ ହେଲା, କେମିତି ପୁଣି ଦୁଇ ମାସ ଜେଲ୍ ଦଣ୍ଡ ଓ ପନ୍ଦରଶହ ଟଙ୍କା ଜୋରିମାନା ହେଲା—କିଛି ପରିଷ୍କାରଭାବରେ ମନେନାହିଁ ତା'ର । ସିନେମା ପର୍ଦ୍ଦାରେ ଦେଖିବା ଭଳି ଗୋଟିକ ପରେ ଗୋଟିଏ ସିନ୍ ଅତିକ୍ରମ କରିଗଲା । ସେ ଯେ ଏହାର ପ୍ରଧାନ ନାୟକ, ତା' ମନେ କରିପାରିଲା ନାହିଁ ଅଭିଜିତ୍ ।

ଜେଲ୍‌ରୁ ବାହାରି ଘରେ ପହଞ୍ଚିବା ପରେ କବାଟ ତଳଦେଇ ଗୁଞ୍ଜା ହୋଇଥିବା ଚିଠିଟିଏ ତାକୁ ମିଳିଲା । ସରକାରୀ ଚିଠି । ଦୁଃଖର ସହିତ ସେମାନେ ଜଣାଇଥିଲେ ଯେ ଅସାମାଜିକ କାର୍ଯ୍ୟରେ ବାରମ୍ବାର ଲିପ୍ତ ରହିବାରୁ ଅଭିଜିତ୍‌କୁ ସସ୍ପେଣ୍ଡ ଚାକିରିରୁ ବରଖାସ୍ତ କରାଯାଉଛି ।

ଏହି ମର୍ମରେ ଚିଠିଟି । ସେଇଦିନ ପଢ଼ଣାଘର ଲୋକମାନେ ବହୁତ ସମସ୍ତ ଧଣ ହୃଦର କାହାଣୀ ଶୁଣିପାରିଥିଲେ । ପରେ ସବୁ ନିଃଶବ୍ଦ ।

ଭଡ଼ା ନପାଇବାରୁ ଘର ମାଲିକ ଅଭିଜିତ୍‌ଙ୍କୁ ଘରୁ ବାହାର କରିଦେଲା । କେତେ ଦିନ ଚେକ୍ ପଏଣ୍ଟ୍ ପାଖ ଫୁଟ୍‌ପାଥ୍‌ରେ ଯେଉଁ ପାଗଳକୁ ଗଡ଼ୁଥିବାର ଦେଖାଯାଉଥିଲା, ସେ ହିଁ ଅଭିଜିତ୍ ସେନ୍ । ଧୂଳିରେ ମାଟିରେ କଦର୍ଯ୍ୟ ହୋଇଯାଇଥିଲା ତା'ର କୁଞ୍ଚୁକୁଞ୍ଚିଆ ବାଳ । ରାସ୍ତାରେ ଗଡ଼ି ଗଡ଼ି ଛିଣ୍ଡିଯାଇଥିଲା ତା'ର ପଞ୍ଜାବି ଓ ପାଇଜାମା । ଖବର ପାଇ ଘରୁ ଭାଇ ଆସିଥିଲେ—ଅଭିଜିତ୍ ଗଲା ନାହିଁ । ଜୋର୍ କରି ମଧ୍ୟ ସେ ପାରିଲେ ନାହିଁ । ବାଧ୍ୟହୋଇ ଭାଇ ଫେରିଗଲେ ।

× × × ×

କାର୍‌ର ବନେଟ୍ ବନ୍ଦ କରି ଶ୍ୟାମଲ କହିଲା, "ଏଇ ହେଲା ଅଭିଜିତ୍ ସେନ୍‌ର କାହାଣୀ ।"

ମୁଁ ସ୍ତବ୍ଧ । ନିର୍ବାକ୍ ଭାବରେ ଶୁଣିଯାଉଥିଲି କିଛି ସମୟ ଆଗରୁ ଚେକ୍ ପଏଣ୍ଟ୍ ପାଖରେ ହାତ ହଲାଇ ଗାଡ଼ି ଅଟକାଉଥିବା ପାଗଳର କଥା । ମୁହଁରେ ପଦେ କଥା ନାହିଁ, ଅଥଚ ଆଖିର ଭାଷାଣୀ କି ଜ୍ୱଳନ୍ତ ! ମସ୍ତିଷ୍କ ବିକୃତିର ଚଳେମାତ୍ର ଲକ୍ଷଣ ନାହିଁ । ପରିଷ୍କାର ପୋଷାକ, ଭଦ୍ର, ମାର୍ଜିତ ଚେହେରା । କିଏ ବୁଝେ ପାଗଳଟିର ଖବର ?

ଓଠରେ ସିଗାରେଟ୍ ଚାପିଧରି ଲାଇଟର୍ ଛୁଆଁଇଲା ଶ୍ୟାମଲ । "ସେଲ୍‌ଟ୍ୟାକ୍‌ସ ଇନ୍‌ସପେକ୍ଟର ଅଭିଜିତ୍ ସେନ୍‌ଙ୍କ ସମ୍ପର୍କରେ ଶେଷ ଖବର ମିଳିଥିଲା ଶିଲିଗୁଡ଼ିରୁ । ଦିନେ ପାଞ୍ଚ-ଛଅଜଣ ଲୋକ ଫୁଟ୍‌ପାଥ୍ ଉପରୁ ତାକୁ ଟେକିନେଇଯାଇଥିଲେ । ତାକୁ ଗାଧୋଇ ଦେଇ ଭଲ ଲୁଗା ପିନ୍ଧାଇ ଦେଇଥିଲେ । ମୁଣ୍ଡରେ ଲଗାଇଥିଲେ ତେଲ । ପାଦକୁ ଚଟି । ତା'ପରଠାରୁ ପ୍ରତିଦିନ ଅଭିଜିତ୍‌କୁ ରାତି ଦଶଟା ପରେ ଚେକ୍ ପଏଣ୍ଟ୍ ପାଖରେ ବସିବାର ଦେଖାଯାଉଥିଲା । ଆସୁଥିବା ଗାଡ଼ିମାନଙ୍କ ଆଡ଼କୁ ହାତ ହଲାଏ ଅଟକାଇବା ପାଇଁ । ଗାଡ଼ିବାଲାମାନେ ହୁଏତ ଅଟକାନ୍ତି—ନ ହେଲେ ଚାଲିଯାଆନ୍ତି ନିଜ ନିଜର ଗନ୍ତବ୍ୟ ପଥରେ । ଅଭିଜିତ୍ କାହାକୁ କିଛି କହେନାହିଁ । ସବୁଦିନ ପାଇଁ ଚୁପ୍ ହୋଇଯାଇଥିବା ମଣିଷଟିଏ । ଗୋଟାଏ ପଟେ ସେ, ଅନ୍ୟପଟେ ହିମାଳୟ ।"

ମୁଁ ପଚାରିଲି, "ତାକୁ କେଉଁମାନେ ଉଠେଇ ନେଇଗଲେ ? ସେଲ୍‌ଟ୍ୟାକ୍‌ସ ଅଫିସ୍‌ର ଅନ୍ୟ କର୍ମଚାରୀମାନେ ବୋଧହୁଏ !"

ମୋ ଆଡ଼େ ଚାହିଁ ହସିଲା ଶ୍ୟାମଲ । "ଯେଉଁମାନେ ତାକୁ ରାସ୍ତାରୁ ନେଇଯାଇଥିଲେ ଏବଂ ଦିନ ପରେ ଦିନ ତା'ର ଖବର ବୁଝିବାରେ ଲାଗିଥିଲେ, ସେଇମାନେ ହେଲେ ଶିଲିଗୁଡ଼ିର ପ୍ରଧାନ କାଠ ବଜାରର ବ୍ୟବସାୟୀମାନେ—ଯେଉଁମାନଙ୍କ ନେତା ହେଉ ପଗଡ଼ିବନ୍ଧା ଲୋକଜଣକ ।"

□□□

# ସଂପର୍କ

କପ୍‌ରେ ଓଠ ଲଗାଇ ଶବ୍ଦ କରି ଢୋକେ ଚାହା ପିଇଲେ ସୁମିତ୍ରା । ଗରମ ଚାହାର ସ୍ୱାଦ ଓ ଗନ୍ଧ ତାଙ୍କର ଦେହ-ମନକୁ ତାଜା କରିଦେଲା । "ବାଃ..." ଜିଭରେ ଟାକରା ଫୁଟାଇ ସେ ବୋହୂକୁ ପଚାରିଲେ, "ଏଇଟା କି ଚାହା କହେ ଅଳି ?"

ମୁଣ୍ଡରେ ଓଢ଼ଣା ଠିକ୍ କରୁ କରୁ ଅଳକା ଉତ୍ତର ଦେଲା, "ଜାଣିନି ବୋଉ । ଏଙ୍କର ଜଣେ ସାଙ୍ଗ ଦାର୍ଜିଲିଂର ଗୋଟାଏ ଚାହା କମ୍ପାନୀରେ କାମକରନ୍ତି । ସେ ପଠେଇଚନ୍ତି ।"

"ଅସଲ ଦାର୍ଜିଲିଂ ଚାହା ! କହୁନୁ ସେ କଥା !" ପାକୁଆ ପାଟିରେ ସବଜାନ୍ତା ହସଟିଏ ସୁମିତ୍ରା ଫୁଟାଇଲେ, "ପ୍ୟାକେଟରେ ବିକି ହେଉଥିବା ଦାର୍ଜିଲିଂ ଚାହା ସ୍ୱା ପାସଙ୍ଗରେ ପଡ଼ିବ ? ସ୍ପେସିଆଲ୍ ଚାହା ପତ୍ର ସବୁ ସବୁ ସାଇତାହୋଇ ରହେ ଅଫିସରମାନଙ୍କ ପାଇଁ ।"

ଚାହା କପରୁ ମୁହଁ ନଉଠାଇ ବ୍ରଜବିହାରୀ ଗମ୍ଭୀର ସ୍ୱରରେ କହିଲେ, "କେତେ ବର୍ଷ ଦାର୍ଜିଲିଂର ଚାହା କମ୍ପାନୀରେ କାମ କରିଛ ସୁମିତ୍ରା ?"

ଏଇରେ, ଆରମ୍ଭ ହୋଇଗଲା ମହାଭାରତ ଯୁଦ୍ଧ ! ଥରେ ଶାଶୁଙ୍କର ଆଉଥରେ ଶ୍ୱଶୁରଙ୍କ ମୁହଁକୁ ଚାହିଁଲା ଅଳକା । ଦୁହେଁ ବୋହୂର ଅସ୍ତିତ୍ୱ କଥା ଭୁଲିଯାଇ ସାରିଲେଣି ସେତେବେଳକୁ ।

ଯୁଦ୍ଧଂ ଦେହି...ଯୁଦ୍ଧଂ ଦେହି...

"ତୁମକୁ ଥଟ୍ଟା ମନେହୁଛି, ନୁହେଁ ! ମୋ ଅଜା ଗୋଟିଏ ଟି' ଇଷ୍ଟେଟର ସୁପରଭାଇଜର ଥିଲେ—ଚାହା ଖବର ମୋଠୁଁ ଭଲ ତୁମେ ଜାଣିବ ! ସେତେବେଳେ ଘରେ ଚାହା-ପାନ କରାହେବା କଥା କେହି ଶୁଣିନଥିଲେ । ଆମ ଘରକୁ ସେ ଏତେ ଚାହାପତ୍ର ପଠାଉଥିଲେ ଯେ ଆମେ ଖାଉଥିଲୁ ଯେତିକି ପାଖ ପଡ଼ିଶାରେ ବାଣ୍ଟୁଥିଲୁ ସେତିକି । ଚାହା ବଗିଚାର ନାଡ଼ିନକ୍ଷତ୍ର ଚିହ୍ନିଛି ମୁଁ !"

ମୁହଁ ଟେକି ବ୍ରଜବିହାରୀ ଚନ୍ଦାମୁଣ୍ଡକୁ ଟିକିଏ କୁଣ୍ଡେଇଲେ । ଆଖି ଦୁଇଟି ଅଧା ବନ୍ଦକରି ସିଗାରେଟ୍ ପିଆ କଳା କଳା ଓଠକୁ ହସିବା ଭଙ୍ଗୀରେ ସାମାନ୍ୟ ପ୍ରସାରିତ କଲେ ସେ । ରହି ରହି କହିଲେ, "ଆଉ ସୁମିତ୍ରା ଆଉ—ତୁମ ଅଜାଙ୍କ କଳଙ୍କିଲଗା କାହାଣୀର ଅବତାରଣା କରନାହିଁ । ପୁରୁଣା ଯୁଗର ଚାହା ସହିତ କଂପ୍ୟୁଟର ଯୁଗର ଚାହାକୁ ତୁଳନା

କରୁଛ ! କଥା କ'ଣ ଜାଣ ସୁମିତା, ତୁମେ ସମୟ ସହିତ ତାଳଦେଇ ଚାଲିପାରିଲ ନାହିଁ—ପଛରେ ପଡ଼ିଗଲ ।''

ଶାଶୁଙ୍କ ଗୋରା ମୁହଁଟା ରାଗ ଓ ଅପମାନରେ ଲାଲ ପଡ଼ିଗଲା । କୁଞ୍ଚ ପଡ଼ିଯାଇଥିବା ମୁହଁର ଚମଡ଼ାକୁ ଆହୁରି ଟିକିଏ କୁଞ୍ଚାଇ ଦେଇ ସେ ସ୍ୱାମୀଙ୍କ ତାରଡ଼େଇ ଚାହିଁଲେ ।

ନା, ଆଉ ନୁହେଁ—ଚୁପ୍‌ଚାପ୍ ଅଲକା ଖାଲି କପ୍‌ଗୁଡ଼ିକ ଧରି ଗୋଟେଇ ଘରକୁ ପଳେଇ ଆସିଲା । ଏହା ପରର ଦୃଶ୍ୟ ସବୁ ସେ ଆଖି କାନ ବନ୍ଦକରି ବର୍ଣ୍ଣନା କରିଦେଇ ପାରିବ । ହାତ ଗୋଡ଼ ହଲେଇ ଶାଶୁ ପାଟିକରିବେ । ଆଉ ମାର୍ଜିତ୍ ହସ ହସି ମଝିରେ ମଝିରେ ଗୋଟିଏ ବାକ୍ୟବାଣ ଛାଡ଼ିବେ ଶଶୁର । ଗଣ୍ଡଗୋଳ ତୁମୁଳ ଆକାର ଧାରଣ କରିବ । ଯେଉଁ କାରଣରୁ ଏତକ ତର୍କବିତର୍କ ସେ କଥା ଲୁଚିଯିବ କାହିଁ କେଉଁଠି । ଅତୀତର କେତେକ ସତ ଓ କେତେକ ମନଗଢ଼ା ଘଟଣା ନେଇ ଟଣାଟଣି କରିବାରେ ଲାଗିଯିବେ ଦୁହେଁ । ଦୁହିଁଙ୍କ ଗର୍ଜନ-ତର୍ଜନରେ ପଡ଼ୋଶୀ ଘରମାନଙ୍କର ଝର୍କାରୁ ପର୍ଦ୍ଦା ଘୁଞ୍ଚିଯିବ । ପର୍ଦ୍ଦା ପଛରୁ ଉଙ୍କିମାରିବ କୌତୂହଳୀ ମୁହଁ କେତୋଟି । ଠିକ୍ ପରେ ପରେ ହିଁ ଘରର ସାମ୍ନାପଟେ ହୋଇଥିବା କ୍ଲବରୁ ସ୍ୱାମୀ ସବ୍ୟସାଚୀ ବାହାରି ଆସିବେ । କାହାକୁ କିଛି ନକହି ଚୁପ୍‌କରି କବାଟ ପାଖରେ ଖାଲି ଠିଆହୋଇ ରହିବେ କେଇ ସେକେଣ୍ଡ୍ ।

ବାସ୍—ଅଧା ଥିଲେ ମଧ୍ୟ ଝଗଡ଼ା ବନ୍ଦ ହୋଇଯିବ । ପାନ ଖାଇବାର ବାହାନା ଦେଖାଇ ସର୍ ସର୍ ହୋଇ ନିଜ କୋଠରି ଭିତରକୁ ଶାଶୁ ପଶିଯିବେ । କାଖ ତଳେ ଓଡ଼ିଆ ଓ ଇଂରାଜୀ ଖବରକାଗଜ ଦୁଇଟିକୁ ଜାକି ଅଗଣା ଆଡ଼କୁ ମୁହାଁଇବେ ଶଶୁର ।

ବାହାଘରର କେଇମାସ ପରଠାରୁ ଏହି କ୍ରମରେ ଘଟଣାଗୁଡ଼ିକ ଲକ୍ଷ୍ୟ କରିଆସୁଛି ଅଲକା—ସବୁଦିନେ ନଅଟା ସାଢ଼େ-ନଅଟା ବେଳର ଚାହାପିଆ ସମୟରେ । ସ୍ୱାମୀଙ୍କ ଅନୁପସ୍ଥିତିରେ । କାହିଁକି ଯେ ଏମାନେ ଏକାଠି ଚାହା ପିଅନ୍ତି !

ସବ୍ୟସାଚୀ ସେଇ ପ୍ରଥମ ଦିନ ହିଁ ତାକୁ ବୁଝେଇ ଦେଇଥିଲେ ଏ ଘରର ଚଳଣି । ଏଠି ଚାହା ପିଆ ଏକ ଅନୁଷ୍ଠାନ । ସିଏ ଯେତେବେଳେ ଖାଆନ୍ତୁ ନା କାହିଁକି, ସମସ୍ତେ ଚାହା ପିଇବେ ଏକାଠି । ହଁ, ତାଙ୍କ କଥା ଭିନ୍ନ—ସେ ତ ରୋଗୀ ନେଇ ସବୁବେଳେ ବ୍ୟସ୍ତ । କିନ୍ତୁ ଏହି ସାଧାରଣ ନିୟମଟି ଅଲକା ଯେମିତି ରଖେ ।

ବାହାଘର କେଇଦିନ ଏ ନିୟମ ବାଦ୍ ଦେବାକୁ ପଡ଼ିଥିଲା, ପାଞ୍ଚ ବଖରା ଘରେ ବହୁତ ଲୋକ । ସେଠି ଏକାଠି ବସି, ଏକାଠି ଚାହାପିଆ ଚଳେ ? ଅଗଣାରେ କଣିଆ ହୋଇ ତିଆରି ହୋଇଥିଲା ଦୁଇଟି କାଠ ଚୁଲି । ଗୋଟିରେ ଡାଲି, ଭାତ, ମାଛ, ଭଜାଭଜି ଇତ୍ୟାଦି ଏବଂ ଷ୍ଟୋଭଟିରେ ଚାହା, ଜଳଖିଆ । ଯେତେବେଳେ ରାନ୍ଧିବାପାଇଁ ଯୋଗାଡ଼ ହୋଇଥିଲା ନନାଟିଏ । ସାଙ୍ଗରେ ସାହାଯ୍ୟ କରିବାକୁ ବା ବଡ଼ୁଅ ।

ଅଷ୍ଟମଙ୍ଗଳା ପରଦିନ ସକାଳେ ବାହାଘରର ଶେଷ କୁଣିଆ ଦଳକ ଚାଲିଗଲେ । ସବ୍ୟସାଚୀଙ୍କ ସାନ ମାଉସୀ ତିନି ପିଲାଙ୍କୁ ଧରି ଆସିଥିଲେ ବାଙ୍ଗାଲୋରରୁ । ଏତେଦିନ

ପରେ ଓଢ଼ଣା, ତା' ପୁଣି ବାହାଘର । ରହୁ ରହୁ ବେଶୀଦିନ ରହିଗଲେ । ସେମାନେ ଚାଲିଯିବା ପରେ ଘର ଖାଲି । ଘରେ ରହିଲେ କେବଳ ସେମାନେ ପାଞ୍ଚଜଣ—ଶାଶୂ, ଶ୍ୱଶୁର, ସବ୍ୟସାଚୀ, ଅଳକା ଓ ଦିଅର ଦେବବ୍ରତ ।

ସୁମିତ୍ରା ବୋହୂର ଓଢ଼ଣା କମେଇଦେଇ କହିଲେ, "ତୁ ତ ଏ ଘରର ଝିଅ—ଲାଜ ପୁଣି କାହାକୁ ?"

ଅଳକାକୁ ଭାରି ଭଲଲାଗୁଥିଲା ଏଇ ନିଜର ନିଜର ଭାବ, ଅନ୍ତରଙ୍ଗତା । ଇସ୍—ଏତେ ସୁନ୍ଦର ବୁଝାମଣାର ପରିବାର ସଂସାରରେ ଥାଏ ?? ଏଇ ବୋଧହୁଏ ମଧୁସୂଦନଙ୍କର, "ବୈକୁଣ୍ଠ ସମାନ ଅଟଇ ସେହି ଘର···" । ନିଜ ସୁଖ ଉପରେ ନିଜେ ନଜର ଦିଏ ସେ ।

ଝଲକରେ ବେଳେବେଳେ ତା'ର ମନେପଡ଼େ ବାପଘର କଥା । ବିଶେଷକରି ଚାହା ପିଆ ପର୍ବ ବିଷୟରେ । ପର୍ବ ଇତ ! ପରିବାରର ସଦସ୍ୟ ଆଠଜଣ ଏବଂ ଆଠଜଣଙ୍କର ଆଠ ରକମର ବସ୍ୱଦ । ତା' ସାଙ୍ଗକୁ ଯୋଡ଼ା ଚାହାର ଝଣା । ଗ୍ୟାସ ଚୂଲିର ଗୋଟାଏ ପଟ୍ ଚାହା କେଟ୍‌ଲି ଓହ୍ଲାହୋଇ ଚାହା ପରଷା ହେବାର ପ୍ରାୟ ଅଧଘଣ୍ଟାଏ—ପଇଁଚାଳିଶ ମିନିଟ୍ ପରେ କେଟ୍‌ଲି ପୁଣି ଉଠେ ଚୂଲି ଉପରକୁ ।

ବିଚିତ୍ର ଭାଉଜ ! ବୋହୂ ହୋଇ ଆସିବା ପରେ ଅଳକା ଅନୁମାନ କରିପାରେ ଭାଉଜଙ୍କର ଦୟନୀୟ ଅବସ୍ଥା । ସକାଳବେଳା ବୋଉ ଚାହା ପିଇବ ଛୁଟରେ ଠାକୁରଙ୍କ ପାଇଁ ଫୁଲ ତୁଳୁ ତୁଳୁ । ବାପା ପିଇବେ ଲନ୍‌ରେ । ବଡ଼ ଭାଇନାଙ୍କର ବେଡ୍‌-ଟି ଦରକାର । ଆଉ କମ୍ପିଟିଟିଭ୍ ପାଇଁ ପଢ଼ାପଢ଼ି କରୁଥିବା ମଝିଆଁ ଭାଇନା ଚାହା ପିଇବେ ପଢ଼ା ଟେବୁଲରେ । ନାନୀ ମର୍ଣ୍ଣିଂ ସ୍କୁଲପାଇଁ ପ୍ରସ୍ତୁତ ହେଉ ହେଉ ଡ୍ରେସିଂ ଟେବୁଲ ପାଖରେ ସାବଧାନରେ ଚାହା ପିଇବ—ଓଠର ଲିପଷ୍ଟିକ ଯେମିତି ପୋଛି ହୋଇ ନଯାଏ । ବାକି ଅଳକା ଓ ସବା ସାନଭାଇ ଅଜୟ—ସେମାନେ ଅଲସେଇ ଖାଇବା ଟେବୁଲ ପାଖରେ ବସିରହିବେ ଚାହା ପ୍ରତୀକ୍ଷାରେ ।

ପ୍ରାଣାନ୍ତକ ହୋଇ ସମସ୍ତଙ୍କୁ ଚାହା ଦେଇ ସାରିବା ପରେ ଆଉ କି ଭାଉଜଙ୍କର ଧୈର୍ଯ୍ୟ ଥାଏ ? ସେଇଠି ରୋଷେଇ ଘରେ ଠିଆହୋଇ ଉଷୁମ ଚାହା ଢକ ଢକ କରି ପିଇଯାଆନ୍ତି ସେ । ଏମିତି ଚାହା ପିଆରେ ନା ଥାଏ ଆଗ୍ରହ ନା କୌଣସି ଆନନ୍ଦ । ଖାଲି କାମ ଛୁଣ୍ଡେଇବା କଥା ।

ଅଥଚ ଶାଶୂଘରେ ନିୟମ କାନୁନ କି ସୁନ୍ଦର ! ଟ୍ରେରେ ସଜେଇ ଟି-ସେଟ୍ ନେଇ ଆସେ ଅଳକା । ଖାଇବା ଟେବୁଲରେ ହିଁ ଚାହା ତିଆରି ହୁଏ । ଚାହା କପ୍ ଧରି ତାକୁ ଏଠି ସେଠି ଦୌଡ଼ିବାକୁ ହୁଏ ନାହିଁ । ସମସ୍ତେ ନିର୍ଦ୍ଦିଷ୍ଟ ସମୟରେ ଟେବୁଲ ପାଖକୁ ଆସିଥାଆନ୍ତି । ଡାଏବେଟିକ୍ ଶାଶୂଙ୍କର ବିନା ଚିନିର ଚାହା, ଶ୍ୱଶୁରଙ୍କର ବ୍ଲାକ୍ ଟି, ଦେବୁଙ୍କର ବେଶି କ୍ଷୀର ଓ ବେଶି ଚିନି ଦିଆ 'ସ୍ପେସାଲ ଚାହା' ତିଆରି କରିବାକୁ କଷ୍ଟ ହୁଏ ନାହିଁ । ଚାହା ପିଉ ପିଉ

ରାଜନୀତି ଆଲୋଚନା ହୁଏ । ମାଛ ଦର, ପରିବା ଦର କଥା ପଡ଼େ । ଶ୍ୱଶୁର ତାଙ୍କର ଚାକିରି ସମୟର ମଜା ମଜା ଘଟଣା କହନ୍ତି । ଶାଶୁ ଗପନ୍ତି ଦୁଇ ପୁଅଙ୍କର ପିଲାଦିନର କଥା । ଦେବୁ ନୂଆ ଭାଉଜଙ୍କୁ ଚିଡ଼ାନ୍ତି । ଥଟ୍ଟା କରନ୍ତି ଅଳକାର ବାହାଘରର ଲୋକମାନଙ୍କୁ ନେଇ ।

ନୂଆ ଘରେ ସମସ୍ତଙ୍କୁ ଆପଣାର କରିବାପାଇଁ ଚେଷ୍ଟା କରୁ କରୁ ଅଳକା ଭୁଲିଯାଏ ଯେ ସେ ନୂଆବୋହୂ । ସେ ହସ କଥାରେ ଯୋଗଦେଇ ଜୋର୍‌ରେ ହସେ । ପସନ୍ଦ ନ ହେଲେ କଥାର ପ୍ରତିବାଦ କରେ । କିଏ କ'ଣ ଭାବିବ ଚିନ୍ତା ନକରି ସ୍ପଷ୍ଟ ଭାବରେ ନିଜର ମତାମତ ଦିଏ । ଦେବୁ ଚିଡ଼ାଇଲେ ତାଙ୍କୁ ଧମକାଏ । ସୁନ୍ଦର ଭାବରେ କଟିଯାଏ ଦିନଗୁଡ଼ିକ— ବାହାଘରର ସେଇ ପ୍ରଥମ ଦିନଗୁଡ଼ିକ ।

ଅଳକା ଉଲ୍ଲସିତ ହୁଏ । ଛାତି ତା'ର ଭରିଉଠେ ଖୁସିରେ, ଆତ୍ମତୃପ୍ତିରେ । କେତେ ଜନ୍ମ ତପସ୍ୟା କରିଥିଲା କେଜାଣି ସବ୍ୟସାଚୀଙ୍କ ପରି ବର, ପୁଣି ଏଭଳି ଶାଶୁଘର ମିଳିଲା ! ଏ ଘରେ ଷ୍ଟାଇଲ୍ ଅଛି । କଲ୍‌ଚର୍ ଅଛି । ଅଛି ଆଭିଜାତ୍ୟ ।

ସମସ୍ତ ବିରକ୍ତି ପିଆଜ ଉପରେ ଢାଳିଲା ଅଳକା । ପଲକରେ ଚୂନ୍ ଚୂନ୍ କରି ପିଆଜ କାଟିବାବେଳେ ଅଜାଣତରେ ତଳ ଓଠ କଣକୁ ଦୁଇ ପାଟି ଦାନ୍ତ ମଝିରେ କାମୁଡ଼ିଦେଲା ।

ହୁଁ ଆଭିଜାତ୍ୟ ! ଖାଲି ଦୁଇଦିନିଆ ଲୋକଦେଖାଣିଆ ଫମ୍ପା ଆଭିଜାତ୍ୟ । ତା' ନୁହେଁ ତ ଆଉ କ'ଣ ? ନୂଆ ବୋହୂ ସାମ୍ନାରେ ପ୍ରକୃତ ସ୍ୱରୂପ ଖୋଲି ଦେଖାଇଦେବାକୁ ଲାଜଲାଗୁଥିଲା ବୋଧହୁଏ । ତା' ଛଡ଼ା ସେତେବେଳେ ଘରେ ରହୁଥିଲେ ଦେବୁ । ବୟସରେ ସମସ୍ତଙ୍କଠାରୁ ସାନ ହେଲେ କ'ଣ ହେବ ଭାରି ବୁଝିବା ପିଲା ସିଏ । ତାଙ୍କ ସାମ୍ନାରେ ତ ଏ ସବୁ ତାଣ୍ଡବ ଲୀଳା ଚାଲନ୍ତା ନାହିଁ । ସାମାନ୍ୟ ବେତାଲଣି ଦେଖିଲେ ସେ ସାଙ୍ଗେ ସାଙ୍ଗେ ମୁହଁ ଉପରେ ଠୋ ଠୋ କରି କଥା କହିଦେବେ—ସେ ବାପ ମା' ହୁଅନ୍ତୁ କି ଆଉ କିଏ ।

ଅଳକାର ତ ବେଳେ ବେଳେ ମନେହୁଏ ଶାଶୁ-ଶ୍ୱଶୁରଙ୍କ ସମସ୍ୟାର ସବୁଦିନିଆ ସମାଧାନ ପାଇଁ ସ୍ଥିତପ୍ରଜ୍ଞ ସବ୍ୟସାଚୀଙ୍କ ଅପେକ୍ଷା କ୍ଷଣକୋପୀ ଦେବବ୍ରତଙ୍କର ଅଧିକ ପ୍ରୟୋଜନ । ବୁଢ଼ାବୁଢ଼ୀ ଥରେ ଦେବୁଙ୍କ ଔଷଧ ଚାଖିଲେ ସବୁ ରୋଗ ଭୁଲିଯାଆନ୍ତେ । ଆଉ କାମୁଡ଼ା କାମୁଡ଼ି ହେବାକୁ ସାହସ କରନ୍ତେ ନାହିଁ । ସବ୍ୟସାଚୀଙ୍କର ଶାନ୍ତ ନୀରବ ପ୍ରତିବାଦର କି କୌଣସି ମୂଲ୍ୟ ଅଛି ? ଚବିଶ ଘଣ୍ଟା ପରେ ପୁଣି ତ ସେଇ ନାଟକ ଅଭିନୀତ ହୋଇଯାଏ । ତାଙ୍କ ଜାଗାରେ ଯଦି ଅଳକା ଥାଆନ୍ତା, ଦିଅନ୍ତା ଭଲ କରି ଝାଡ଼ି ।

ଉଃ—କି ଲାଜର କଥା ! ଏହି ଦୁଇ ଜଣଙ୍କ ପାଇଁ ପଡ଼ୋଶାଘରମାନଙ୍କୁ ବୁଲିଯିବା ବନ୍ଦ ହୋଇଗଲାଣି । କେବେ କେମିତି ସାମ୍ନାସାମ୍ନି ହୋଇଗଲେ ସେମାନଙ୍କର ଅଜସ୍ର କୌତୂହଳୀ ପ୍ରଶ୍ନ ତାକୁ ଦିଗହରା କରିଦିଏ । ବୃନ୍ଦୁପ ସାକ୍ଷୀଙ୍କ ସାମ୍ନାରେ ମିଛ କହିହୁଏ ନାହିଁ; ଏଣେ ସତ କହିବାକୁ ଜିଭ ଲେଉଟେ ନାହିଁ ।

ଅଲକାର ଦିନଗୁଡ଼ିକ ତ ସୁନ୍ଦର କଟୁଥିଲା; କିନ୍ତୁ ନଜର ଲାଗିଗଲା ପରି ! ବାଦ ସାଧିବା ଭଳି ଦେବୁଙ୍କର ଓ. ଏନ୍. ଜି. ସି. ରେ ଚାକିରି ହୋଇଗଲା । ପୋଷ୍ଟିଂ ଆସିଲା ଡିବ୍ରୁଗଡ଼ । କାହିଁ ଭୁବନେଶ୍ୱର ଆଉ କାହିଁ ଆସାମର ଡିବ୍ରୁଗଡ଼ । କିନ୍ତୁ ସମସ୍ତେ ଖୁସି ହୋଇଥିଲେ । ଦୂର ଜାଗା ହେଲେ କ'ଣ ହେବ, ଭଲ ଚାକିରି । ଖୁସି ହେବାର କଥା । ଅଲକା ବି ଖୁସି ହୋଇଥିଲା ।

ଦେବୁ ଚାଲିଯିବାର କେଇଟା ଦିନ ପରେ ହିଁ ଆରମ୍ଭ ହୋଇଥିଲା ସାମାନ୍ୟ ଖିଟ୍‌ଖିଟ୍ କିଛି ଗୋଟାଏ ଛୋଟ ଛୋଟ ଘଟଣାନେଇ । ଅଲକା ଗୁରୁତ୍ୱ ଦେଇନଥିଲା । କେଉଁ ସ୍ୱାମୀ ସ୍ତ୍ରୀ ଭିତରେ ବା ଖଟିମିଠି ନଲାଗେ ! କିନ୍ତୁ ସେଇ ଟିକିଏ ଟିକିଏ ମତଭେଦ କ୍ରମଶଃ ଏକ ପ୍ରାତ୍ୟହିକ ଘଟଣା ହୋଇଗଲା ଏବଂ ଅଲକାର ଶାନ୍ତ ଅନ୍ତରଙ୍ଗ ଗୃହସ୍ଥିଆର ଅନୁଷ୍ଠାନ ହୋଇଗଲା ଠିକ୍, ଅସହ୍ୟ । କାହିଁକି ଯେ ଦୁଇଟି ସୁନ୍ଦର ମଣିଷ ପରସ୍ପରକୁ ସହି ପାରନ୍ତି ନାହିଁ—ଅବାକ୍ ଲାଗେ ତାକୁ ।

ସବ୍ୟସାଚୀଙ୍କୁ କିଛି କହିଲେ ସେ କଥାକୁ ଫୁଟକି ମାରି ଉଡ଼େଇଦେଇ କହନ୍ତି, "ଛାଡ଼ ତ ସେମାନଙ୍କର ସ୍ୱଭାବ । ବୁଢ଼ାବୁଢ଼ୀଙ୍କ କଥାକୁ କିଏ ଏତେ ଧରେ ?"

ଅଲକା ବିବ୍ରତ ହୁଏ, "କି ଲାଜର କଥା କୁହ ତ ! କାଲି ରୁନୁ ଅପା ପଚାରୁଥିଲେ କ'ଣ ପାଇଁ ଘରେ ଏତେ ପାଟିଗୋଳ । ପଡ଼ୋଶୀ ଘର ଲୋକେ ଆମମାନଙ୍କୁ କ'ଣ ଭାବୁଥିବେ ସେ ?"

"ଲୋକଙ୍କ ଭାବିବାରେ ତୁମର କ'ଣ ଯାଏ ଆସେ ?" ହାଇମାରି ନିର୍ବିକାରଭାବରେ ସବ୍ୟସାଚୀ କହନ୍ତି, "ଘରେ ବୁଢ଼ାବୁଢ଼ୀ ଥିଲେ ଏମିତି ଟିକିଏ ହୁଏ । ଯେଉଁମାନେ ଏବେ ହସୁଛନ୍ତି ସେମାନେ ବି ବୟସ ହେଲେ ଏମିତିଆ କେତେ ଅଖାଡ଼ୁଆ କାମ କରିବେ । ହୁଏତ ଆମର ମଧ୍ୟ ହଜାରେ ଦେଖିବା ବାହାରିବ ।"

ସବୁ ବୁଝିଲେ ମଧ୍ୟ ଅଲକା ମନ କୋଣରେ ବହୁତ କଥାର ଭିଡ଼ ଜମେ । ସ୍ୱାମୀ ସ୍ନେହବୋଳା କଣ୍ଠରେ ବୁଝାନ୍ତି, "ତୁମେ ଏତେ ଚିନ୍ତା କର କାହିଁକି ଅଲି ? ଏ ସବୁ ଛୋଟ ଛୋଟ ଘଟଣାରେ ବିବ୍ରତ ହୋଇପଡ଼ିଲେ ଗୋଟାଏ ଘରର ଦାୟିତ୍ୱ ସମ୍ଭାଳିବ କେମିତି ? ଯଦି ତୁମେ ମନେକରୁଛ ଯେ ବାପା ବୋଉ ମାତ୍ରା ଅତିକ୍ରମ କରିଯାଉଛନ୍ତି, ପ୍ରତିବାଦ କର । ଚୁପ୍ କରେଇଦିଅ ସେମାନଙ୍କୁ ।"

"ମୁଁ ଚୁପ୍ କରେଇଦେବି ?" ଆଶ୍ଚର୍ଯ୍ୟରେ ଅଲକା କହେ, "ପାଗଳ ହେଲ ?"

"କାହିଁ, କ୍ଷତି କ'ଣ ! ସେମାନେ ତ ଶିଶୁ । ସେମାନେ ଯଦି ବୁଝିପାରୁ ନାହାନ୍ତି ଯେ ଯାହା କରୁଛନ୍ତି ସେଇଟା ଭୁଲ୍, ତାହେଲେ ସେ କଥା ସେମାନଙ୍କୁ ଜଣେଇ ଦେବାର ଅଧିକାର ତୁମର ଅଛି ।"

"ଯାଉନ—ମୋର କାମ ନାହିଁ । ଯାହା ଶାସନଫାସନ କରିବା କଥା ତୁମେ କର । ମତେ ସେ ସବୁରେ ପୂରାଅନା ।"

"ମୁଁ ଜାଣେ ତ । କ୍ଲିନିକ୍ ରୁମ୍ର କବାଟ ପାଖରେ ଠିଆହେବା ମୋର ଶାସନପଦ୍ଧତି—ଯେମିତି ଗାଳିମନ୍ଦ କରିବା ଦେଖୁଛ ।"

ଏହା ପରେ ବା ଅଳକା କ'ଣ କହନ୍ତା ? କିନ୍ତୁ ତା' ମନ କହେ ଦେବୁ, ଆସନ୍ତେକ ଏ ଘଟଣାର ଗୋଟିଏ ସ୍ଥାୟୀ ସମାଧାନ ହୁଅନ୍ତା ।

× × × ×

ଆଗରୁ କୌଣସି ଖବର ନଦେଇ, ଚିଠି ଟେଲିଗ୍ରାମ ନ ପଠାଇ ହଠାତ୍ ଦିନେ ଦେବବ୍ରତ ଆସି ପହଞ୍ଚିଗଲେ । କୋଡ଼ିଏ ଦିନର ଛୁଟି । ପ୍ରାୟ ବର୍ଷକ ପରେ ଘରପୁଅ ଘରକୁ ଫେରିଛି—ଗୋଟାଏ ଉତ୍ସବ ଲାଗିଗଲା ଯେମିତି । ସବ୍ୟସାଚୀଙ୍କ ଭଳି ଅଘରୁଆ ଲୋକ ଭୋରରୁ ଉଠି ବଜାରକୁ ଚାଲିଯାଆନ୍ତି—ସାନ ଝିଅଟି ଯାହା ଯାହା ଖାଇବାକୁ ଭଲପାଏ, ବାଛି ବାଛି ଆଣିଦିଅନ୍ତି—କଖାରୁ ଫୁଲ, ପୋଇ ଶାଗ, ଝିଙ୍ଗା ମାଛ, ଚିଙ୍ଗୁଡ଼ି, ଛେନା ପୋଡ଼ପିଠା, ମିଠା ଦହି । ଠିକା ଚାକରାଣୀକୁ କେତେ କହି ବୋଲି, ଅଧିକା ପଇସାର ଲୋଭ ଦେଖାଇ ଅଳକା ପ୍ରତିଦିନ ପିଠାପାଇଁ ହୁଏତ ବିରି ଚାଉଳ ନଚେତ୍ ନଡ଼ିଆ ମୁଗ ବଟାଏ । ପିଠାପାଇଁ ଦେବବ୍ରତ ପାଗଳ । ସେ ମଧ୍ୟ ଛାଡ଼ନ୍ତି ନାହିଁ । ପ୍ରାୟ ଘରୁ ବାହାରୁନଥିବା ଭାଇ ଭାଉଜଙ୍କୁ ଧରି ଖୁବ୍ ବୁଲନ୍ତି । ସିନେମାଦେଖା, ହୋଟେଲରେ ଖିଆ, କୃଗାକଣାକଣିର ଗୋଟାଏ ପର୍ବ ଲାଗିଗଲା । ଦେବବ୍ରତ ଦୁଇ ହାତରେ ଟଙ୍କା ଖର୍ଚ୍ଚ କରିଗଲେ । ସ୍ନେହ ମମତାରେ ସେ ଋଣ ଶୁଝାନ୍ତି ସବ୍ୟସାଚୀ, ଅଳକା । ବ୍ରଜବନ୍ଧୁଙ୍କ ସୁମିତ୍ରାଙ୍କୁ ଖୁବ୍ ଭଲ ଲାଗେ ପିଲାମାନଙ୍କର ସୌହାର୍ଦ୍ଦ୍ୟ । ଛାତିରେ ଖୁସି ଧରେ ନାହିଁ ସେମାନଙ୍କର, ଘରେ ପାଟି ତୁଣ୍ଡ କଳିକଜିଆ କିଛି ନାହିଁ—ସେଇ ବାହାଘର ପରର ଦିନ ଭଳି—ସବୁ ଶାନ୍ତ, ସୁନ୍ଦର ସାବଲୀଳ ।

ଦେବବ୍ରତଙ୍କର ଛୁଟି ସରିବାପାଇଁ ଆଉ ସାତ ଆଠ ଦିନ ଥାଏ । ହଠାତ୍ ଦିନେ ପୁରୀ ବାହାରିଲେ ସେ । ଭାଇ ଭାଉଜଙ୍କୁ ବହୁତ ଟାଣିଲେ—କିନ୍ତୁ କ୍ଲିନିକ୍ ବନ୍ଦ କରିବାକୁ ସବ୍ୟସାଚୀ ରାଜି ହେଲେ ନାହିଁ । ଅଗତ୍ୟା ଦେବବ୍ରତଙ୍କୁ ଏକା ହିଁ ଯିବାକୁ ହେଲା । ତାଙ୍କ ସାଙ୍ଗରେ ଚାକିରି କରୁଥିବା ପୁରୀର ପିଲାଟିଏ ଘରପାଇଁ କ'ଣ ସବୁ ଜିନିଷ, ଚିଠି ପଠେଇଛି—ସେ ସବୁ ଦେବାକୁ ହେବ । ତା ଛଡ଼ା ଜଗନ୍ନାଥ ଦର୍ଶନ ତ ଅଛି । ଶୀଘ୍ର ଜଳଖିଆ ଖାଇ ସାଢ଼େଆଠଟାବେଳେ ଘରୁ ବାହାରିଗଲେ ସେ ।

ପ୍ରାୟ ନଅଟା ସାଢ଼େ ନଅଟାବେଳେ ଚାହା ଟ୍ରେ ଆଣିଲା ଅଳକା । ନିଜନିଜର ନିର୍ଦ୍ଦିଷ୍ଟ ଚୌକିରେ ବସିଥିବା ଶାଶୁ ଶଶୁରଙ୍କର ଆନନ୍ଦଭରା ମୁହଁ ଦେଖି ସେ ସ୍ୱସ୍ତିର ନିଶ୍ୱାସ ନେଲା । ଦେବୁ ଚାଲିଯିବା ପରଠୁଁ ହିଁ ଗୋଟାଏ ଅସ୍ପଷ୍ଟ ଆଶଙ୍କା ତା' ଛାତି ଭିତରୁ ଉଙ୍କିମାରୁଥିଲା । ଏତେ ଦିନ ସାନ ପୁଅ ଭୟରେ ଯୁଦ୍ଧ ବିରତି ପାଳନ ହୋଇଥିଲା—ଆଜି ହଠାତ୍ ସେ ସବୁ ଦ୍ୱିଗୁଣ ଗତିରେ ପ୍ରକାଶ ପାଇବନି ତ ! କିନ୍ତୁ ନା ସେମାନଙ୍କୁ ଦେଖି ଯେମିତି ଅନ୍ତତଃ ମନେହେଉନି । ଶାଶୁଙ୍କ ହାତକୁ ଚାହା କପ୍‌ଟା ବଢ଼େଇ ଦେଇ ଅଳକା ହାଲୁକା ସ୍ୱରରେ

କହିଲ, "ବୋଉ ମ, ଦେବୁଙ୍କୁ ବାହା କରେଇ ଦେଲେ କେମିତି ହୁଅନ୍ତା !"

ପାଟିରୁ ପାନ ଛିଠାତକ ବାହାର କରି ଝର୍କା ସେପାଖକୁ ଫୋପାଡ଼ିଦେଲେ ସୁମିତ୍ରା— "ସ୍ୱାଙ୍କୁ କେତେଥର କହିଲଣି—ମୋ କଥା ଶୁଣିଲେ ସିନା !" ଅଭିମାନିଆ କଣ୍ଠରେ ସେ କହିଲେ ।

"ହେବ…ହେବ ସବୁ ହେବ—ବ୍ୟସ୍ତ କାହିଁକି । ଯାଉ ଆଉ ବର୍ଷେ ଖଣ୍ଡେ—ତୁମେମାନେ ଝିଅ ଦେଖାଦେଖି କର ।"

ନରମ ସ୍ୱରରେ ସୁମିତ୍ରା କହିଲେ, "ଏ ବିଷୟରେ ଦେବୁକୁ ଟିକିଏ ପଚାରି ଦେଲେ ଭଲ ହୁଅନ୍ତା ।"

ତୀକ୍ଷ୍ଣ ଦୃଷ୍ଟିରେ ସ୍ତ୍ରୀକୁ ଚାହିଁଲେ ବ୍ରଜବିହାରୀ, "ପଚାରିବାର କ'ଣ ଅଛି ? ଦେବୁ ମୋ କଥାରୁ ବାହାର ହେବନି ।"

"ହୁଏତ ନ ହୋଇପାରେ—କିନ୍ତୁ ଆଜିକାଲିକା ପିଲା; ପୁଣି ବର୍ଷେହେଲଣି ବାହାରେ ବାହାରେ ରହୁଛି । କାଳେ କେଉଁଠି ଇଚ୍ଛା ଥିବ…"

ଚାହା କପ୍‌କୁ ଶବ୍ଦକରି ପ୍ଲେଟ ଉପରେ ବ୍ରଜବିହାରୀ ରଖିଦେଲେ । ସ୍ୱରରେ ଗର୍ବ ଓ ତାଚ୍ଛଲ୍ୟର ଛଟା ଖେଳେଇ ସେ କହିଲେ, "ଏଇଟା ବ୍ରଜବିହାରୀ ମିଶ୍ର, ଶତାବ୍ଦୀର ସେଟେଲମେଣ୍ଟଙ୍କ ଘର ସୁମିତ୍ରା—ଏଠି ସେ ସବୁ ନାଟ ହୁଏ ନାହିଁ । ଏଇଟାକୁ କ'ଣ ତୁମେ ତମ ଭାଇଙ୍କର ରଙ୍ଗମହଲ କରି ପାଇଲ କି ? ଚାରି ଚାରିଟା ପୁଅ—ଗୋଟାଏ ହେଲେ ଧର୍ମ ରକ୍ଷା କରନ୍ତା ! କେଉଁଠି ସବୁ ଧରିଆଣିଲେ ସଂସ୍କାରହୀନ, ଅଜାତିଆ ଝିଅ ସବୁ ।"

ତାଚ୍ଛଲ୍ୟ କଣ୍ଠରେ ଶାଣୁ ଚିହିଙ୍କି ଉଠିଲେ, "ଆଉ…ବଡ଼ଭାଇନାଙ୍କର ବୋହୂଗୁଡ଼ାକ ପୁଣି ମନ୍ଦ ? ଅଣଓଡ଼ିଆ ହେଲେ କ'ଣ ହେବ, କି ସୁନ୍ଦର ଝିଅ ସେମାନେ ! କଥାବାର୍ତ୍ତା, ଶିକ୍ଷାଦୀକ୍ଷା, ଆଚରଣବ୍ୟବହାର କେଉଁଥିରେ ବାରିଦେଇପାରିବ ସେମାନଙ୍କୁ ?"

"ଯାଅନ୍ତୁ ଯାଅ…ଘରର ମୁରବି ସେଇଁଠି ଦମ୍ଭିଲ ନୁହେଁ, ସେଠି…"

"ଏଁ, ତୁମେ ମୋ ଭାଇଙ୍କୁ ଗ୍ଲେଟକରି କଥା କହିପାରିଲ ? ତାଙ୍କ ଭଳି ସୁପୁରୁଷ କିଏ ଅଛି ନା କିଏ ଜନ୍ମିବ ? କ'ଣ ସେ କରିନାହାନ୍ତି ଆମମାନଙ୍କ ପାଇଁ ? ନିଜର ସବୁ ସୁଖ-ସ୍ୱାଚ୍ଛନ୍ଦ୍ୟ ପାଣିକୁ ଫୋପାଡ଼ି ଦେଇ ଆମ ଭାଇଭଉଣୀଙ୍କୁ ମଣିଷ କଲେ । ଅଥଚ ମୋ ଭାଗ୍ୟ ଏଡ଼େ ଗ୍ଲେଟ ଯେ ସେଭଳି ଭାଇ ବିଷୟରେ ଏମିତିକା କଥା ଶୁଣିବାକୁ ହେଉଛି ।"

ଅଲକାର ମୁଣ୍ଡ ଭିତରେ ଝାଇଁ ଝାଇଁ ହୋଇଗଲା । ଏମାନେ କ'ଣ ଅଯଥା କଥାକୁ ଟାଣି ଓଟାରି ବଢ଼ାଉଛନ୍ତି କାହିଁକି ? ଦୋଷ ତ ତାରି । ଦେବୁଙ୍କ ବାହାଘର କଥା ସେ ହିଁ ତ ଉଠେଇଲା । ଓଃ, ମୁହଁ ଖୋଲି ନଥାଆନ୍ତା ହେଲେ ! ନିଜର ଖାଲି କପ୍‌ଧରି ଶୋଷେଇ ଘରକୁ ଚାଲିଗଲା ସେ ।

ଦାଣ୍ଡ କବାଟ ପାଖରେ କାହାର ପାଦ ଶବ୍ଦ ଶୁଭୁଛି । ସର୍ବ୍ୟସାଚୀ 'ଶାସନ' କରିବାକୁ ଆସିଲେଣି ବୋଧହୁଏ । ସବୁ ହଠାତ୍ ଶାନ୍ତ—ତାପରେ ଚୌକି ଟେଲିବାର ଶବ୍ଦ । ଶାଶୁ ବା

ଶ୍ୱଶୁର କିଏ ଜଣେ ଉଠିବାର ଉପକ୍ରମ କରୁଛନ୍ତି ।

"ଟିକିଏ ବସ, ବୋଉ !"

ଚମକି ଗଲା ଅଳକା । ଏ ସ୍ୱର ତ ଦେବୁଙ୍କର ! ଦେବୁ ପୁରୀ ଯାଇନାହାନ୍ତି ! ରୋଷେଇ ଘରୁ ବାହାରିଆସିଲା ସେ । ଅଳକା ଆଡ଼େ ନ ଚାହିଁ ଦେବବ୍ରତ କହିଲେ, "ଫଙ୍କାବର ଚିଠିଟା ସୁଟ୍‌କେଶ୍‌ରେ ରହିଗଲା—ସେଇଟା ନେବାପାଇଁ ବସ୍‌ଷ୍ଟାଣ୍ଡରୁ ଫେରିଆସିଲି ।"

ଟିକିଏ ରହି ବାପା ବୋଉଙ୍କୁ ସ୍ଥିର ଦୃଷ୍ଟିରେ ଦେଖିଲେ ସେ, "କିସର ଜୋର୍ ପାଟିତୁଣ୍ଡ ହେଉଥିଲା ଯେ—କଥା କ'ଣ ?"

ହତ୍‌ବଦେଇଗଲେ ଶଶୁର, "କିଛି ନାହିଁ—ଏଇ ଟିକିଏ ଆଲୋଚନା···"

"ଆଲୋଚନା ?" ବାପାଙ୍କ ମୁହଁରୁ କଥା ଝାମ୍ପି ନେଇ କହିଲେ ସେ, "ସେଥି ପୁଣି କି ପ୍ରକାର ଆଲୋଚନା ଯେ ରାସ୍ତା କମ୍ପି ଯାଉଛି ? ବାଟରେ ଯାଉଥିବା ଲୋକେ ଆମ ଘରଆଡ଼େ ଚାହିଁ ଚାହିଁ ଯାଉଛନ୍ତି । ସେପାଖ ଘରମାନଙ୍କରେ ପର୍ଦ୍ଦା ପଛରୁ କିଏ କିଏ ଶୁଣୁଥିଲେ—ମୋତେ ଦେଖି ପର୍ଦ୍ଦା ପଡ଼ିଗଲା । କୁହ, ଏଇଟା କଣ ଆଲୋଚନା ?"

ଦେବବ୍ରତଙ୍କ କଥାର କେହି କିଛି ଉତ୍ତର ଦେଲେନାହିଁ ।

"ଭାବନାହିଁ ଯେ ମୁଁ କିଛି ଜାଣିନି । ମୋ ସାମ୍ନାରେ କିଛି ନ ହେଲେ କ'ଣ ହେବ, ସାଇ ସାଙ୍ଗଠାରୁ ମତେ ଯଥେଷ୍ଟ ଖବର ମିଳୁଛି । ତମେମାନେ ଏତିକି ଜାଣିପାରୁନ ଯେ ସମସ୍ତେ ତୁମକୁ ଦେଖି ହସୁଛନ୍ତି, ଥଟ୍ଟା କରୁଛନ୍ତି । କେତେ ସମାଲୋଚନା ବି କରୁଛନ୍ତି । ଏଇ ବୟସରେ ତୁମେମାନେ ଏମିତି ହେଉଛ—ତମମାନଙ୍କଠାରୁ ଆମେ କ'ଣ ଶିଖିବୁ ? ଆମ ଆଗରେ ତମେ କି ଉଦାହରଣ ରଖିଯାଉଛ ?"

ଧସ୍ ଧସ୍ କରି ଦେବବ୍ରତ ନିଜ ରୁମ୍ ଭିତରକୁ ପଶିଗଲେ । ସୁଟ୍‌କେଶ ଖୋଲା ଶବ୍ଦ ହେଲା—ଆଉ ଥରେ ବନ୍ଦ ହେବାର ଶବ୍ଦ । କେଇଟା ନୀରବ ମୁହୂର୍ତ୍ତ । ଶବ୍ଦକରି ପୁଣି ବାହାରକୁ ବାହାରି ଆସିଲେ ସେ ।

ସେ ପର୍ଯ୍ୟନ୍ତ ଖାଇବା ଟେବୁଲ ପାଖରେ ମୂର୍ତ୍ତି ପରି ବସିରହିଛନ୍ତି ବ୍ରଜବିହାରୀ ଓ ସୁମିତ୍ରା । କବାଟ ଉପରେ ଆଉଜେଇ ହୋଇ ସେମିତି ଠିଆ ହୋଇ ରହିଛି ଅଳକା ।

ରୁମ୍ ଭିତରୁ ବାହାରି କିଛି ସମୟ ଅଟକି ଗଲେ ଦେବବ୍ରତ । "କେତେଦିନ ହେଲାଣି ମୁଁ ଏ ବିଷୟରେ ବହୁତ ଭାବୁଛି । ମୋର ମନେହୁଏ ବାପା, ତମେ କିଛି ମାସପାଇଁ ମୋ ପାଖରେ ରହିଲେ ଭଲ ହେବ । ସେଠି ମୁଁ ବଡ଼ କ୍ୱାର୍ଟର ପାଇଛି । ରାନ୍ଧିଦେବାପାଇଁ ପିଲାଟିଏ ଅଛି । କୌଣସି ଅସୁବିଧା ହେବନି । ମୁଁ ଭାଇନାଙ୍କ ସାଙ୍ଗରେ ଏ ବିଷୟରେ କଥାବାର୍ତ୍ତା କରିନେବି । ମୋ ଟିକେଟ୍ ତ ହୋଇଯାଇଛି—ସେଇ ଦିନକୁ ଆଉ ଗୋଟିଏ ଟିକେଟ୍ ପୁରୀରୁ ଫେରି କରିଦେବି ।"

× × × ×

ଦେବବ୍ରତ ଚାଲିଗଲେଣି କେତେବେଳୁଁ । ହୁଏତ ବସ୍‌ଷ୍ଟାଣ୍ଡରେ ପହଞ୍ଚିଥିବେଣି ।

କିନ୍ତୁ ଖାଇବା ଟେବୁଲ୍ ପାଖରେ ସେଇମିତି ମୁଣ୍ଡ ତଳକୁ ପୋତି ବସିରହିଛନ୍ତି ଶାଶୁ ଶଶୁର ବିଚାରପତିଙ୍କ ରାୟ ଶୁଣି ଚୁପ୍ ହୋଇଯାଇଥିବା ଆସାମୀ ଭଳି । ବେଡ୍‌ରୁମ୍ ଭିତରେ ଏପଟ ସେପଟ ହେଉ ହେଉ ଅଳକା ବ୍ୟସ୍ତ ହୋଇପଡ଼ୁଥିଲା । ରୁମ୍ ଭିତରୁ ବାହାର ସେମାନଙ୍କ ସାମ୍ନାଦେଇ ଗ୍ରେଷେଇ ଘରକୁ ଯିବାପାଇଁ ସାହସ ହେଉନି ତା'ର । ଗୋଡ଼ ବାନ୍ଧ ବାନ୍ଧ ହୋଇଯାଉଛି ।

ଶାଶୁ-ଶଶୁରଙ୍କର ଅଶାଳୀନ ବ୍ୟବହାରର ଏକ ସ୍ଥାୟୀ ସମାଧାନ ଗ୍ରହିଁଥିଲା ସେ । ଏଇ ତ ଦେବୁ ସମାଧାନ କରିଦେଇଗଲେ ! ତା'ର ତ ଖୁସି ହେବାର କଥା ! ରୁନୁ ଅପା ଇତ୍ୟାଦିଙ୍କ ସାମ୍ନାରେ ଗ୍ରେର ଗ୍ରେର ଭାବ କରିବାକୁ ହେବନି । ସବ୍ୟସାଚୀଙ୍କ ପାଖରେ ନାଲିସ୍ କରିବାକୁ ପଡ଼ିବନି । ତେବେ ସେ କାହିଁକି ଖୁସି ହୋଇ ପାରୁନି ? କାହିଁକି ଏମିତି ଅସ୍ୱସ୍ତି ଭାବ ଘେରିରହୁଛି ତାକୁ ।

ଅଳକାର ସତେ ଏ ଅସ୍ଥିରତାରୁ ନିସ୍ତାର ନାହିଁ । ଦେବୁଙ୍କର ନିଷ୍ପତ୍ତି ଶୁଣିଲେ ଦେବାର କେତେଦିନ ହୋଇଗଲାଣି । ଦବ୍ରୁଗଡ଼ ଯିବାପାଇଁ ଆଉ ମାତ୍ର ଦିନକେଇଟା ଅଛି । ସବୁଦିନ ଭଳି ସମସ୍ତେ ଏକାଠି ଖାଇ ବସୁଛନ୍ତି—ଗୃହା ପିଉଛନ୍ତି—କିନ୍ତୁ ଆସ୍ଥାନାହିଁ ସେଥିରେ, ଆନନ୍ଦ ମଧ୍ୟ ନାହିଁ । ସବୁ ଯେମିତି ରୁଟିନ୍ ।

ଅଳକାକୁ ବା କେମିତି ଭଲଲାଗନ୍ତା ! ଆଜକାଲି ଖାଇବା ପରେ ଟେବୁଲ ପୋଛିବାକୁ ଆସି ବା ଗୃହାର ବାସନ ଉଠେଇବାକୁ ଆସି ସେ ଦେଖେ ଯେ ଟେବୁଲର ନିର୍ଦ୍ଦିଷ୍ଟ ଚୌକି ଦୁଇଟିରେ ଦୁଇଟି ହାଡ଼ ମାଂସର ମୂର୍ତ୍ତି ନୀରବ ନିସ୍ତବ୍ଧ । ଯୁକ୍ତିତର୍କ, କଥା କଟାକଟି ନ ହେବାଟା ତ ସ୍ୱାଭାବିକ—କିନ୍ତୁ ଏମିତି ପଦେ କଥା ନ କହି ଘଣ୍ଟା ଘଣ୍ଟା ଏକାଠି ବସି-ରହିବାଟା···

× × × ×

ବର୍ଷାଦିନ ଆସିବାକୁ ବେଶ୍ ଡେରିଅଛି—କିନ୍ତୁ ହଠାତ୍ ସେଦିନ ବର୍ଷା ହୋଇଗଲା । ଅଣ୍ଡାଳିଆ ସନ୍ତସନ୍ତିଆ ପାଗ । କାମ କରିବାକୁ ଇଚ୍ଛା ହେଉନି ଅଳକାର । ଶାଶୁ ବୋଧହୁଏ ଗାଧୋଇ ଯାଇଛନ୍ତି—ସେ ଆସିଲେ ତାଙ୍କ ସାଙ୍ଗରେ ଗ୍ରେଷେଇ ଘରେ ପଶିବ । ଟେପ୍‌ରେକର୍ଡ଼ରେ ଲତାଙ୍କର ପୁରୁଣା ହିନ୍ଦୀ ଗୀତର କ୍ୟାସେଟ୍ ରଖିଲା ସେ । ସୁଇଚ୍ ଅନ୍ କରିବାକୁ ଯାଉ ଯାଉ ହାତ ରହିଗଲା ତା'ର ।

"ବାପା ?" —ଅଳକା ଅବାକ୍ ।

ତା ବେଡ୍‌ରୁମ୍‌କୁ ଶଶୁର କେବେ ଆସନ୍ତି ନାହିଁ—ନିହାତି ଦରକାର ପଡ଼ିଲେ ବାହାରୁ ଡାକନ୍ତି ସିଏ । ଆଜି ହଠାତ୍ ଏମିତି ? କିଛି କହିବାପାଇଁ ଆସିନାହାନ୍ତି ତ ?

ଡ୍ରେସିଂ ଟେବୁଲ୍ ଷ୍ଟୁଲ୍‌ଟାକୁ ଆଗେଇ ଦେଲା ଅଳକା—"ବସନ୍ତୁ ବାପା ! କିଛି କହିବେ ?"

ବ୍ରଜବିହାରୀ ବହୁତ କିଛି କହିବାକୁ ଗ୍ରହୁଁଛନ୍ତି । ପଚିଶ ବର୍ଷର ଏହି ଗ୍ରେଟଟିଏ ଆଗରେ ଗତ ପଇଁତିରିଶ ବର୍ଷର ଇତିହାସ ଖୋଲିଦେବାପାଇଁ ଚାହୁଁଛନ୍ତି ସେ । ହସ-କାନ୍ଦ, ସୁଖ-

ଦୁଃଖଭରା ଘଣ୍ଟଣାଗୁଡ଼ିକର ଗୋଟାଏ ଲମ୍ବା କବିତା । ବାଗେଇ ଚନ୍ତା କରିପାରୁ ନାହାନ୍ତି ସେ—ସଜେଇ କହିବେ କେମିତି ? ଜିଭ ଅଗରେ ଆସି ଭିଡ଼ କରୁଛନ୍ତି ଶବ୍ଦମାନେ—କିନ୍ତୁ ହୃଦୟର ଜୁଆରରେ ଘସିଯାଉଛନ୍ତି । ଗୋଳେଇଘାଣ୍ଟେଇ ହୋଇଯାଉଛି ସବୁ । ସେ ପାଟି ଖୋଲିପାରୁନାହାନ୍ତି ।

ଧୈର୍ଯ୍ୟ ଧରି ଅଳକା ତଥାପି ଠିଆହୋଇରହିଛି । ନା, ବ୍ରଜବିହାରୀ କିଛି ବି କହି ପାରିବେ ନାହିଁ ।

"ମା'ରେ, ତୋ ବୋଉ ଓ ମୋର କେତୋଟା ଫଟ ମୋ ପାଖରେ ଅଛି, ସେଗୁଡ଼ାକ ଯିବା ଆଗରୁ ତତେ ଦେଇଯିବି । ଟ୍ରଙ୍କରେ ପଡ଼ିରହିଲେ ପୋକକାଟିପକେଇବ ।"

ଶଶୁର ଉଠି ଚାଲିଗଲେ । ଅଳକା କିନ୍ତୁ ଜାଣେ ସେ ଯାହା କହିବାକୁ ଆସିଥିଲେ ସେ କଥା କହିନାହାନ୍ତି । କହିବାର ସାହସ ସଂଚୟ କରିପାରିନାହାନ୍ତି ସେ ।

ଜାଣି ଜାଣି ଖାଇବା ଟେବୁଲ ପାଖରେ ଦେଅରଙ୍କୁ କହିଲା ଅଳକା—"ଏ ବୟସରେ ବାପାଙ୍କର ଏତେ କଷ୍ଟ କରିବାର କୌଣସି ମାନେ ହୁଏନି ।"

"କଷ୍ଟ···କଷ୍ଟ ପୁଣି କ'ଣ ? ଫ୍ଲାଇଟ୍‌ରେ ଯିବେ । ଏୟାର ପୋର୍ଟରୁ ଟ୍ୟାକ୍‌ସି । ମୁଁ କହୁଛି କୌଣସି ଅସୁବିଧା ନାହିଁ । ମୁଁ ତ ପୁଣି ଚାଲୁଛି !"

"ତମ କଥା ଅଲଗା ।" —ଟିକିଏ ରହି ସେ କହିଲା, "ବାପା ଯିବେ ନାହିଁ ।"

"କାହିଁକି ଭାଉଜ ? ସେଠିତ···"

"ବାପା ଯିବେ ନାହିଁ ।" ଜୋର୍ ଦେଇ ଅଳକା ଶେଷ ନିଷ୍ପତ୍ତି ଶୁଣେଇଦେଲା ।

ଦେବବ୍ରତ ଚାଲିଗଲେ ପୁରୀ ହାୱଡ଼ା ଏକ୍‌ସପ୍ରେସ୍‌ରେ କଲିକତା । ସେଠୁ ଫ୍ଲାଇଟ୍‌ରେ ଦିଲ୍ଲୀ । ଯିବାବେଳେ ଅଳକାକୁ କହିଗଲେ, "ଜାଣି ଜାଣି ସବୁ ସମସ୍ୟା କରଉଛ ଭାଉଜ ।" ହସି ହସି ଅଳକା ଉତ୍ତରଦେଇଥିଲା, "ଏଇ ସୋଉ ସିନ୍‌ଟା କରିଦେଇ ଗଲ ନା ଦେଖୁ ଦେଖିବ ରହିଥା—ବାପା ବୋଉ ଏକଦମ୍ ସୁଧୁରିଯିବେ ।"

ଆଜି ଖାଇବା ଟେବୁଲଟା ହସିଉଠିଛି । ଶଶୁରଙ୍କ ଆଡ଼କୁ ଚାହାକପ୍ ବଢ଼େଇଦେଲା ଅଳକା । ସେ ନିବିଷ୍ଟ ଚିତ୍ତରେ କେଉଁ ଗୋଟାଏ ପତ୍ରିକାରୁ ରାମକୃଷ୍ଣଙ୍କର ବାଣୀ ଶୁଣାଉଛନ୍ତି । ଆଖିର ପଲକ ନ ପକେଇ ଶୁଣିଯାଉଛନ୍ତି ସୁମିତ୍ରା । ମଝିରେ ମଝିରେ ବଡ଼ ବଡ଼ କରି କ'ଣ କହି ହାତ ଯୋଡ଼ୁଛନ୍ତି ।

ରାମକୃଷ୍ଣଙ୍କ ଉପାମୃତ ମଝିରୁ ଶାଶୁ ହଠାତ୍ ପଚାରିଦେଲେ, "ହେଇଟି ମ, ପିଲାଟା ଚାଲିଗଲା—ବାହାଘର କଥା ପଚାରିଲ ?"

ପତ୍ରିକା ତଳେ ଥୋଇଦେଇ ବ୍ରଜବିହାରୀ ଆଖିରୁ ଚଷମା ଖୋଲିଦେଲେ । ବିରକ୍ତିଭରା କଣ୍ଠରେ ସେ କହିଲେ, "ଏତେ ବୟସ ହେଲାଣି ସୁମିତ୍ରା, ଅଥଚ ମାୟାରୁ ମୁକ୍ତ ହୋଇ ପାରିଲ ନାହିଁ । ରାମକୃଷ୍ଣଙ୍କର ବାଣୀ ଶୁଣୁ ଶୁଣୁ ଏ ସବୁ ପାର୍ଥିବ ଚନ୍ତା ତୁମ ମୁଣ୍ଡରେ ପଶୁଚି କେମିତି ? ହ୍ୟାତ୍—ବଣ ଖରାପ ପରା !"

"ହଁ..." ନିଆଁ ହୁଲା ଖସିପଡ଼ିଲା ସୁମିତାଙ୍କ ଆଖିରୁ । ଚିତ୍କାର କରିଉଠିଲେ ସେ, "ତୁମର...ତୁମର ସାହସ ତ କିଛି କମ ନୁହଁ ! ଆମ ବଂଶ କଥା ଉଠଉଛ ? ହେଇଟି ମନେ ରଖିଥା, ମୁଁ ମୁହଁ ଖୋଲିଲେ ତୁମ ଘରର କେତେ ଗୁମର...କିଛି ନକହିଲିରୁ...ଆରେ .."

ଅବିଶ୍ୱାସ୍ୟ ଦୃଷ୍ଟିରେ ବୃଦ୍ଧ ପଶଚତ ବିପତ୍ତିର ପୁନରାବୃତ୍ତିକୁ ନିଷ୍ପଳ ପ୍ରତିମା ଭଳି ଚାହିଁ ରହିଥିଲା ଅଲକା । ରୋଷେଇଘର କବାଟ ପାଖରେ ଏମିତି କେତେ ସମୟ ସେ ଠିଆ ହୋଇ ରହିଥାନ୍ତା କେଜାଣି...

ଏ ବେଳରେ ମନରେ ଉଠିଲା—ଦେବୁ...ଦେବବ୍ରତ... । ତରତରରେ ଶୋଇବାଘର ଟେବୁଲରୁ ଲେଟରପ୍ୟାଡ଼୍‌ଟା ଟାଣି ନେଇ ଲେଖିବସିଲା ସେ ।

ଟେବୁଲ ଉପରେ ତଥାପି ରହିଛି ଶାଶୁ-ଶଶୁର ଦୁହିଁଙ୍କ ଆଦ୍ୟ ଜୀବନର ସ୍ମୃତି । ସେ ଦୁହିଁଙ୍କର କେତେକ ଯୁଗ୍ମ ଫଟୋ, ବଧୂ ବେଶରେ ଶାଶୁଙ୍କର ଫଟୋ କେତେଖଣ୍ଡ, ଯାହାକୁ ସାଇତି ରଖିବାକୁ ଦେଇଯାଇଥିଲେ ଶଶୁର ।

ସେ ସବୁକୁ ଘଣ୍ଟେଇ ଦେଖୁଛି ଅଲକା, ଆଉ ଦେଖୁଛି ଦେବବ୍ରତଙ୍କୁ ଲେଖିଥିବା ସେଇ ଅସମ୍ପୂର୍ଣ୍ଣ ଧାଡ଼ି କେତୋଟିକୁ ।

ଏ ପାଖରେ ବାହାରେ ବାକ୍‌ଯୁଦ୍ଧ ସେଇଭଳି ଲାଗିରହିଥିଲା ।

□□□

# ହାଉସ୍ ହାଉସ୍ ଖେଳ

ଘର ଭିତରକୁ ଉଠିଯିବାପାଇଁ ବ୍ୟସ୍ତହୋଇପଡ଼ିଲାଣି ଅସୀମା । ନା ଯାଇହେଉଛି, ନା ରହିହେଉଚି । କାନ ପାଖରେ ବଂଶୀ ବଜାଉଥିବା ମଶାପଲଙ୍କ ଦାଉରେ ଶାନ୍ତି କାହିଁ ? ହାତ ଉପରେ ବସି ନିଶ୍ଚିନ୍ତରେ ରକ୍ତ ପିଉଥିବା ଗୋଟିଏ ବଡ଼ ମଶାକୁ ଲକ୍ଷ୍ୟକରି ଚଟକଣିଟେ ପକାଇଲା ସେ । ତାସ୍ପର୍ଶ ଜାଣିଲାଭଳି ଗୁଁ ଗୁଁ ହୋଇ ମଶା ଉଡ଼ିଚାଲିଗଲା । ଅଯଥାରେ ହାତଟା ଲାଲ ହେବା ସାରହେଲା । ସେଇ ଜାଗାକୁ ପାପୁଲିରେ ଆଉଁଷି ଆଉଁଷି ବିକଳ ହୋଇ ଅସୀମା ଆଉଥରେ ଆକାଶକୁ ଚାହିଁଲା । ସାମ୍ନା ଗୋଲାପୀ ଦୋତାଲା କୋଠାର ପାଚେରୀ କଡ଼େ ଥିବା ଦେବଦାରୁ ଗଛ ଉପରର ଆକାଶ । ସେଇଠି ଜଣାନପଡ଼ିବାଭଳି ରୁପେଲି ରଙ୍ଗର ତାରାଟିଏ । ଅନ୍ୟମନସ୍କଭାବେ ବସି ଆକାଶଆଡ଼େ ଚାହିଁଥିବାବେଳେ ଅସୀମାର ଆଖି ତାରାଟି ଉପରେ ପଡ଼ିଯାଇଥିଲା । ଆଉ ବାଦ ସାଧିଲାଭଳି ତା' ମନକୁ ପିଲାଦିନର ଢଗଟି ଚାଲିଆସିଲା—ଏକ୍ ତାରା ମଣିଷ ମରା । ବିବ୍ରତ ଭାବରେ ପାଞ୍ଚଟି ତାରା ଖୋଜି-ଖୋଜି -ନିସ୍ତାର ହୋଇଥିଲା ସେ । ଦେହ ହାତ ମଧ୍ୟ କେମିତିକା ବିବଶ ଲାଗୁଛି ସେତିକିବେଳକୁ । ଏମିତିରେ ସେ ଏସବୁ ଅନ୍ଧବିଶ୍ୱାସକୁ ଆଦୌ ପ୍ରଶ୍ରୟ ଦେଉ ନଥାଆନ୍ତା । କିନ୍ତୁ ଆଜି କଥା ଭିନ୍ନ । ଆଜି ତା' ମନଟା ଇ ଦୁର୍ବଳ । ନିଜ ମନର ଭୟ ନିଜକୁ ଖାଇ-ଗୋଡ଼ାଉଛି । ଛାତି ଭିତର ଗୁଡ଼େଇ ତୁଡ଼େଇ ହେଉଛି କାହିଁ କେତେବେଳୁ । ନିଜ ଉପରେ ଆଜି କୌଣସି ନିୟନ୍ତ୍ରଣ ନାହିଁ ତା'ର ।

ହେଇଟି, ହେଇଟି—ଉତ୍‌ଫୁଲ୍ଲ ହୋଇ ଚୌକି ଉପରୁ ଅଧା ଉଠିଆସିଲା ଅସୀମା । ହେଇଟି ଦଇଟା ତାରା—ଦୁଇ ତାରା—କଟକ ଘୋଡ଼ା ।

ତିନ୍ ତାରା···ନଦୀଘୋଷ···

ଚାର୍ ତାରା···ଚାର୍ ତାରା କାହିଁ ?

ଆଖି ଦୁଇଟିକୁ ଟ୍ରେଟ ଟ୍ରେଟ କରିନେଇ ଆକାଶକୁ ଭଲକରି ଖୋଜିପକେଇଲା ସେ । ମିଳିଲା···ଚାର୍ ତା'ରା—ନାହିଁ ଦୋଷ ।

ଏବେ ଘର ଭିତରକୁ ଗଲେ କ୍ଷତି ନାହିଁ । କିନ୍ତୁ ଆଜି ଚାନ୍ସ ନେବ ନାହିଁ ସେ । ପଞ୍ଚମ ତାରା ଦେଖିବ—ତା'ପରେ ଯାଇଁ ।

ନ'ଅଟା ବାଜିଗଲାଣି ବୋଧେ । ପଡ଼ିଶା ଘରୁ ଟେଲିଭିଜନର କାର୍ଯ୍ୟକ୍ରମ ଶୁଣାଯାଉଛି ।

ଏତେବେଳେ ଯାଇ ପଞ୍ଚମ ତାସ୍ ଦେଖିଲ ସେ । ପାଞ୍ଚ ତାସ୍—ଘରେ ପଶ୍ ।

ଏଥର ଆଉ ତାକୁ ଅଟକାଇ ରଖେ କଏ ? ବେତ ଚୌକିଟିକୁ ଧରି ଘର ଭିତରକୁ ଚାଲିଆସିଲା ସେ । ରକ୍ଷା ପାଇଲା ମଣିଷ ! ଏ ମଶାକୁ ପୁଣି ଅନ୍ଧାର ! କେଉଁଠାରୁ ବାରଣ୍ଡା ବଲ୍‌ବ ଫ୍ୟୁଜ୍ ହେଲାଣି । ସ୍ୱାମୀଙ୍କୁ କହି କହି ଥକିଗଲା ଯେ, ଗୋଟାଏ ଷାଠିଏ ଓ୍ୱାଟ୍ ବଲ୍‌ବ ଆସିପାରିଲା ନାହିଁ ।

ଅମିତଙ୍କ ଉପରେ ଆଉ ନ ରାଗିବାର ନିଷ୍ପତ୍ତି ନେଇଥିବାରୁ ଅସୀମା ବେଶି ଚଡ଼୍‌ଚଡ଼େ ହେଲା ନାହିଁ । କ'ଣ ଆଉ କରିବେ ବିଚାରା—ସକାଳ ନଅଟାରୁ ସନ୍ଧ୍ୟା ଛଅଟାଯାଏଁ ଗଧ ଖଟଣି । ତା'ପରେ କି ଘରର ଛୋଟ ଛୋଟ ଦରକାରୀ ଜିନିଷ ଆଣିବାକୁ ମନେଥାଏ ନା ଇଚ୍ଛାଥାଏ ? ସେ କ'ଣ ବୁଝନ୍ତିନି ? ସବୁ ବୁଝିଲେ ବି ବେଳେ ବେଳେ ବଡ଼ ଡରକୁ ଲାଗିଯାଏ—ଯେମିତି କାଲି । ସାମାନ୍ୟ କଥାରୁ ମହାଭାରତଟାଏ ଘଟେଇଦେଲା ନା ଅସୀମା ! ବୁଝିଯାଇଥିଲେ ଏବେ କି କ୍ଷତି ହୋଇଯାଇଥାଆନ୍ତା ? ହେଲା, ନହାତି ଯଦି ଅଭିମାନ କରିବାର କଥା, ଅଳ୍ପକେ ମେଣ୍ଟାଇଦେଲେ ତ କଥା ଛିଣ୍ଡିଥାଆନ୍ତା ! ଅଯଥା ବଢ଼ାଇ ବଢ଼ାଇ କିଛି ଲାଭ ହେଲା ? ଗୋଟାଏ ମନକଷ୍ଟ କରି ଅମିତ୍ ଯାହା ଅଫିସ ଗଲେ । ତା'ର ବା ଶାନ୍ତି କାହିଁ ? ସେତେବେଳଠୁ ପଶ୍ଚାତ୍ତାପରେ ପୋଡୁଛି ସିଏ ।

ଗତକାଲି ସନ୍ଧ୍ୟା ପାଇଁ ଯେ କେଉଁଠାରୁ କହି ନ ରଖିଥିଲା ! ବେଶି କିଛି ନାହିଁ, ସିନେମାଟାଏ ପାଇଁ ତ ! ଏମିତିରେ ଅଧିକାଂଶ ଦିନ ଅମିତ୍ ଫେରନ୍ତି ଡେରିରେ, ନ ହେଲେ ଖୁବ୍ ବେଶି ନାଇଟ୍ ସ୍ଥିର୍ଡ଼ ହୋଇ । କୁଆଡ଼କୁ ବୁଲିଯିବାର ମୁଡ୍ ଇ ନଥାଏ ସେତେବେଳେ । କୋଉଦିନ ଏଥିନେଇ ନାଲିସ୍ କରେ କି ଅସୀମା ? ହଁ, ଥରେ ଅଧେ ମୁହଁ ଫୁଲାଇଥିଲେ ଥିବ । କିନ୍ତୁ ଅଧିକାଂଶ ଦିନ ତ ସେ ବେଶ୍ ଖୁସିବାସିରେ ଘରେ ଥାଏ । ସ୍ୱାମୀ ପାଇଁ ନୂଆ ନୂଆ ଜଳଖିଆ ରାନ୍ଧେ—ନହେଲେ ସ୍ୱେଟର ବୁଣେ ବା ରେକର୍ଡ଼ ଶୁଣେ । ଅମିତ୍ ଘର ଭିତରେ ପାଦ ଦେବାକ୍ଷଣି ଦୁଇହାତରେ ତାଙ୍କୁ ଜଡ଼େଇ ଧରି ସବୁ ପାଇଯିବାର ନିଶାରେ ଯେମିତି ନାଚଯାଏ । ପୁଣି ଧାଇଁଯାଏ ରୋଷେଇଘରକୁ । ଗ୍ଲାସେ ଜଳଖିଆ ନେଇ ଆସି ନିଜ ହାତରେ ଖୁଆଇଦିଏ । କାଲିକ, କାଲିଦିନକ ପାଇଁ ଏ ରୁଟିନ୍‌ରେ କିଛି ପରିବର୍ତ୍ତନ ଆଣିବାକୁ ସେ ଏତେକଣ କହିଥିଲା ଯାହା ! 'ବରଷାତ୍' ଦେଖିବା ପାଇଁ କେତେଦିନୁ ଆଶା ରଖିଥିଲା ଅସୀମା । କେମିତି କେଜାଣି ଜମା ଦେଖିହେଲାନି । ଛଅଦିନ ତଳେ ପଡ଼ଶା ଘର ମିସେସ ଭୌମିକ ତାଙ୍କ କ୍ଲବ୍ ତରଫରୁ ଟିକେଟ ବିକ୍ରି କରିବାକୁ ଆସି କହିଥିଲେ, "ମେଟ୍ରୋରେ ଆମେ ଚ୍ୟାରିଟି ସୋ'ରେ ସିନେମା କରୁଛୁ ହ୍ୱାଷ୍ଟିକ୍ ଧୋପାଇଟି ପାଇଁ । ବରଷାତ୍...ଅବଶ୍ୟ ଫିଲ୍ମ୍‌ଟା ଖୁବ୍ ପୁରୁଣା । ତଥାପି..."

ତାଙ୍କୁ ଆଉ ବେଶି କହିବାକୁ ପଡ଼ି ନ ଥିଲା । ଅସୀମା ଅତି ଆଗ୍ରହରେ ଦୁଇଟା ଟିକେଟ କିଣିନେଲା ।

ଟିକେଟ୍ କିଣିବା ଦିନଠାରୁ ସେ ଯେ ଅମିତଙ୍କୁ ତାଗିଦ୍ କରି ଆସୁଛି କାଲି ସକାଳ

ପର୍ଯ୍ୟନ୍ତ । କାଲି ବି ଅଫିସ୍ ଗଲାବେଳେ ତାଙ୍କୁ ବାରମ୍ବାର ମନେପକାଇଦେଇଛନ୍ତି, "ଆଜି ଆଉ ଡେରି କରିବନାହିଁ, ମୋ ରାଣ ରହିଲା ! ଅଠ ଡେରିରେ ସାଢ଼େ-ପାଞ୍ଚ । ଫିଲ୍ମର ଆରମ୍ଭଟା ଯେମିତି ମିସ୍ ନହୁଏ ।"

ଅମିତ୍ ହସିଥିଲେ—"ଆସିବି, ଆସିବି—ପ୍ରମିସ୍ ।"

ଏତେ ପ୍ରମିସ୍-ଫ୍ରମିସ୍ କରିବାକୁ କହୁଥିଲା କିଏ ? କଥା ରଖିବନି ତ ରଖିବନି—ପୁଣି ଏତେ ଅଣାଡ଼ଆ କାହିଁକି ? ପ୍ରଥମରୁ ହେଲେ ନାହିଁକରିଦେଇଥାଆନ୍ତେ, ତାହାକୁ ଟିକେଟ୍ ଦୁଇଟା ଅସୀମା ଦେଇଦେଇଥାଆନ୍ତା । ଗଲା, ଅଯଥା ଦଶ ଦଶ କୋଡ଼ିଏଟା ଟଙ୍କା ନଷ୍ଟ ହେଲା । ତା ଉପରେ ପୁଣି ସନ୍ଧ୍ୟାଟା ବରବାଦ୍ ଆଉ ତା' ମୁଡ୍ ଖରାପ । ଏତେ ସବୁ ସହି ନେଇ ଆଦର୍ଶ ପତ୍ନୀ ସେ ହୋଇପାରିଥାଆନ୍ତା କେମିତି ?

ଏତେ କୁହାବୋଲା, ଅନୁରୋଧ, ରାଣ ପରେ ମଧ୍ୟ ହେଉନ ଘରକୁ ସାଢ଼େ-ଛଅଟାରେ ଫେରିଲେ ଅମିତ୍ । ରାଗରେ ସେତେବେଳକୁ ଅସୀମା ଶାଢ଼ି ବଦଳେଇସାରିଥିଲା । ମେକ୍‌ଅପ୍ ପୋଛି ଦେଇଥିଲା ମୁହଁରୁ । କ'ଣ ପାଇଁ ଆଉ ସଜେଇ ହୋଇ ବସିବ ? ଜଣେ ନିଷ୍ଠୁର, ନିର୍ବିକାର, ଭୋଳା ମଣିଷ ପାଇଁ ! ଯା ମ ଯା···

ସ୍ୱାମୀଙ୍କ ସ୍କୁଟର ଶବ୍ଦ ଶୁଣି ମୁହଁ ମୋଡ଼ିଲା ସେ । ଗେଟ୍ ପର୍ଯ୍ୟନ୍ତ ଦୌଡ଼ି ଗଲା ନାହିଁ । ଡାଣ୍ଡିକବାଟ ଖୋଲିଦେଇ ଆସି ପୁଣି ଖଟ ଉପରେ ବହି ଧରି ବସିଗଲା ।

କବାଟ ଠେଲି ଘରେ ପଶୁ ପଶୁ ଅମିତ୍ ସ୍ତ୍ରୀକୁ ନଦେଖି ଆଶ୍ଚର୍ଯ୍ୟ ହେଲେ ବୋଧେ; କିନ୍ତୁ କିଛି କହିଲେ ନାହିଁ । ଜୋତା ଖୋଲି ଷ୍ଟାଣ୍ଡ ଉପରେ ରଖିଲେ । ଶୋଇବା ଘରକୁ ଆସି କୋଟ୍‌ଟାକୁ ଖଟ ଉପରେ ପକାଇଦେଲେ । (ସଜାଡ଼ି ଆଲମାରିରେ ରଖିବା ତ ତାଙ୍କରେ ନାହିଁ) ଟାଇର ନଟ୍‌କୁ ଢିଲା କରୁ କରୁ ହାଇ ମାରି ସେ କହିଲେ, "ଗଡ୍, ହ୍ୱାଟ ଏ ଡେ ! ···ପାଣି ଗ୍ଲାସେ ଦିଅ ସୀମା !"

ବହିଟି ଓଲଟେଇ ତକିଆ ପାଖରେ ରଖିଦେଇ ଅସୀମା ଉଠିଗଲା । ପାଣି ଗ୍ଲାସେ ଆଣି ସ୍ୱାମୀଙ୍କ ହାତକୁ ବଢ଼େଇଦେଲା ଚୁପ୍‌ଚାପ୍ । ପଦଟାଏ କଥା କହିଲା ନାହିଁ କି କିଛି ପଚାରିଲା ନାହିଁ । ଭାରି ଗୋଟାଏ ନିସ୍ପୃହ ଭାବ ଦେଖାଇ ଆଉ ଥରେ ବହି ଖୋଲି ବସିଗଲା ।

ଷ୍ଟାର୍‌ଡଷ୍ଟ୍ ଠାରୁ ଅଧିକ ସିରିଅସ୍ କିଛି ନପଢ଼ୁଥିବା ଏଇ ସ୍ତ୍ରୀକୁ ଆର୍ଥର୍ ହ୍ୟାଲିଙ୍କ ବହି ପଢ଼ୁଥିବାର ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ଅମିତ୍ । "ଆଜି କ'ଣ ଭାରି ବହିରେ ମନ ଲାଗିଯାଇଛି ? ଯାହେଉ, ମତେ ବାହାହୋଇ କିଛି ଗୋଟାଏ ଭଲକଥା ତ ଶିଖିଲ !"

ତଥାପି ଅସୀମା ନୀରବ । ଏଥର ସନ୍ଦେହ ହେଲା ତାଙ୍କର । "ଆଜି ଏତେ ଚୁପଚାପ୍—କ'ଣ ରାଗିଛ ?" ହଠାତ୍ ସବୁ ମନେପଡ଼ିଗଲା—ସିନେମା ଯିବା କଥା, ସାଢ଼େ-ପାଞ୍ଚଟାରେ ଘରକୁ ଫେରିବା କଥା । ଓଃ, କେମିତି ଏ ଭୁଲ ହେଲା ! ଏତେ ଦିନରୁ ଘୋଷି ଘୋଷି ଅଭ୍ୟସ୍ତ ଯେ, ଅଫିସ୍‌ବେଳେ କଥାଟା କେମିତି ବିସ୍ମରଣ ହୋଇଗଲା ? ସ୍ତ୍ରୀର ହାତକୁ ଗାଲ ଉପରେ ଚାପିଧରି ବ୍ୟସ୍ତ ହୋଇ କହିପକେଇଲେ ସେ, "ସୀମା, ଡିଅର୍ ସୀମା, ଆଇ ଏମ୍ ଭେରି

ଭେଣ୍ଟ ଘର । କ୍ଷମା କର ଘରେ ଏଇ ଥରକ, ପ୍ଲିଜ୍ ! ଏମିତ ଆଉ କେବେ ହେବନ । ଜାଣ, ଆଜ ଅଫିସ୍‌ରେ ଏତେ ପ୍ରବ୍ଲେମ୍, ଏମିତ କାମର ପ୍ରେସର୍ ଯେ ମୁଁ ମୁହ ଟେକି ପାଇଁ ଅନ୍ୟ କିଛି ଚିନ୍ତାକରିବାକୁ ବେଳପାଇନ । ପୁଣି ଗୁଡାଏ ମିଟିଙ୍ଗ୍ । ଗୁ' କପେ ପିଇପାରିନ ।"

କୈଫିୟତ୍ ଉପରେ କୈଫିୟତ୍ ଦେଇ ଚାଲିଥିଲେ ଅମିତ୍ । ବୁଝେଇ ଥକିଥିଲେ ସେ । ରାତରେ ହୋଟେଲ୍‌ରେ ଖାଇବା ପ୍ରସ୍ତାବ ମଧ୍ୟ ଦେଇଥିଲେ । ଅସୀମା ମୁହଁ ମୋଡ଼ିଥିଲା । ସକାଳୁ, ରଞ୍ଜନାଙ୍କ ଘରକୁ ବୁଲିଯିବା ପାଇଁ ଡାକିଥିଲେ, ସୀମା କଡ଼ ବୁଲାଇ ନେଇଥିଲା ।

ରାତଟା କଟିଗଲା ଉପାସରେ । ଅସୀମା ରାଗିଛି, ଖାଇବନ । ଆଉ ଅମିତ୍ ତ ସହଜେ ଦୋଷୀ, ଖାଦ୍ୟ ତଣ୍ଟିରେ ଗଳନ୍ତା କେମିତ ? ଅଧରାତଯାଏ ବୁଝାଇ ବୁଝାଇ ଚୁପ୍ ପଡ଼ିଗଲେ ସିଏ । ଘନଘନ ଝଡ଼ ଝରଣୀ ପରେ କେତେବେଳେ ଯେ ତାଙ୍କୁ ନିଦ ହୋଇଗଲା, ସେ ଆଦୌ ଜାଣି ପାରିଲେ ନାହିଁ ।

ଅସୀମା ସେମିତ ଦାନ୍ତ କାମୁଡ଼ି, ଲୁହରେ ତକିଆ ଭିଜେଇ, ଅଭିମାନରେ, ରାଗରେ ରାତଟା କଟେଇଦେଲା । ସକାଳୁ ଦେହ ଖରାପର ଛଳନା କରି ରେଜେଇଟା ବେକ ପାଖକୁ ଆଉ ଟିକିଏ ଭଲଭାବରେ ଟାଣିଆଣିଲା ଅସୀମା । ଡିସେମ୍ବର ମାସର ଶୀତରେ ରେଜେଇରୁ ଉଷୁମ ଟାଣିବାକୁ ମନ୍ଦ ଲାଗୁନ । ଏମିତରେ ତା' ଦେହରେ ଜର ନାହିଁ, ଯଦିଓ କପାଳଟା ତାତିଥିଲେ ଖୁସିହୋଇଥାଆନ୍ତା ସେ । କିଛି ନ ହେଲେ ଅମିତ୍‌ଙ୍କ ପାଖରେ ଅନ୍ତତଃ ତା' ବାହାନା, ଅଭିମାନର ମୂଲ୍ୟ ଟିକିଏ ବଢ଼ିଯାଇଥାଆନ୍ତା । ଥଣ୍ଡା ଧରିନ । କାଶ ଫାଶ ମଧ୍ୟ ନାହିଁ । କାଲୁ ମୁହଁଟା ଶୁଖିଲା । ରାତରେ ନିଦ ହୋଇନ । ଅମିତ୍‌ଙ୍କ ଦୁଇ ହାତ ଘେରି ଭିତରେ ଶୋଇବାର ଦୁଇ ବର୍ଷର ଅଭ୍ୟାସ, ହଠାତ୍ କରି କ'ଣ ଛାଡ଼ି ହୁଏ ? ଆଖି ଦୁଇଟା ଫୁଲି ଲାଲ୍ ଲାଲ୍, କାଲି କିଛି କହାକଟା କରିଥିଲା ତ ! ନିଜର ଦୁଃଖୀ ଦୁଃଖୀ ଇମେଜ୍‌କୁ ଆଉ ଟିକିଏ ଭଲକରି ଫୁଟେଇବା ପାଇଁ ଆଜ ସକାଳୁ ମୁହଁ ଧୋଇନ ଅସୀମା । ଦାନ୍ତ ଘଷିଦେଲା ଖୁବ୍ ସାବଧାନରେ, ଗାଲରୁ ଲୁହ ଦାଗ ଯେମିତ ଉଠି ନଯାଏ । ଆଖି ପରିଷ୍କାର କରିଥିଲା—କାଲୁ କହାତ ସେତିକ ପାଣି ନ ହେଲେ ନଚଳେ, ଠିକ୍ ସେତିକ ବ୍ୟବହାର କରି । ଆଖିର ଉଦାସୀନ ଭାବକୁ ଲିଭେଇ ଦେଇ ଉଜ୍ଜ୍ୱଳତା ଫେରେଇ ଆଣିବାର କୌଣସି ଇଚ୍ଛା ତା'ର ନଥିଲା । ଦୀର୍ଘନିଃଶ୍ୱାସ ନେଲା ସିଏ ସ୍ୱାମୀକୁ ଶୁଣେଇ ଶୁଣେଇ ।

ଖବରକାଗଜ ପଢ଼ି ପଢ଼ି ସ୍ତ୍ରୀଆଡ଼େ ଚାହିଁଲେ ଅମିତ୍ । ସୀମା ମନ କଷ୍ଟ କରି ଦୀର୍ଘନିଃଶ୍ୱାସ ନେଲେ ତାଙ୍କ ଛାତି ଭିତରେ କ'ଣ ଯେମିତ ହୋଇଯାଏ । ଏତେଥର ବୁଝେଇ କହିଛନ୍ତି, "ତୁମେ ଦୀର୍ଘଶ୍ୱାସ କେବେ ନେବନ ସୀମା ! ଜାଣ, ଶାସ୍ତ୍ରରେ ଲେଖା ଅଛି, ସ୍ତ୍ରୀର ସବୁ ନିଃଶ୍ୱାସ ସ୍ୱାମୀ ଉପରେ ପଡ଼େ ।"

ଅସୀମା ତାଙ୍କ ପାଟିରେ ହାତ ପାପୁଲି ଚାପିଦେଇ କହେ, "ତୁମେ ସେମିତ କାହିଁକ ଭାବୁଛ ଯେ ! ମୁଁ କ'ଣ ସତରେ ରାଗି ଦୀର୍ଘନିଃଶ୍ୱାସ ନିଏ ? ଏଗୁଡ଼ାକ ସବୁ ଅଭିମାନଥା, ମିଛିମିଛିକା ।"

ବୋକା ବୋକା ଭାବରେ ଅମିତ୍ର ଦୀର୍ଘନିଃଶ୍ୱାସର ପ୍ରକାରଭେଦ ବୁଝିବାର ଚେଷ୍ଟା କରନ୍ତି । ଆଜି ତା'ର ଏ ଦୀର୍ଘନିଃଶ୍ୱାସ ପଛରେ ସତରେ କିଛି କାରଣ ଅଛି ନା ସେ ବି ମିଛିମିଛିକଥା ? କେଜାଣି ? ହୁଏତ ଅଳ୍ପ ସମୟ ପରେ ସବୁ ଠିକ୍ ହୋଇଯିବ । ହସି ହସି ତାଙ୍କର ଛାତିରେ ଲେଟିପଡ଼ିବ ଅସୀମା । ହାତରୁ ଖବରକାଗଜଟା ଟାଣିନେଇ ଫୋପାଡ଼ ଦେବ ଗୋଟାଏ କଣକୁ । ଆଖିରୁ ଚଷମା ଖୋଲି ତକିଆ ପାଖରେ ରଖିଦେବ । ଆଉ ଭଲପାଇବାର ସ୍ରୋତରେ ଅମିତ୍ର ଖାଲି ଭାସିଯିବେନି, ଉବୁଟବୁ ହୋଇଯିବେ ।

ବାହାଘରର କେଇମାସ ପରେ ଥରେ ଏମିତି ହୋଇଥିଲା ତ । ସେଦିନ ସାଧାରଣ ଦିନଟିଏ । ସେମାନଙ୍କର ମାସିକିଆ ଆନିଭର୍ସରି ନୁହଁ କି ଅସୀମା ବା ଅମିତ୍ରର ଜନ୍ମଦିନ ମଧ୍ୟ ନୁହଁ । ହଠାତ୍ କ'ଣ ହେଲା କେଜାଣି, ଦୋକାନରୁ ବ୍ରେଡ୍ ନେଇ ଆସିବା ପରେ ଅସୀମା ଖୁବ୍ ଗେହ୍ଲେଇ ହୋଇ କହିଥିଲା, "ଏଇ, ଆଜିକି ଛୁଟି ନିଅ ନା । ଶୀଘ୍ର ଗାଧୋଇ ପାଧୋଇ ବୁଲି ବାହାରିଯିବା, ଫେରିବା ସାଥ ଡେରିରେ । ବ୍ରେକ୍ଫାଷ୍ଟ, ଲଞ୍ଚ୍, ଡିନର୍ ସବୁ ବାହାରେ ।" ଆଖି ନଚେଇ ଅସୀମା ତରତର ହୋଇ ଯୋଡ଼ିଲା, "ନାହିଁ କରିବନି ଟି— ମୋର ଆଜି ଛୁ-ଟ୍-ଟି ।"

ନାଚିବା ଭଙ୍ଗୀରେ ବୁଲିପଡ଼ି ଯିବାବେଳେ ତା' ବାଁ ହାତ ଧରିନେଇଥିଲେ ଅମିତ୍ର ।

"ଏଇ ଦୁଷ୍ଟୀ—କଥା ଟିକିଏ ଶୁଣ ! ଖାଲି ତ ଛୁଅଙ୍କ ଭଲ ହେବ ।"

"ଭଲ ହେଲା ଯା ! ତୁମେ ଛୁଟି ନବ କି ନାହିଁ କହିଲ ?"

ଟିକିଏ ଭାବିବା ଭଳି ହୋଇ ଅମିତ୍ର କହିଥିଲେ, "ସ୍ୱିଟି, ଆଜି ଜମା ଛୁଟି ନେଇହେବନି । ଜି. ଏମ୍. ଆସୁଛନ୍ତି । ତାଙ୍କ ସାଙ୍ଗରେ ସାଢ଼େ-ଏଗାରଟାରେ ମିଟିଙ୍ଗ୍ । ତା' କ'ଣ କ୍ୟାନ୍‌ସଲ୍ କରିହେବ ? କହିବ ଯଦି କାଲି ଛୁଟି ନେବି ।"

ଓଠ ଫୁଲେଇଥିଲା ଅସୀମା—"ଯାଃ—କାଲି ଆଉ ଏଇ ଇଚ୍ଛା ଥିବ !"

"କାହିଁ, ପ୍ରେମର ଷ୍ଟକ୍ ଆଜି ସରିଯିବ କି ? କାଲିକି ମାଲ୍ ଶେଷ !" ଚଢ଼େଇଥିଲେ ସେ ।

ବାସ୍ ସରିଗଲା । କଥାପଦକ ହେଲା କାଳ । ସ୍ତ୍ରୀ ଆଖିରୁ ଠକ୍ ଠକ୍ ଲୁହ ଗଡ଼ିଆସିଲା । ଆଟିରେ ପାଚୁଲା ତାଙ୍କି ସେ କି କାନ୍ଦ । ବ୍ୟସ୍ତ ହୋଇପଡ଼ିଥିଲେ ଅମିତ୍ର । ଆରମ୍ଭ କରିଥିଲେ ମାନଭଞ୍ଜନ । କୌଣସିଥିରେ ବୁଝିଲା ନାହିଁ ଅସୀମା । ଆଣ୍ଠୁ ଉପରେ ମୁହଁ ରଖି ଡାଇନିଙ୍ଗର ସୋଫା ଉପରେ ସେମିତି ବସିରହିଲା ।

ସୁବିଧା ଥିଲେ ଅମିତ୍ର ନିଶ୍ଚୟ ଛୁଟି ନେଇଥାଆନ୍ତେ । କିନ୍ତୁ ସତରେ ଜି. ଏମ୍. ଙ୍କ ମିଟିଙ୍ଗ୍ ଥିଲା । ବାଧ୍ୟହୋଇ ସ୍ତ୍ରୀକୁ ମନେଇବା ବନ୍ଦ କରି ଅଫିସ ପାଇଁ ପ୍ରସ୍ତୁତ ହୋଇଥିଲେ । ଅସୀମା ଯେ ତାଙ୍କୁ କଣେଇ କଣେଇ ଦେଖୁଥିଲା ଆଉ ମନେ ମନେ ବୁଝିହେଉଥିଲା ସେକଥା ସେ ଜାଣନ୍ତେ କେମିତି ?

ଇସ୍, କ'ଣ କହିବ କୁହ, ମାଟିଆ ପ୍ୟାଣ୍ଟ୍ ସାଙ୍ଗରେ ଆକାଶୀ ରଙ୍ଗର ସାର୍ଟ ! ପୁଣି କଳା

ଟାଇ । ଆଜ ପରା ଜ. ଏମ୍. ଙ୍କ ସହିତ ମିଟିଙ୍ଗ୍ । ହଠାତ୍‌ଟାଏ ସୀମା ରାଗିଲା ଯେ ତୁମେ ଏମିତି ଅଭଦ୍ର କମ୍ବିନେସନ୍ ପିନ୍ଧିବ ! ସତେ ଜାଣି ସ୍ୱାମୀ ହାତକୁ ଲୁଗାପଟା ପସନ୍ଦ କରି ବଢ଼େଇ ଦେବାର ଠିକାଟା ସେ ନେଇଛି ।

"ଶୁଣ"...କଥା ନ କହିବାର ପ୍ରତିଜ୍ଞା ଅଉ ବେଶି ସମୟ ଅସୀମା ରଖି ପାରିନଥିଲା । ଅମିତ୍ରଙ୍କ ଓଠରେ ହସ ଚହଲ ଚହଲ ଅସୁଥିଲା । ଦେଖି ନଦେଖିବା ପରି ଅସୀମା ଚୂପଚାପ ସୋଫା ଉପରୁ ଉଠିଗଲା । ବେଡ୍ ରୁମ୍‌କୁ ଯାଇ ଷ୍ଟିଲ୍ ଅଲମାରୀରୁ ଧଳା ସିଲ୍‌କ ସାର୍ଟ ଓ ମାଟିଆ କଟେଡ୍ ଟାଇ ବଢ଼େଇଦେଇ ଖୁବ୍ ସଂକ୍ଷିପ୍ତ ଭାବରେ କହିଥିଲା, "ବଦଳେଇଦିଅ ।"

"ଏବେ··· ?" ହାତଘଣ୍ଟା ଉପରେ ଥରେ ଆଖି ବୁଲେଇ ନେଇ ଅମିତ୍ରଙ୍କ ମୁହଁ ବିକଳ ହୋଇ ଯାଇଥିଲା—"ଡେରି ହେଲାଣି ପରା ସୀମା ! ଆଉ ଯାହା ପିନ୍ଧିଛି ।"

"ଓଃ, କହିଲି ପରା ବଦଳେଇ ଦିଅ ।"

ଅସୀମା ମୁହଁରେ ଥୋପି ଥୋପି ଭଲ ପାଇବାର ରାଗ । ଗୁଣୁଗୁଣୁ ହେଲା ସେ, "କ ରୁଚିରେ ବାବା, ପିଲଙ୍କ ଭଲ ଖବର ବୁଝିବାକୁ ହେଉଛି···"

ଅମିତ୍ରଙ୍କୁ ଭାରି ଭଲ ଲାଗିଥିଲା ଏ ମିଛ ରାଗ । ଦୁଇ ହାତରେ ସ୍ତ୍ରୀର ମୁହଁଟିକୁ ଧରି ଚପ୍‌ଚପ୍ କହିଥିଲେ, "ଥରେ ହସିଦିଅ ! ତା' ହେଲେ ଯାଇ···"

"ହସିବି ନା ଚ୍ଚେପା ! ମୁଁ ଖୁଉବ୍ ରାଗିଛି ।" ଆଖି ବନ୍ଦକରିଦେଇଥିଲା ସେ ।

"ତା'ତ ଜାଣିପାରୁଛି । ତେବେ ଓଠ ମାଡ଼ି ହସଟାକୁ ଚାପୁଛ କାହିଁକି ରାଣୀ ? ସ୍ମାଇଲ୍ ପ୍ଲିଜ୍—"

"ଧେତ୍"···ନହସିବାର ସବୁ ଚେଷ୍ଟା ସତ୍ତ୍ୱେ ଅସୀମା ଫିକ୍ କରି ହସିଦେଇ ସ୍ୱାମୀଙ୍କ ଛାତିରେ ମୁହଁ ଲୁଚେଇଦେଇଥିଲା ।

ଆଃ—ଆଜିର ଏ ଅଭିମାନର ଅନ୍ତ ସେଦିନ ଭଳି ହୁଅନ୍ତା ନାହିଁ ? ଟିକିଏ ହସିଦେଇ ଫୁଲ ଫୁଟାଇ ଦିଅନ୍ତା ନାହିଁ ସୀମା ? କ'ଣ ଏମିତି ମହାଭାରତ ଅଶୁଦ୍ଧ କଲାଭଳି ଭୁଲଟାଏ ସେ କରିପକେଇଲେ ଯେ କାଲିଠାରୁ କନ୍ଦରେ ବୁଝ୍ ନ ଅସୀମା ? ଅନ୍ୟମନସ୍କ ଭାବରେ ବିଛଣାରୁ ଉଠି ପ୍ରସ୍ତୁତ ହେବାକୁ ଚାଲିଗଲେ ଅମିତ୍ର ।

ରେକେଇର କଣ ଟିକିଏ ଟେକ ସ୍ୱାମୀକୁ କେତେବେଳୁ ଲକ୍ଷ୍ୟ କରୁଥିଲା ଅସୀମା । ଏଠି ମୁହଁ ଶୁଖାଇ ଲୁହଲାଳ ଏକାକାର ହେଉ ପଡ଼ିଛି ସେ, ତାଙ୍କର କ'ଣ ସେଥିପାଇଁ ଚିନ୍ତା ଅଛି ! ନୂଆ ନୂଆ ବାହାଘରରେ ସିନା ଗୁର୍ମି, ଦୁଇବର୍ଷ ପରେ ପଚାରୁଛି କିଏ ? କାଲି ରାତିରେ ଏତେ ତେଲ, କାନଧରା, ସକାଳୁ ତା'ର କାଣିଚାଏ କରିଥିଲେ କ'ଣ କିଛି ସରଯାଇଥାଆନ୍ତା ? ଆଖିରୁ ପୁଣି ଲୁହ ଝରିଲା ତା'ର ।

ଏ ଅଭିମାନର ସତେ କି ମୂଲ୍ୟ ? ସ୍ୱାମୀଙ୍କ ପାଖରୁ ଏତେ ଟିକିଏ ସିମ୍ପାଥି ମିଳିଥାଆନ୍ତା ଅବା ! ଯେଉଁ ସବୁ ମାନଭଞ୍ଜନର ପାର୍ଟ ମୁଖସ୍ଥ କରିଥିଲେ ସବୁ କାଲି ରାତିରେ ସରିଯାଇଛି ପରା ! ସକାଳୁ ସକାଳୁ ନିଦରୁ ଉଠିବା କ୍ଷଣି ଜଳଜଳ ହୋଇ ଦିଶୁଛି ପ୍ରିୟ ଅଫିସ୍ ଆଉ

ଅଫିସର୍ ଷ୍ଟାଫ୍ । ଓଃ, ଯୁଗଟାଏ ପରେ ବାପଘରକୁ ଫେରିବା ପରି ଲାଗୁଥିବ ନା ! ସେଠି ଅସୀମା ଫସୀମାଙ୍କ ସ୍ଥାନ କାହିଁ ?

ସକାଳୁ ସକାଳୁ ନିଦ ଭାଙ୍ଗିଲାବେଳକୁ ଖଟର ଗୋଟାଏ କଣରେ ଅସୀମା ଶୋଇଥିଲା ଜାକିଜୁକି ହୋଇ । ରେଜେଇ କାହିଁ ଗୋଡ଼ ପାଖରେ ଗଡ଼ାମାରୁଥିଲା । ଅଭ୍ୟାସରୁ ଅଧା ନିଦରେ ସେ ଅମିତଙ୍କ ଆଡ଼କୁ ଗଡ଼ି ଯାଉ ଯାଉ ହଠାତ୍ କାଲି ରାତି କଥା ମନେପଡ଼ି ରହିଗଲା । କିଛି ଅନାଗ୍ରହ ଓ କିଛି କୁଣ୍ଠା ନେଇ ମଶାରି ଟେକି ବାହାରକୁ ଚାଲିଆସିଲା ସେ । ସକାଳର ଅଧା ନିଦ ଏବଂ ଅଧା ଜଗା ଭିତରେ ସ୍ୱାମୀଙ୍କ ପାଖରେ ଯେଉଁ ପନ୍ଦର କୋଡ଼ିଏ ମିନଟ୍ ଗେଲେଇ ହୁଏ ଅସୀମା, ସେଇଥିରୁ ତା' ଦିନ ଆରମ୍ଭ ହୁଏ । ଆଜିର ବ୍ୟତିକ୍ରମରେ ମନଟା କେମିତି କେମିତି ଲାଗୁଥିଲା । ଇଚ୍ଛା ହେଉଥିଲା ଭିତର ମନ ଫଟାଫଟି ଭୁଲିଯାଇ ଧାଇଁଯିବ ଅମିତଙ୍କ ପାଖକୁ । ଏତେ ପ୍ରିୟ ଜଣକ ପାଖରେ ପୁଣି ଇଗୋ କ'ଣ ? ତଥାପି ପାଦରେ ଯେମିତି ବେଡ଼ି ପଡ଼ିଯାଇଥିଲା । ଅଭିମାନ ରୁଦ୍ଧ ହୋଇଯାଇଥିଲା ଗ୍ରନ୍ଥିରେ । କାହିଁକି ଯେ ଅସୀମା ସେଇ ମୁହୂର୍ତ୍ତରେ ଆଉ ଟିକିଏ ଦୁର୍ବଳ ହୋଇ ପଡ଼ିଲା ନାହିଁ ?

ଚାହା କରି ଆଣି ଖଟ ପାଖ ଟେବୁଲ୍‌ରେ ସେ ଶବ୍ଦ କରି ରଖିଦେଇଥିଲା ଏବଂ କାହାକୁ ସମ୍ବୋଧନ ନକରି ଈଷତ୍ ବଡ଼ ପାଟିରେ ଘୋଷଣା କରିଥିଲା, "ଚାହା ଆଣିଛି···" ଅମିତ୍ ସବୁଦିନ ଭଳି ପେଖନା କାଢ଼ି ନଥିଲେ । "ଏତେ ଶୀଘ୍ର ଉଠିବନି"ର ଗୋଟାଏ ପିଲାଳିଆ ଜିଦ ଆରମ୍ଭ କରି ନଥିଲେ କି ଅସୀମାକୁ ମଶାରି ଭିତରକୁ ଟାଣି ଆଣିବାର ଚେଷ୍ଟା କରି ନଥିଲେ । ଚୁପ୍‌ଚାପ୍ ଉଠି ମୁହଁ ଧୋଇ ଆସିଲେ । ମଶାରି ଖୋଲିଦେଇ ଖଟରେ ତକିଆକୁ ଆଉଜାଇ ଚାହା ପିଇଥିଲେ । ପୁଣି ଗମ୍ଭୀର ଭାବରେ ପଚାରିଥିଲେ, "ପେପର୍ ଦେଇନି ?"

ଷ୍ଟେଟ୍‌ସମ୍ୟାନ୍‌ଟା ବାହାର ବାରଣ୍ଡାରୁ ଆଣି ବଢ଼େଇ ଦେଇ ଅସୀମା ଚାଲିଯାଇଥିଲା । ପଛରୁ ଥରଟିଏ ବି ଡାକି ନଥିଲେ ଅମିତ୍ । ଆଖି ଛଳଛଳ କରି ସେପେଇ ଘରକୁ ଯାଇ ଭୀଷଣ ଅନାଗ୍ରହରେ ଜଳଖିଆ କରିନେଲା ସେ । ଡାଇନିଂ ଟେବୁଲ୍ ଉପରେ ସବୁ ଘୋଡ଼େଇ ରଖିଦେଇ ଶୋଇବା ଘରକୁ ଚାଲିଯାଇଥିଲା । ଏମିତିରେ ଅନ୍ୟ ଦିନ ଠେଲି ଠେଲି ବାଥ୍‌ରୁମ୍‌ରେ ନପୂରେଇବା ପର୍ଯ୍ୟନ୍ତ ଅମିତ୍ ସେମିତି ଖଟରେ ପଡ଼ିରହିଥାଆନ୍ତି । ଆଜି କଥା କିନ୍ତୁ ଭିନ୍ନ । ନିଜେ ନିଜେ ଉଠିଲେଣି । ଅସୀମାର ନାକପୁଡ଼ା ଫୁଲି ଫୁଲି ଉଠିଥିଲା । ଖଟ ଉପରେ ସ୍ୱାମୀଙ୍କ ଧଳା ଷ୍ଟ୍ରାଇପ୍ ସାର୍ଟ, ସେଲ୍‌ଫ ଚେକ୍‌ଡ ଗ୍ରେ ପ୍ୟାଣ୍ଟ୍, ସ୍ୱେଟର୍, ମୋଜା, ରୁମାଲ୍ ସବୁ ସଜାଡ଼ି ରଖିଲା । ତା'ପରେ ସେଇ ଅସଜଡ଼ା ଖଟରେ ଗଡ଼ିପଡ଼ିଲା ରେଜେଇ ଘୋଡ଼େଇ ହୋଇ । ଆଖି ଦୁଇଟା ସିନା ବନ୍ଦ ଥିଲା, କିନ୍ତୁ ସବୁ ଅନୁମାନ କରି-ପାରୁଥିଲା ସେ । ଅନ୍ୟ ଦିନେ ଏତିକିବେଳକୁ ବାଥ୍‌ରୁମ୍‌ରୁ ଚିତ୍କାର କରିଥାଆନ୍ତେ ଅମିତ୍—"ସୀମା, ଟାୱେଲ୍ ।" ଆଜି ଦରକାର ହେବନି, ଆଗରୁ ଟାୱେଲ୍ ନେଇ ପଶିଛନ୍ତି ସେ । ବେଶି ଆତ୍ମନିର୍ଭରଶୀଳତା ଦେଖେଇ ହେଉଛନ୍ତି ସିଏ ! କଡ଼ ଲେଉଟାଇଲା ସେ । ହେଇ, ବାଥ୍‌ରୁମ୍ କବାଟ ଖୋଲିଲା । ଡ୍ରେସିଂ ଟେବୁଲ୍ ସାମ୍ନାରେ ଠିଆ ହୋଇ ସ୍ଲେଟ ତଉଲିଆରେ

ଏଥର ମୁଣ୍ଡ ପୋଛୁଛନ୍ତି ସେ । ମିରର୍ ଉପରେ ପାଣିଛିଟା ପଡ଼ିବଣି ନିଶ୍ଚୟ । ଆଉ କେଇଁଦିନ ହୋଇଥିଲେ ଅସୀମା ପାଟିକରିଥାଆନ୍ତା, "ଓହୋ, କେତେଥର ଆଉ ତୁମକୁ ବୁଝେଇବି ? ବାଥ୍‌ରୁମ୍‌ରେ ଦେହ ପୋଛିପାରୁଛ, ମୁଣ୍ଡ ପୋଛିନେଲେ କ'ଣ କିଛି ବିଗିଡ଼ିଯିବ ?"

ହସି ହସି ଅମିତ୍ କହୁଥାଆନ୍ତେ, "ତା'ହେଲେ ମୋତେ ଗାଳି ଦେବାର ଗୋଟାଏ ସ୍କୋପ୍ ତୁମକୁ ମିଳିନଥାଆନ୍ତା ।"

"ଆହା ମରିଯାଉଥାଏଁ···ତୁମ ଉପରେ ପାଟି ନକଲେ ଯେମିତି ମୋର ଭାତ ହଜମ ହୁଏନି !"

"ହୁଏ କି ?" ଓଲଟି ପଚାରିଥାଆନ୍ତେ ଅମିତ୍ । ହସିଦେଉଥାଆନ୍ତା ସେ ।

ଆଜି କିନ୍ତୁ ତାହା ବି ସେମିତି ପଡ଼ିରହିଲା । ମୁଣ୍ଡ କୁଣ୍ଡା ସରିଲା ବାବୁଙ୍କର । ଏଥର ସାର୍ଟ ପ୍ୟାଣ୍ଟ ପିନ୍ଧି ଓଦା ତଉଲିଆ ଖଟରେ ପକେଇବାର ପାଳି । ତା'ପରେ ସଫା ରୁମାଲ୍‌ରେ କାନ ପରିଷ୍କାର ହେବ । ଏ ଗୋଟାଏ ଅଦ୍ଭୁତ ଅଭ୍ୟାସ । କାନ ଭିତରେ ମଇଳା ଥାଉ ନଥାଉ ସେଫ୍‌ଟିପିନ୍‌ଠାରୁ ଆରମ୍ଭ କରି ତା' କ୍ଲିପ୍ ପର୍ଯ୍ୟନ୍ତ ଯାହା ପାଇବେ କାନ ଭିତରେ ପୁରେଇବେ । ନୂଆ ନୂଆ ଜନ୍‌ସନ୍ ବଡ୍‌ସ କିଣି ଆଣି ଘରେ ରଖିଥିଲା ଅସୀମା । କିନ୍ତୁ ସେ ଡବାରେ ଭୁଲ୍‌ରେ ଥରେ ହାତ ଦେଇନଥିଲେ ଅମିତ୍ । ଗାଧୋଇ ସାରି ଇସ୍ତ୍ରୀକରା ରୁମାଲର କଣ କାନ ଭିତରେ ନପଶେଇଲେ ଯେମିତି ତାଙ୍କର କ'ଣ ଅଭାବ ରହିଯାଏ ।

ହଁ—ଏଥର ଜୋତା ପିନ୍ଧା ସରିଲା । ଜୋତା ରଙ୍ଗ ଓ ବ୍ରସ୍ ଠିକ୍ ସେମିତି ସବୁଦିନ ପଡ଼ି ରହିଥିବ ଡ୍ରଇଂରୁମ୍‌ର ସେଣ୍ଟର୍ ଟେବୁଲ ଉପରେ । ତା'ପରେ ଜଳଖିଆ ଖାଇବାର ପର୍ବ । ପ୍ଲେଟ୍‌ର ଘୋଡ଼ଣୀ ଉଠେଇ ରଖିଲେ । ସେଇଠି ଥରେ ଡାକିଲେ, "ସୀମା, ଖାଇବ ଆସ !"

ଶୋଇବା ଘରୁ ଶୁଖିଲା ଗଳାରେ ଅସୀମା କହିଥିଲା, "ମତେ ଭୋକ ନାହିଁ ।"

"ଆରେ ଆସ, ଦାନ୍ତ ଘଷିନ କି ?"

ପଚାରୁ ପଚାରୁ ପାଖକୁ ଚାଲିଆସି ମୁଣ୍ଡ ଆଉଁଷି ଦେଇଥିଲେ ଅମିତ୍ । ପୁଣି ଗୋଟାଏ ଭୁଲ ଅସୀମା କଲା । ସ୍ୱାମୀଙ୍କ ହାତ ଟିକିଏ ଛୁଇଁଦେଇଥିଲେ ସବୁ ମେଣ୍ଟିଯାଇଥାଆନ୍ତା । ସେତକ ନକରି ମୁଣ୍ଡ ଘୁଞ୍ଚେଇନେଇ ସେ କହିଲା, "ପରେ ଖାଇବି···"

ଅମିତ୍ ଗୋଟାଏ ମିନିଟ୍ ସେଇଠି ଠିଆ ହୋଇ ରହିଲେ । ତା'ପରେ ଯାଇ ଅଳ୍ପ କିଛି ଖାଇନେଇ ଉଠିଗଲେ । ସେଲ୍‌ଫରୁ ହେଲ୍‌ମେଟ୍ ନେବାବେଳେ ସ୍ତ୍ରୀ ଉଦ୍ଦେଶ୍ୟରେ କହି-ଦେଇଗଲେ, "ଆଜି ଡିଲର୍ସ କନ୍‌ଫରେନ୍‌ସ । ଫେରୁ ଫେରୁ ଡେରି ହେବ । ରାତିରେ ଖାଇବା ପାଇଁ ଅପେକ୍ଷା କରିବନି ।"

ବାରଣ୍ଡାରୁ ଅମିତ୍ ସ୍କୁଟର୍ ବାହାର କରି ନେଲେ ରାସ୍ତାକୁ । କିଛି ସମୟର ନୀରବତା । ସ୍କୁଟର୍ ପୋଛୁଛନ୍ତି ନିଶ୍ଚୟ । ଏଇ କିକ୍ କଲେ । ଦୁଇଟା କିକ୍‌ରେ ଷ୍ଟାର୍ଟ ହେଲା । ସେମିତି

ଷ୍ଟାର୍ଟ କରି କେଇ ମିନଟ୍ ରହିଲେ । ଅସୀମା ଜାଣେ ଏ ଅପେକ୍ଷା ତା'ରି ପାଇଁ । ଅମିତ୍ କହନ୍ତି, ଅଫିସ୍ ଗଲାବେଳେ କୁଆଡ଼େ ସେ ହାତ ହଲେଇ ବିଦାୟ ନଦେଲେ ଦିନଟା କେମିତି ଅପୂର୍ଣ୍ଣ ରହିଯାଏ । ମୁହଁ ମୋଡ଼ିଲା ସେ । ଖାଲି ମନ ଭୁଲେଇବା କଥା ! ସତେ ଯଦି ଦିନ ତୁମର ଅପୂର୍ଣ୍ଣ ରହିଯାଉଛି ଆଉ ଥରେ 'ଯିବି' କହିଦେବାକୁ ବାଧିଯାଉଛି ପରା !

ସ୍କୁଟର୍ ଚାଲିଗଲା ।

ହଁ, ବେଶି ରାଗ ଦେଖଉଛନ୍ତି ! ଅସୀମା ନ ହେଲେ ମରିଯାଉଛି ସ୍ୱାମୀ ପ୍ରେମ ପାଇଁ ! ସେ ତ ଆଉ ଆଗକାଳର 'କବିତା-ବନିତା-ଲତା' ହେଇନି ଯେ ଆଶ୍ରୟଟିଏ ନିହାତି ଦରକାର । ଯାଆନ୍ତୁ ମ, ଯାଆନ୍ତୁ !

ତଥାପି କାହିଁକି ଛାତି ଭିତରେ କଷ୍ଟ ହେଉଛି ? ମନ ଭଲ ଲାଗୁନି ? ଖାଇବାକୁ, ଗାଧୋଇବାକୁ ଇଚ୍ଛା ମଧ୍ୟ ନାହିଁ । କାହିଁକି ଅନୁତାପରେ ସନ୍ତୁଳି ହେଉଛି ସିଏ ? ଏମିତି କାହିଁକି ହୁଏ ?

ଧୀରେ ଧୀରେ ବିଛଣାରୁ ଉଠି ଡ୍ରେସିଂ ଟେବୁଲ ଉପରୁ ଅମିତଙ୍କ ଫଟ ଆଣିଲା । ମୁହଁ ପାଖକୁ ନେଇଆସି ମନକୁ ମନ କହିବା ପରି କହିଲା, "ତୁମେ ମନ ଖରାପ କରିଛ ? ଦେଖ, ତୁମକୁ କଷ୍ଟ ଦେଇ କି କଷ୍ଟ ମୁଁ ପାଉଛି ଏଠି । ଆଉ ଆଦୌ ନୁହଁ । କେବେହେଲେ ଅଭିମାନ କରିବି ନାହିଁ । ତୁମେ ଠିକ୍ କୁହ, ମୁଁ ଅଭିମାନ କଲେ ନିଜକୁ ନିୟନ୍ତ୍ରଣରେ ରଖିପାରେନାହିଁ । ଅଭିମାନଟା ବଢ଼ି ବଢ଼ି ମାତ୍ରାଧିକ ହୋଇଯାଏ ଯେମିତି । ବିଶ୍ୱାସ କର, ତୁମ ଉପରେ ଆଦୌ ରାଗିବିନି—ଅଭିମାନ ବି ନୁହଁ—କେବେହେଲେ ନୁହଁ ।"

ଫିଲ୍ମ ଫେୟାର୍‌ଟା ରଖିଦେଲା ଅସୀମା । ଯେତେବେଳେ—ସମସ୍ତ ଇ କଟେନା । ଆଜି ତାଙ୍କର ଡିଲର୍ସ କନ୍‌ଫରେନ୍‌ସ ହବାର ଥିଲା । ମିଟିଙ୍ଗ୍ ପରେ ଡିନର୍ । ଫେରୁ ଫେରୁ ଦଶ ବାଜିବ ତ । ମଣିଷଟି ତେର ଘଣ୍ଟା ପରେ ଘରକୁ ଫେରିବ ! ଆହା—କି କଷ୍ଟ ସେ ନ କରୁଛନ୍ତି ଦରମାଗଣ୍ଡାକ ରୋଜଗାର କରିବା ପାଇଁ । ସେ ଏଥିରେ ଝଗଡ଼ା କରୁଛି କେମିତି ? ଛିଃ—

ନିଜ ଉପରେ ଗୁଡ଼ାଏ ବିରକ୍ତ ହୋଇସାରି ଅସୀମା ସମୟ କଟେଇବା କଥା ଚିନ୍ତା କଲା । କିଛି ବେଳ ରେକର୍ଡ଼ ଶୁଣି ବରବାଦ୍ କରିହେଇ ପାରେ । ଟେଲିଭିଜନ୍‌ରେ ଡ୍ରାମା ଫ୍ରାମାଟାଏ ଅଛି ବୋଧେ—ସେଇଠି କଟିଯିବ ଅଧଘଣ୍ଟାଏ, ପଚିଶ ମିନଟ୍ । କିଛି ନ ହେଲେ ଶେଷ ହତିଆର ଅଛି ଫିଲ୍ମ ଫେୟାର୍ । ତାକୁ ପଢ଼ି ସମୟ ନଷ୍ଟ କରିହେଇ ପାରେ । ବାସ୍, ହୋଇଗଲା !

ଫିଲ୍ମ ଫେୟାର୍‌ର ଶେଷ ପୃଷ୍ଠା ପଢ଼ି ସାରିବା ବେଳକୁ କେମିତି ବ୍ୟସ୍ତ ଲାଗିଲା ଅସୀମାକୁ । ଦଶଟା ବାଜିସାରିଲଣି, ଫେରୁନାହାନ୍ତି କାହିଁକି ସେ ! ହଠାତ୍ ମନକୁ ମନ ହସିଲା ସେ । ଅମିତ୍ ଏକଦମ୍ ଆଶ୍ଚର୍ଯ୍ୟ ହୋଇଯିବେ । ସେ ଖାଲି ଭାବି ଭାବି ଆସୁଥିବେ ଯେ ସ୍ତ୍ରୀ ସେମିତି ମୁହଁ ଫୁଲେଇ, ନଖାଇ ଅଭିମାନ କରି ବସିଥିବ । ହଠାତ୍ ଘରେ ପଶୁ ପଶୁ

ପଡ଼ ତାଙ୍କ ଦୁଇ ହାତରେ ଜାବୁଡ଼ି ଧରି ଅସୀମା ଚେଷ୍ଟା କରିଦିଏ—ତେବେ ? ସେଇ ଆନନ୍ଦମୟ ମୁହୂର୍ତ୍ତଟିର ଭାବନାରେ ହଜିଗଲେ ସେ ।

ତାଙ୍କୁ ଚମକାଇ ଦେଇ ରାସ୍ତା ଉପରେ ମଟରସାଇକେଲ୍‌ଟାଏ ଗଲା । ଛାତ ଉପରେ ଛେପ ପକେଇଦେଇ ବିରକ୍ତ ହୋଇଗଲେ ସେ । କିଏ ମ ଏତେ ରାତିରେ ସାଇଲେନସର୍ ଖୋଲି ମଟରସାଇକେଲ ଫଟ୍‌ଫଟ୍-କରି ଯାଉଛି ?

ଗଲେ କୁଆଡ଼େ ଅମିତ୍ ? ସାଢ଼େ-ଦଶ ଯେ ହେଲାଣି । ତେବେ ବାଟରେ କ’ଣ ସ୍କୁଟର୍…କିଭ ଜୋର୍‌ରେ କାମୁଡ଼ି ନେଇ ସବୁ ଠାକୁରଙ୍କୁ ଥରେ ଥରେ ଡାକିଗଲେ ସେ । କି ଅମଙ୍ଗଳିଆ କଥା ମୁଣ୍ଡରେ ପଶୁଛି ! ଡାହାଣ ଆଖିଟା ବି ସଉ ଶୁଙ୍ଘେଇବା ଭଳି ଡେଇଁଛି । ଯା ମ—ଆଖି ଡେଇଁବା ସାଙ୍ଗରେ ଭଲ ମନ୍ଦର କି ସମ୍ପର୍କ ? ଡାକ୍ତରମାନେ କହନ୍ତି ଆଖିର ମାଂସପେଶୀ ଦୁର୍ବଳ ହେଲେ ଏମିତି ହୁଏ । ନିଜକୁ ସାନ୍ତ୍ୱନା ଦେଲେ ସେ ।

ହୁଏତ ସ୍କୁଟର୍‌ଟା ଖରାପ ହୋଇଯାଇଛି ! ଏତେ ରାତିରେ ତ ଆଉ ମେକାନିକ୍ ମିଳି ନଥିବେ । ଗଡ଼େଇ ଗଡ଼େଇ ଆଣୁଥିବେ ଅମିତ୍ । ଆହା ! ଏଇ ରବିବାର ଦିନ ଯେମିତି ହଉ ସ୍କୁଟର୍ ସର୍ଭିସିଙ୍ଗ୍ ପାଇଁ ନିଶ୍ଚୟ ଦିଆଯିବ । ବ୍ରେକ୍ ଭଲ ଧରୁନି । ପଛ ପଟ ଟାୟାର୍ ଦୁଇ-ତିନିଥର ପଙ୍କଚର୍ ହେଲାଣି । ବଦଳେଇବାକୁ ହେବ ଚକ, ସେ କହୁଥିଲେ ।

ନା—ବାଜେ କଥା ସେ ଭାବିବେନି । ଟେବୁଲ ଉପରୁ ପତ୍ରିକାଟିଏ ଆଣି ପୃଷ୍ଠା ଓଲଟାଇଲେ ଅସୀମା ।

ଆରେ…ଏଗାରଟା ବାଜିଲାଣି ! କ’ଣ ସେ କହିବ ଅମିତ୍‌ଙ୍କୁ ? ଏତେ ଟିକେ ଭଲ ଚିନ୍ତା ଥାଆନ୍ତା ସ୍ତ୍ରୀ ପାଇଁ ? ଘରଟାରେ ସେ ଏକା ପଡ଼ିଛି, ମୁଣ୍ଡରେ ପଶେନି ତାଙ୍କର ।

ହଠାତ୍ ଗୋଟେ ସନ୍ଦେହଟିଏ ତା’ର ହେଲା । ମୁଣ୍ଡ ଠିକ୍ ଅଛି ତ ଅମିତ୍‌ଙ୍କର ? ଡିନର୍ ଆଗରୁ ଡ୍ରିଙ୍କ୍‌ସର ମାତ୍ରା ଟିକିଏ ବେଶି ହୋଇଯାଇନି ତ ? ଏମିତିରେ ପାର୍ଟିଫାର୍ଟିରେ ନିଜକୁ ଖୁବ୍ ନିୟନ୍ତ୍ରଣରେ ରଖିପାରନ୍ତି । ହେଲେ କି ବିଶ୍ୱାସ ? ଆଜି ପାଖରେ ସ୍ତ୍ରୀ ନାହିଁ, ଜାଣି କୌଣସି ଲଗାମ ବି ନାହିଁ । ପୁଣି ମନ ଭଲ ନଥିଲା ତାଙ୍କର । ହୁଏତ…ହୁଏତ ହୋସ୍ ନାହିଁ ତାଙ୍କର ।

ହେ ପ୍ରଭୁ, ହେ ଜଗନ୍ନାଥ, ସେ ମାତାଲ ହୋଇଥାଆନ୍ତୁ କି ହୋସ୍ ହରାଇ ବସିଥାଆନ୍ତୁ, ମାତ୍ର ଘରକୁ ଭଲରେ ଭଲରେ ଫେରିଆସନ୍ତୁ । ମୁଁ ଜମା ରାଗିବିନି, ପଦେ ଆକଟିକରି କହିବିନି । ଘରକୁ ଭଲରେ ଫେରିଆସନ୍ତୁ—ହେ ଚଣ୍ଡୀ, ହେ ମା’ ମଙ୍ଗଳା ! ଢୋକ ଗିଳିଲା ଅସୀମା । ତଣ୍ଟିରେ କ’ଣଟାଏ ଅଟକିଲାପରି ଲାଗୁଛି ।

ନା—ଏମିତି ଦୁର୍ବଳ ହେଇ ପଡ଼ିବନି ସେ । ଯଦିବା ଯେମିତି କିଛି ହୋଇଥାଆନ୍ତା, ତେବେ ଅଜସ୍ର ସିନ୍ଧା ତ ଗାଡ଼ିରେ ଛାଡ଼ି ଦେଇଥାଆନ୍ତା । ସିନ୍ଧା ଘରକୁ ରାସ୍ତା ଏଇ ବାଟରେ । ଅତୀତରେ ଅନେକଥର ସ୍କୁଟର୍ ଖରାପ ହେଲେ ବା ଅଫିସ୍‌ରେ ଡେରି ହେଲେ ଅମିତ୍ ସିନ୍ଧା ଗାଡ଼ିରେ ଫେରିଛନ୍ତି । ଆଜି ବି ସେୟା ହୋଇପାରିଥାନ୍ତା ।

ତା'ହେଲେ···ତା'ହେଲେ କ'ଣ ତାଙ୍କୁ ମିଛ କହିଗଲେ ଅମିତ୍ ? କନ୍‌ଫରେନ୍‌ସ, ଡିନର୍ ଏସବୁ ବାହାନା ମାତ୍ର ? ଅସୀମା ତ ଯତ୍ନ କରି ମିଛ ପରଖିବାକୁ ଯାଇପାରିବନି । ତେବେ ଏମିତି ଗୋଟାଏ ପେଶନା କାହିଁ ସେ ଆଉ କେଉଁ କାଣ୍ଡବନ୍ଧୁ ସହିତ ସମସ୍ତ କଟାଉନାହାନ୍ତି ତ ?

ଅସୀମାର ଆଖିରୁ ଝରଝର ହୋଇ ଗୁଡ଼ାଏ ଲୁହ ବୋହିଗଲା । ଏତେ ବଡ଼ ଧୋକ୍‌କା କ'ଣ ସେ ସତରେ ଦେବେ ? ନା—ସେ ସେମିତି ନୁହନ୍ତି । ତାଙ୍କର ଭଲପାଇବାର ଅନ୍ତ ନାହିଁ । ଅଫିସ୍ ଗଲାବେଳେ ବହୁବାର କହନ୍ତି, "ଆଜି ତୁମକୁ ଛାଡ଼ି ଅଫିସ୍ ଯିବାପାଇଁ ମନ ହେଉନି ।"

"ମତେ ନେଇଯାଅ ନା ସାଙ୍ଗରେ, ପ୍ଲିଜ୍ !"

"ନାଃ, ମୋ ସାମ୍ନାରେ ତମେ ବସିଲେ ଯାହା ଅଫିସ୍ କାମ ହେବ ତ ଛାଡ଼ ।"

"ବିଶ୍ୱାସକର, ମୁଁ ଆଦୌ ଡିଷ୍ଟର୍ବ କରିବ ନାହିଁ ।"

"ତୁମେ ଯିନା କରିବ ନାହିଁ, କିନ୍ତୁ ତୁମର ଏହି ସୁନ୍ଦର ମୁହଁକୁ ଦେଖି ମୁଁ ହୋସ୍‌ରେ ରହିବ କେମିତି ? ···ବରଂ କି ଭଲ ହୁଅନ୍ତା କହ, ମୋ ପାଖରେ ଯଦି ତାରିଣୀ କାଠି ଥାଆନ୍ତା—ତୁମକୁ ସେ କାଠି ଛୁଆଁଇ ଫୁଲଟିଏ କରି ମୋ କୋଟ୍‌ରେ ଲଗେଇ ଅଫିସ୍ ନେଇଯାଆନ୍ତି । ଯେତେବେଳେ ଇଚ୍ଛା ହୁଅନ୍ତା ତୁମକୁ ଟିକିଏ ଆଦର କରିଦେଇ ପୁଣି ମୋ କାମ କରନ୍ତି···ଭଲ ହୁଅନ୍ତା ନାହିଁ ?"

"ଧେତ୍···"

ତା' ଅମିତ୍ ଭଲ—ଖୁବ୍ ଭଲ । ଆଉ କାହା ଆଡ଼େ ଭୁଲରେ ବି ଚାହିଁବେନି । ହେଲେ···ହେଲେ ସେ ମଣିଷ ତ ! ଅପଷ୍ଟ ହୋଇପଡ଼ିଲେ ଅସମ୍ଭବ କ'ଣ ? ସତେ ତ, ତାଙ୍କ ଜୀବନକୁ ଅପଷ୍ଟ କରିଦେଇଛି ଅସୀମା । ମାନ, ଅଭିମାନ, ନାନା କଟକଣା—ଏ ଭିତରେ ଜଣେ ଅନୋଃଶ୍ୱାସୀ ହୋଇଯାଇ ଭିନ୍ନ ସ୍ୱାଦ ଖୋଜିବା ଅସମ୍ଭବ କି ?

ଶାନ୍ତି ଟିକିଏ ପାଇବା ପାଇଁ ଅମିତ୍ ଯଦି ଅନ୍ୟ ସାଥୀ ଖୋଜିନେଇଛନ୍ତି, ନିଅନ୍ତୁ । କିନ୍ତୁ ଆଜି ଠିକ୍ ଠିକ୍ ଘରକୁ ଫେରିଆସନ୍ତୁ । ଚନ୍ଦ୍ରାରେ ମିଳେଇଯାଉଛି ଅସୀମା । ଅମିତ୍‌ଙ୍କୁ ଆଦୌ କେବେହେଲେ ବାଧା ଦେବନି ସେ । ଦରକାର ପଡ଼ିଲେ ସେ ବରଂ ଅନସୂୟା ହୋଇଯିବ । କିନ୍ତୁ ଆଜି ଆଉ ଡେରି ନହେଉ, କିଛି ଅଘଟଣ ନଘଟୁ । ଏମିତି ଆଶଙ୍କାରେ, ଚନ୍ଦ୍ରାରେ ସେ ସରଗଲାଣି ଦେ—"ହେ ନାରାୟଣ, ହେ ଜଗନ୍ନାଥ !"

ହାତ ଯୋଡ଼ି, ଆଖି ବୁଜି କେତେବେଳ ବସିରହିଥିଲା ଅସୀମା । ଗେଟ୍ ପାଖରେ କାର୍ ରହିବାର ଶବ୍ଦରେ ଧ୍ୟାନ ଭାଙ୍ଗିଗଲା ତା'ର । ଆସିଗଲେ ତ ! ଦାଣ୍ଡକବାଟ ଖୋଲି ବାରଣ୍ଡାକୁ ଧାଇଁଗଲା ସେ । ଅଜୟଙ୍କ ସିଲ୍ଭା ଗାଡ଼ି ନୁହେଁ—ଅଫିସ୍ କାର୍ କି ? ହେଇଥିବ !

ଆରେ, କବାଟ ଖୋଲି ବାହାରକୁ ଆସୁନାହାନ୍ତି କାହିଁକି ? ଉହୁଙ୍କି ଦେଖିଲା ଅସୀମା—ଆଖି ଦୁଇଟା ବନ୍ଦ କରି ଅମିତ୍ ପଛ ସିଟ୍‌ରେ ଶୋଇପଡ଼ିଛନ୍ତି । ହୁଁ—ତା' ହେଲେ ତା'ର

ସନ୍ଦେହ ଅମୂଳକ ନଥିଲା । ଆଜ ପାର୍ଟିରେ ମାତ୍ରା ଟିକିଏ ବେଶି ହୋଇଛି !

"ଯାବ୍, ଘର୍ ହୋ ଗୟା ଯାବ୍ !"

"ଏଁ—ହଁ ହଁ"—ଧଡ଼ପଡ଼ ହୋଇ ଅମିତ୍ ଉଠି ବାହାରକୁ ଆସିଲେ । ଗାରଡ଼େଇ ଗାରଡ଼େଇ ସ୍ୱାମୀକୁ ଲକ୍ଷ୍ୟ କଲା ଅସୀମା । ଆଖି ଲାଲ୍ ହୋଇନ । ପାଦ ଦୁଇଟି ବେତାଳିଆ ମଧ୍ୟ ପଡ଼ୁନ । ଅତ୍ୟଧିକ ମଦ୍ୟପାନର ଲକ୍ଷଣ ନାହିଁ । ହାଲିଆ ହୋଇ ଶୋଇପଡ଼ିଥିଲେ ବୋଧହୁଏ ।

କଲୁ—କଲୁ ଏତେ ଡେରି ? ଅଫିସିଆଲ୍ ପାର୍ଟିରେ ଏତେ ଡେରି କ'ଣ ? ନିଶ୍ଚେ କେଉଁ ବାନ୍ଧବୀ ପାଖରେ ସମସ୍ତଙ୍କ କଟାଇ ଦେଖାଇ ହେବାପାଇଁ ଅଫିସ୍ କାର୍‌ରେ ଘରକୁ ଫେରିଛନ୍ତି ଅମିତ୍ । ଓ—ଅସୀମାକୁ ବୋକା ଭାବିଛନ୍ତି ! ତା' ଆଖିରେ ଧୂଳି ଦେଇ କାମ କରିବା ଏତେ ସହଜ ନୁହଁ ମ ! କିଛି ମୁହୂର୍ତ୍ତ ଆଗରୁ ତରଳ ଦ୍ରବୀଭୂତ ହୋଇ ଯାଇଥିବା ମନଟି ପୁଣି କଠିନ ହୋଇଗଲା ।

"ସର ସୀମା !"

ଅନ୍ଧାରେ ଶାଢ଼ି କାନି ଗୁଡ଼େଇନେଲା ଅସୀମା, "—ଏଇଟା ଘରକୁ ଫେରିବାର ସମୟ ?"

□□□

# ପ୍ରବାହ

ଆର୍ମଚେୟାର୍‌ରେ ଗୋଡ଼ ଲମ୍ବାଇ ବସି ଶୀତଦିନର ଖରାଟା ଉପଭୋଗ କରୁଥିଲେ ଲତିକା—ମିସେସ୍ ଲତିକା ରତ୍ନାକରନ୍ । ଖରାଟା କାଟୁନି ଆଦୌ; ବରଂ ଦେହକୁ ବଡ଼ ଆରାମ୍ ଲାଗୁଛି । ଲନ୍‌ର ଘାସଗୁଡ଼ାକ ବଢ଼ିଗଲଣି, ଆଜି ସନ୍ଧ୍ୟାବେଳେ କାଟିବାକୁ ହେବ । ମାଳୀଟାକୁ କହି ମଧ୍ୟ ହେଉନି । ପଇସା ଦେଲେ ମଧ୍ୟ ଆଜିକାଲି କେହି କାମ କରିବାକୁ ନାରାଜ । ବଗିଚାର ପ୍ରତ୍ୟେକଟି ଗଛ ନିଜ ହାତରେ ବଢ଼ାଇଛନ୍ତି ସେ । ସବୁଠି ତାଙ୍କର ସ୍ନେହ ପ୍ରଚ୍ଛନ୍ନ । କିନ୍ତୁ ଏଇ କ୍ୟାକ୍‌ଟସ୍ ଗଛଗୁଡ଼ାକ ପ୍ରତି ଖୁବ୍ ଦୁର୍ବଳତା ତାଙ୍କର । ବହୁ କଷ୍ଟରେ ପ୍ରାୟ ଷାଠିଏ-ପଇଁଷଠି କିସମର କ୍ୟାକ୍‌ଟସ୍ ସଂଗ୍ରହ କରିଛନ୍ତି । ପ୍ରତ୍ୟେକଟି ପଛରେ ଗୋଟିଏ ଗୋଟିଏ ଇତିହାସ । କେଉଁଟି ଆଗ୍ରାରୁ ଆସିଛି ଓ୍ୱିଙ୍ଗ କମାଣ୍ଡର୍ ମିଶ୍ରଙ୍କ ଘରୁ ତ କେଉଁଟି ଆସିଛି ବ୍ୟାଙ୍ଗାଲୋର୍‌ର ବ୍ୟବସାୟୀ ମିଷ୍ଟର ଜନ୍ ଆବ୍ରାହମ୍‌ଙ୍କ ଗାର୍ଡେନ୍‌ରୁ ।

ହସନ୍ତି ସ୍ୱାମୀ । ଥଟ୍ଟା କରନ୍ତି ପିଲାଏ, "ମାମା, ଏଇ କଣ୍ଟାଗଛଗୁଡ଼ାକ ପ୍ରତି ତୁମର ଏତେ ଶ୍ରଦ୍ଧା କାହିଁକି ? ସେତିକି ଯତ୍ନରେ ତ ଏ ବଗିଚାରେ ଫୁଟେଇ ପାରନ୍ତ ଗୋଲାପ, ରଜନୀଗନ୍ଧା ବା ଅନ୍ୟ କିଛି ସିଜ୍‌ନାଲ୍ ଫ୍ଲାଓ୍ୱାର ।" ଝିଅ ସୁଦୀପାର ଫୁଲ ପ୍ରତି ଦୁର୍ବଳତା ସେ ଜାଣନ୍ତି । ସେଥିପାଇଁ ବୋଧେ କ୍ୟାକ୍‌ଟସ୍ ସହିତ ଅନ୍ୟ ଫୁଲଗଛ ଲଗେଇବା ଆରମ୍ଭ କରିଥିଲେ ଲତିକା । ପୁଅ ଆଶିଷ କିନ୍ତୁ ଅନେକଟା ତା' ବାପାଙ୍କ ପରି । ଭେରି ଡାଉନ୍ ଟୁ ଆର୍ଥ । ସେ କହେ, "ବରଂ କିଚେନ୍ ଗାର୍ଡ଼ନ୍ କର ମାମା ! କିଛି ନହେଲେ ସଜ ପନିପରିବା ତ ଖାଇବାକୁ ମିଳିବ । ଏ ଫୁଲ—କଣ୍ଟା କ୍ୟାକ୍‌ଟସ୍—କ'ଣ ମିଳିବ ଏଥିରୁ ?" ତା' ମଧ୍ୟ କରିଥିଲେ । ଘର ପଛପଟେ ଅତି ଯତ୍ନରେ ଲଗାଇଥିଲେ ବାଇଗଣ, ଟମାଟୋ, ଭେଣ୍ଡି, ଶାଗ, ଧନିଆପତ୍ର ।

"କିଛି କନ୍‌ଷ୍ଟ୍ରକ୍‌ଟିଭ୍ ଭାବ ଗ୍ରହଣ କର ଲତିକା—କ'ଣ ମିଳୁଛି ଏ ବଗିଚାରୁ ? ଦିଲ୍ଲୀରେ ତ ସଜ ପରିବାର ଅଭାବ ନାହିଁ । ଆଉ ପଇସା ଦେଲେ ଫ୍ଲୋରିଷ୍ଟଠାରୁ ସବୁରକମର ଫୁଲ ମିଳିବ । ଏମିତି ନିଜ ଶକ୍ତିର ଅପଚୟ କରୁଛ କାହିଁକି ? ବରଂ ଆଉ କିଛି କର—କିଛି ସୋସିଆଲ୍ ଓ୍ୱାର୍କ..."

ସ୍ୱାମୀଙ୍କ କଥାରେ ସେ ପ୍ରତିବାଦ କରିନଥିଲେ । ବଗିଚା କାମ ସହ ସମାଜସେବା କାମ ଆରମ୍ଭ କରିଥିଲେ ଲତିକା । ସହର ତଳି ଗାଁମାନଙ୍କୁ ଯାଇ ସ୍ୱାସ୍ଥ୍ୟ ସଫେଇଠାରୁ ଘର ଘର

ଭୁଲ ପରିଷ୍କାର-ପରିଛନ୍ନତା ସମ୍ବନ୍ଧରେ ବୁଝେଇବା ଆରମ୍ଭ କରିଥିଲେ ସେ । ସେଥିରେ କିନ୍ତୁ ସେ ସନ୍ତୁଷ୍ଟ ହୋଇନଥିଲେ । ତାଙ୍କ ସାଙ୍ଗରେ ଥିବା ଅନ୍ୟ ମହିଳାମାନେ ନାମ କରିବାକୁ ସ୍ୱହାନ୍ତି ବିନା ପରିଶ୍ରମରେ ଏବଂ ନିଜ ଫଟୋ ଦେଖିବାକୁ ସ୍ୱହାନ୍ତି ଫେମିନା, ଇଭ୍ସ୍ ଉଇକ୍ ପୃଷ୍ଠାରେ—କେଉଁ ଅନାଥାଶ୍ରମରେ ପିଲମାନଙ୍କୁ ଖେଳଣା ବାଣ୍ଟୁଥିବା ବା କେଉଁ ବୁଢ଼ୀ ନାରୀମାନଙ୍କୁ କମ୍ବଳ ଦାନ କରୁଥିବା । ଏସବୁ ଜାଣିବା ପରେ ମନ ଛୁଡ଼ିଯାଇଥିଲ ମିସେସ୍ ରତ୍ନାକରନ୍ଙ୍କର । ଖରାରେ ବୁଲି ବୁଲି ଶରୀର ନଷ୍ଟ କରିବା ମୂର୍ଖାମୀ । ସ୍ୱା ଅପେକ୍ଷା ଘରେ ବସିବା ବରଂ ଭଲ । ନିଜ ଘରର, ପିଲଛୁଆ ଓ ସ୍ୱାମୀଙ୍କର ଯତ୍ନନେବା କିଛି କମ୍ କଥା ନୁହେଁ ।

ଅଥଚ ସୁଦୀପା ଯେତେବେଳେ ଘର ଛାଡ଼ି ପଞ୍ଜାବୀ ପୁଅଟିଏ ସାଙ୍ଗରେ ଚଣ୍ଡୀଗଡ଼ ଗ୍ଳଲଗଲ, ସ୍ୱାମୀ ତାଙ୍କୁ ଏଥିପାଇଁ ଆକ୍ଷେପ କରିଥିଲେ, "ପିଲମାନଙ୍କୁ ତୁମେ ମଣିଷ କରିପାରିଲନି ଲଲିତା । ତୁମରି ଭୟରେ ସୁଦୀପା ଘର ଛାଡ଼ି ଗ୍ଳଲଗଲ । ନହେଲେ ମୋ ଝିଅ ସେ—ମତେ ଅନ୍ତତଃ ଥରେ କହିଥାଆନ୍ତା ତା'ର କେଉଁଠି ଇଚ୍ଛା ଅଛି ବିବାହ କରିବାକୁ । ଆଶିଷ ବ୍ୟସ୍ତ ହୋଇ ଟ୍ରଙ୍କକଲ କରିଥିଲ ବମ୍ବେରୁ—"ମାମା, ତୁମେ ଅତି ବେଶି ଷ୍ଟ୍ରିକ୍ଟ ହୋଇଗଲ । ସବୁ କଥାରେ ଏତେ ଶାସନ·· କେତେ ଦିନ ଚଳିଥାଆନ୍ତା ବିଗ୍ଳରୀ ।" ସୁଦୀପା ଲେଖିଯାଇଥିଲ ଛୋଟ ଚିଠିଖଣ୍ଡେ—"ନା ମାମା, ପାରିଲନି । ଘରେ ଆଉ ବେଶି ଦିନ ରହିଥିଲେ ନିଃଶ୍ୱାସ ରୁଦ୍ଧ ହୋଇ ମରିଯାଇଥାଆନ୍ତି । ମଳୟ ପବନ ପରି ମୋ ଜୀବନରେ ଜସ୍‌ଜିତଙ୍କ ଆଗମନ । ମୁଁ ଜାଣେ, ତୁମେ ଏ ବିବାହ କେବେ ହେବାକୁ ଦେଇନଥାନ୍ତ । ତାଙ୍କୁ ବିବାହ କରିବାକୁ ମୁଁ ଏ ଘର ଛାଡ଼ିଛି ।"

ଛାତି ଥରାଇ ଦୀର୍ଘ ନିଃଶ୍ୱାସ ନେଲେ ଲଲିତା । ସତରେ ସେ ହାରିଯାଇଛନ୍ତି । ଆଜି ମନେହେଉଛି ଏତେ ବର୍ଷର ତପସ୍ୟା ଯେମିତି ସବୁ ବୃଥା । ପିଲଙ୍କୁ ଉପଯୁକ୍ତ ମଣିଷ କରିବା ପାଇଁ ଶାସନ କରୁଥିଲେ ଲଲିତା; ସେମାନଙ୍କ ଉପରେ ନିଜର ଆଧିପତ୍ୟ ବିସ୍ତାର କରିବାକୁ ନୁହେଁ—ଅଥଚ ସମସ୍ତେ ତାଙ୍କୁ ଭୁଲ ବୁଝିଲେ । ପିଲଙ୍କୁ ଶାସନ କରିବାର ଅଧିକାର କ'ଣ ମା'ର ନାହିଁ ?

ସେ ସବୁବେଳେ ସ୍ୱହୁଁଥିଲେ ଜୀବନରେ କିଛି କଷ୍ଟ ନପାନ୍ତୁ ସୁଦୀପା । ଗୋଟିଏ ବୋଲି ଝିଅ ତାଙ୍କର । ସେଥିପାଇଁ ବୋଧେ ତାକୁ ଅତି ଗେହ୍ଲା ନକରି ବରଂ ସବୁ ରକମ କାମଦାମ ଶିଖାଇବା ଆରମ୍ଭ କରିଥିଲେ । କେତେ କଟୂକ୍ତି ଶୁଣିଛନ୍ତି ସେଥିପାଇଁ । ମୁହଁ ଫୁଲଇ ସୁଦୀପା କହେ, "ତୁମେ ଯେମିତି କାମ କରାଉଛ ନା କୌଣସି ସାବତ ମା' ମଧ୍ୟ କରେଇବନି ।" ନିଜ ଘର ଓଳେଇବା, ବିଛଣା ସଜାଡ଼ିବା, ନିଜ ଲୁଗା କାଚିବା—ଏସ୍ବା ତ—ନିଜ କାମ ପାଇଁ ଅନ୍ୟ ଉପରେ ନିର୍ଭର ନକରିବା ପାଇଁ ଶିଖେଇବାଟା କ'ଣ ଭୁଲ୍ ?

"ଦୀପାକୁ ପାଠ ପଢ଼ିବାକୁ ଦିଅ ଲଲିତା—କାମ ତ ଜୀବନ ଯାକ କରିବ । ଏବେ ଟିକେ ଆରାମରେ ଚଳୁ"—ଗମ୍ଭୀର ଭାବରେ ଖବରକାଗଜ ପଢ଼ି ପଢ଼ି ମିଷ୍ଟର ରତ୍ନାକରନ୍ କହନ୍ତି ।

ବୁଝନ୍ତି ଲତିକା, ସୁଦୀପା ତା ଡ୍ୟାଡ ପାଖରେ ନାଲିସ୍ କରୁଛି ତାଙ୍କ ବିରୁଦ୍ଧରେ ।

ଏଇତ ସେଦିନର କଥା । କାଲି ପରି ଲାଗୁଛି । କଲେଜରୁ ଫେରି ସୁଦୀପା ଫାଟିପଡ଼ିଲା ଯେମିତି । ଗର୍ଜିଉଠିଲା, "ମାମା, ସେ ସବୁ କ'ଣ ହେଉଛି ? ମୋ ଚିଠି ତୁମେ ଖୋଲିଲ କାହିଁକି ? ଦିସ୍ ଇଜ୍ ଭେରି ବ୍ୟାଡ୍ ମ୍ୟାନର୍ । ମୋର କ'ଣ ଏତିକି ସ୍ୱାଧୀନତା ନାହିଁ ? ଏଘରେ ପ୍ରତ୍ୟେକ ଚିଠି ମୋର ଯାଞ୍ଚ ହେବ । କେଉଁ ପୁଅ ଫୋନ୍ କଲେ କୈଫିୟତ୍ ଦେବାକୁ ହେବ । ଓଃ—ଦିସ୍ ଲାଇଫ୍ ଇଜ୍ ହେଲ୍ । ଏଠି ପଡ଼ି ମନ ଖୁସି ହୋଇ ଯାଇଥିବ ! ଅନୁପ ମୋର ପ୍ରେମିକ ନୁହେଁ, ପେନ୍‌ଫ୍ରେଣ୍ଡ, ବୁଝିଲ !" ଧଡ଼ାସ କରି ବୁଲିପଡ଼ି ନିଜ କୋଠରୀକୁ ଚାଲିଯାଇଥିଲା ସୁଦୀପା । ହାଁକରି ତା' ମୁହଁକୁ ଚାହିଁ ସବୁ ଶୁଣିଯାଇଥିଲେ ଲତିକା । ଭରିଆସୁଥିବା ଆଖିରୁ ଲୁହ ଦି' ଟୋପା ଗଡ଼ିଆସିବା ପୂର୍ବରୁ ଶୁଖିଯାଇଥିଲା ଆଶିଷର କଥା ଶୁଣି । ଭଉଣୀର ପକ୍ଷ ସମର୍ଥନକରି ଆଶିଷ କହିଥିଲା, "ସୁଦୀପା ବଡ଼ହୋଇଗଲାଣି ମାମା । ଭଲ ମନ୍ଦ ବୁଝିବାର ଶକ୍ତି ତା'ର ହୋଇଛି । ତାକୁ କିଛି ସ୍ୱାଧୀନତା ଦିଅ । ଅନ୍ୟ ଝିଅଙ୍କ ତୁଳନାରେ କେତେ ଭଲ ସେ । କେବେ ହେଁ-ହେଁ ଫେଁ-ଫେଁ କେଉଁଠି ହୁଏନି । ପୁଅଙ୍କ ସାଙ୍ଗରେ ହୋଟେଲ ଯିବା, ସିନେମା ଯିବା ଏ ସବୁ ତ ଆଦୌ ନାହିଁ । ଯଦି କାହା ସାଙ୍ଗରେ ବନ୍ଧୁତା ରଖିବାକୁ ଚାହିଁଲା, ସେଥିରେ ଭୁଲ କ'ଣ ଅଛି ? ସମାଜ କେତେ ଆଗେଇ ଆସିଲାଣି ? ବି ବ୍ରଡ୍ ମାଇଣ୍ଡେଡ୍ ।"

ସେଇଦିନଠାରୁ ସତର୍କ ହୋଇଯାଇଥିଲେ ଲତିକା । ଜୟବ୍ରତ ସିଂହ ସହିତ ସୁଦୀପାର ସମ୍ପର୍କ ସମ୍ବନ୍ଧରେ ଶୁଣିଥିଲେ ମିସେସ୍ ଶର୍ମାଙ୍କଠାରୁ । ତାଙ୍କ ଝିଅ ସୁଦୀପାର ସହପାଠିନୀ । ସବୁ ଜାଣି ମଧ୍ୟ ନିଜ ଝିଅକୁ ଆକଟ କରି ପଦେ କହିପାରିନଥିଲେ । କିଏ ଜାଣେ, ସ୍ୱାମୀ ମଧ୍ୟ ତାଙ୍କ ପକ୍ଷ ସମର୍ଥନ କରିନପାରନ୍ତି । ଚୁପ୍ ରହିଥିଲେ ଲତିକା । ଅପେକ୍ଷା କରିଥିଲେ, କେବେ ମୁହଁ ଖୋଲି ଏ କଥା କହିବ ତାଙ୍କୁ ସୁଦୀପା । ଜୟବ୍ରତ ପିଲାଟା ଭଲ, ପଞ୍ଜାବୀ ହେଲେ ମଧ୍ୟ ତାଙ୍କର ଅରାଜି ହେବାର କୌଣସି କାରଣ ନଥିଲା । କିନ୍ତୁ ତାଙ୍କୁ ବିଶ୍ୱାସ କଲା ନାହିଁ ସୁଦୀପା । କିଛି ନକହି ବାହାହେଇଗଲା ।

ନା, ଦୁଃଖ କରି ଆଉ ଲାଭ କ'ଣ ? ଏ ଘରେ ତାଙ୍କର ମୂଲ୍ୟ ତ କିଛି ନାହିଁ । ତାଙ୍କର କୌଣସି କଥା ରହିନି ଆଜିଯାଏଁ । ଜିଦ୍ କରିଥିଲେ ସେଇ ଥରକ—ଯେଉଁଦିନ ଏନ୍. ଡି. ଏ.ରେ ଯୋଗ ଦେବା ପାଇଁ ଅନୁମତି ଚାହିଁଥିଲା ଆଶିଷ । ପାଗଳୀଙ୍କ ଭଳି ସ୍ୱାମୀଙ୍କୁ ଅନୁରୋଧ କରିଥିଲେ, "ତାକୁ ବାରଣକର । ଗୋଟିଏ ବୋଲି ପୁଅ ମୋର, କେମିତି ଛାଡ଼ି ଦେବି ତାକୁ ? କେତେ ବା ବୟସ ତା'ର ?"

ଚଷମାର କାଚଟା ପରିଷ୍କାର କରୁ କରୁ ସ୍ୱାମୀ କହିଥିଲେ, "ତୁମେ ଶିକ୍ଷିତା ଲତିକା ! ତୁମେ ଯଦି ଏମିତି ହେବ, ତେବେ ଗାଁମାନଙ୍କରେ ଅଶିକ୍ଷିତା ମା'ମାନେ ଆଉ କରିବେ କ'ଣ ? କୁହ ଏଥିରେ ଦେଶର ସୁରକ୍ଷା ହେବ କେମିତି ?"

କିଛି ବୁଝିବାକୁ ପ୍ରସ୍ତୁତ ନଥିଲେ ଲତିକା । କୌଣସି ଆଦର୍ଶବାଦ ଛୁଇଁ ପାରୁ ନଥିଲା

ତାଙ୍କୁ । ଗୌତମୀ ପର ବିକଳରେ ମାଗିଥିଲେ, "ମୋ ଧନମଣିକୁ ଦିଅ । ଫେରାଇ ଦିଅ ମୋ କୋଳକୁ ।" କିନ୍ତୁ ନିର୍ବାଣ ହୋଇଥିଲେ ସେ । ସ୍ୱାମୀଙ୍କର ଶେଷଂନିଷ୍ପତ୍ତି, "ଏନ୍. ଡି. ଏ. ପାଇଁ ଯୋଗ୍ୟ ବିବେଚିତ ହେବା ଖୁବ୍ ଗର୍ବର ବିଷୟ । ତୁମେ ଖୁସି ନହୋଇ ବ୍ୟସ୍ତ ହେଉଛ ଲତିକା ! ଓଃ—ଷୋଳ ବର୍ଷର ପୁଅ ତାଙ୍କର କେଉଁଠି କ'ଣ ଖାଇବ, କ'ଣ କରିବ ? ଚିନ୍ତା ହୋଇଯାଉଥିଲା ତାଙ୍କର । ଆଜି ଆଉ ଚିନ୍ତା କରିବାର କିଛି ନାହିଁ । ପୁଅ ତାଙ୍କର ଏୟାର୍ ଫୋର୍ସରେ ପାଇଲଟ୍ । ତା' କଥା ଭାବିବା ପାଇଁ ପାଖରେ ଅଛି ବୋହୂ ।

ତିନି ବର୍ଷର ନାତି । ସେଇ ଯାହା ଦେଖିଥିଲେ ଦୁଇ ବର୍ଷ ତଳେ । କି ସୁନ୍ଦର ଗୁଲୁଗୁଲିଆ କଥା କହୁଥିବ ଏବେ ! ଠୁକୁ ଠୁକୁ ଚାଲୁଥିବ । ତାକୁ ଦେଖିବାକୁ ମନଟା ତାଙ୍କର ବିକଳ ହୋଇଉଠେ । କିନ୍ତୁ ଦୁଇବର୍ଷ ହେଲାଣି ଘରକୁ ଆସିନି ଆଶିଷ । ପ୍ରଥମ ବର୍ଷ ଚଳିଦେଇଥିଲା—ଛୁଟି ମିଳିଲାନି । ଆଉ ତା' ପରବର୍ଷ ବୁଲିବା ପାଇଁ କାଠମାଣ୍ଡୁ ଚାଲିଯାଇଥିଲା ସ୍ତ୍ରୀ ଓ ପୁଅକୁ ନେଇ । ସ୍ୱାମୀ ବୁଝେଇଥିଲେ, "ଦେଖିବ, ଠିକ୍ ଘରକୁ ଆସିବେ ସେମାନେ । ପିଲାମାନେ ଏ ବୟସରେ ବୁଲିବେ ନାହିଁ ତ ଆଉ କ'ଣ ଆମ ଭଳି ବୁଢ଼ାବୁଢ଼ୀ ହେଲେ ବୁଲିବେ ?"

କେଉଁ କଥା ପ୍ରସଙ୍ଗରେ ସେଇ କଥା ସେଦିନ ଲିପି ଆଗରେ କହିଥିଲେ ଲତିକା । ଲିପି···ତାଙ୍କ ପଡ଼ୋଶୀଘରେ ଭଡ଼ା ରହୁଥିଲା । ସ୍ୱାମୀ କ୍ୟାପ୍‌ଟେନ୍ ପ୍ରଣବ ଦତ୍ତ । ବର୍ଷକ ପାଇଁ ଦିଲ୍ଲୀ ଆସିଥିଲେ ସେମାନେ । ଲିପି ତାଙ୍କ କଥା ଶୁଣି ହସି ହସି ଗଡ଼ିଯାଇଥିଲା—"ଅଂକଲ୍ ତ କିଛି ଭୁଲ୍ କହି ନଥିଲେ ଆଣ୍ଟି । ଏଇ ଦେଖନ୍ତୁ ନା—ଏଇ ଯୁବାଙ୍କ କଥା । ତିନି ଭାଇ ସେମାନେ—ତିନିଜଣଯାକ ଆର୍ମିରେ । ସବୁ ବର୍ଷ ଛୁଟିରେ ଠିକ୍ ଘରକୁ ଯିବାଟା ହୁଏନି । ଶାଶୂ ମଧ୍ୟ ଏକଥା ଗ୍ରହଣ କରିନେଇଛନ୍ତି ।"

ଲିପି ପ୍ରଣବଙ୍କର ଆତ୍ମୀୟତା ଖୁବ୍ ଭଲଲାଗୁଥିଲା ତାଙ୍କୁ । ସେମାନଙ୍କର ଘରକରଣା, ଚାଲିଚଳଣି ସବୁଥିରେ କେମିତି ନିଜ ବୋହୂଘରର ଆଗର ସ୍ୱପ୍ନ ସବୁ ଦେଖୁଥିଲେ ଲତିକା । ସେଇଥିପାଇଁ ବୋଧହୁଏ ଏତେ ଯାଉଥିଲେ ତାଙ୍କ ଘରକୁ । ଆଉ ଏତେ ଅଧିକାର ସାବ୍ୟସ୍ତ କରିଥିଲେ ସେମାନଙ୍କ ଉପରେ । ସେମାନଙ୍କ ମେଳରେ ନିଜ ଏକାକୀତ୍ୱକୁ ଭୁଲିଯାଉଥିଲେ ଅନେକାଂଶରେ । ଭୁଲିଯାଉଥିଲେ ସୁଦୀପାର ଘର ଛାଡ଼ି ଚାଲିଯିବା କଥା, ଆଶିଷର ଘରକୁ ନଆସିବା କଥା ଏବଂ ସ୍ୱାମୀଙ୍କର କାର୍ଯ୍ୟବ୍ୟସ୍ତତା ।

ସେଦିନ ଅସମୟରେ ଲିପିଘରକୁ ଯାଇଥିଲେ । କଲ୍‌ବେଲ୍‌ରେ ହାତ ଦେବା ଆଗରୁ ପଥର ପାଲଟିଯାଇଥିଲେ ଲତିକା । ପ୍ରଣବର ଅଫିସ୍ ଛୁଟି ଥିଲା ବୋଧହୁଏ, ସେ ଜାଣି ନଥିଲେ । ଲିପି ସାଙ୍ଗରେ ଗପ କରିବାକୁ ଆସିଥିଲେ ଅନ୍ୟ ଦିନ ପରି ।

ଲିପିର ସ୍ୱର ଶୁଣାଗଲା, "ବାବା—ଏ ବୁଢ଼ୀର ଦାଉରେ ଆଉ ରହି ହେବ ନାହିଁ ।"

"ଏତେ ଶୀଘ୍ର ବ୍ୟସ୍ତ ହୋଇଗଲ—ଶସ୍ତାରେ ଶାଶୁଟାଏ ପାଇଛ !"

"ଯା—ଶାଶୂ ନା ଆଉ କିଛି ! ତୁମ ମା' ଆଉ ଏ ବୁଢ଼ୀ !! ଆର ଜନ୍ମରେ ମୋ ଦେଉରାଣୀ ଥିଲା ବୋଧହୁଏ । ସବୁବେଳେ ମୋ ପଛରେ ପଡ଼ିଛି—ପ୍ରଣବକୁ ନ୍ୟୁଟ୍ରିସନ୍ ଖାଦ୍ୟ ଦେଉନୁ

କାହିଁକି ? ଏତେ ତେଲ ମଦଲି କ'ଣ ? ଏତେ ଗୁଲ୍ଗୁଲ୍ କାହିଁକି ? ଶାଢ଼ିଗୁଡ଼ାକ କିଣି ପଇସା ନଷ୍ଟ ନକରି ଭବିଷ୍ୟତ ପାଇଁ ସଞ୍ଚୟ କର । ବାପ୍‌ରେ—ତା ଝିକ୍ ଝିକ୍ କଥା ଶୁଣି ପ୍ରାଣ ଗଲାଣି । ଆରେ ବାବା—ଆମ ଜୀବନ ଆମକୁ ଗଢ଼ିବାକୁ ଦିଅ ।''

ହୋ ହୋ ହୋଇ ହସିଉଠିଥିଲେ ପ୍ରଭେ । ଫିସ୍ ଫିସ୍ କରି ପୁଣି କହିଥିଲେ—ବୁଝିଲି ଲଫି, ସେ୍ସ ସବୁ ହେଲା ଈର୍ଷାର ଲକ୍ଷଣ । ଦ ଓଲ୍ଡ଼ କେଜି ଇଜ୍ ଜେଲସ୍ ଅଫ୍ ୟୁ । ବୁଢ଼ା ବୋଧହୁଏ ବୁଢ଼ୀକୁ କେବେ ବୁଲେଇ ନେଇନଥିବ କିମ୍ବା ନୂଆ ଶାଢ଼ି କିଣି ଦେଇ ନଥିବ । ମୋ ପରି ପତ୍ନୀନିଷ୍ଠ ସ୍ୱାମୀ କେତେଟା ଅଛନ୍ତି ?''

''ଆହା ଖାଲି ଗୁଣର ନା ! ନିଜକୁ ଆଉ ଏତେ ପ୍ରଶଂସା କରନି ମ ।''

ଆଉ ଅଧିକ ଶୁଣିବାର ଧୈର୍ଯ୍ୟ ନଥିଲା । ଟଳି ଟଳି ଘରକୁ ଫେରିଆସିଥିଲେ ଲଥିକା । ବିଛଣାରେ ପଡ଼ିଯାଇ ଭାବୁଥିଲେ—ଏଇସବୁ ଯାହା ଶୁଣିଲେ ସତ୍ୟ ନା ମନର ଭ୍ରାନ୍ତି ? ସେଇଦିନଠାରୁ କିନ୍ତୁ ନିହାତି ଦରକାର ନପଡ଼ିଲେ ତାଙ୍କ ଘରକୁ ଯାଇନାହାନ୍ତି ଲଥିକା । କେବେଠାରୁ ବଦଳି ଗୁଡ଼ିଲେଣି ସେମାନେ । ଏବେ କେଉଁଠି କେଜାଣି ? ଯେଉଁଠି ଥାଆନ୍ତୁ ପଛେ ଭଲରେ ରହନ୍ତୁ ।

ଝରକା ମୁଣ୍ଡ ଉପରକୁ ଉଠିଗଲାଣି । ଦିନ ଗୋଟାଏ ଉପରେ ହେବ । କାହା ଘର ରେଡ଼ିଓରୁ ଇଂରାଜୀରେ ସମ୍ବାଦ ଭାସିଆସୁଛି । ଅନିଚ୍ଛା ସତ୍ତ୍ୱେ ଉଠିବାର ବ୍ୟବସ୍ଥା କଲେ ଲଥିକା । ଲଞ୍ଚ୍ ଖାଇବାକୁ ହେବ ଠିକ୍ ସମୟରେ, ନହେଲେ ପୁଣି ଏସିଡ଼ିଟି ହେବ । ବୟସ ଯେତେ ବଢ଼ୁଛି, ଶରୀରର ଦାସ ହୋଇଯାଉଛନ୍ତି ସେତେ ବେଶି । ହଠାତ୍ କାର୍ ହର୍ଣ୍ଣରେ ଫାଟକଆଡ଼େ ଚାହିଁଲେ ସେ । ଆରେ···ଆଜି ଏତେ ଶୀଘ୍ର ସ୍ୱାମୀ ତାଙ୍କର ଫେରିଆସିଛନ୍ତି । ଫାଟକ ଖୋଲୁ ଖୋଲୁ ପଚାରିଲେ ସେ, ''କ'ଣ ହୋଇଛି ? ଆଜି ଏତେ ଶୀଘ୍ର ଯେ···''

ଗାଡ଼ି କବାଟ ବନ୍ଦ କରି ତାଙ୍କ ଆଡ଼କୁ ଚାଲି ଚାଲି ଆସୁଥିଲେ ମିଷ୍ଟର ରତ୍ନାକରନ୍ । ସେଇ ଆଡ଼କୁ ଚାହିଁ ଭାବୁଥିଲେ ଲଥିକା । ବାହାଘର ପରେ ପରେ ସ୍ୱାମୀଙ୍କର ଚାଲି ଅଭି ଚେହେରା ନେଇ କେତେ ଗର୍ବ କରୁଥିଲେ ସେ । ବୟସ ବଢ଼ିଗଲେ ମଧ୍ୟ ଚେହେରାର ଆଭିଜାତ୍ୟ ସେଇମିତି ରହିଛି ।

''ଖୁବ୍ ଭଲ ଖବର ଲଥିକା—ଭେରି ଗୁଡ଼୍ ନିଉଜ୍ ! ଏ ଚିଠିଟା ପଢ଼ ତ !''

''କିଏ ଦେଇଛି ?'' ଥର ଥର କଣ୍ଠରେ ଚିଠିଟା ନେଇ ନେଉ ପଚାରିଥିଲେ ଲଥିକା ।

''ତୁମର କନ୍ୟାରତ୍ନ—ସୁଦୀପା ।''

''ଏଁ''—ସେଇଠି ଚିଠିଟା ପଢ଼ିବସିଲେ ଲଥିକା ।

''ମାମା ଡ୍ୟାଡ,

ଖୁବ୍ ରାଗିଛ ନା ମୋ ଉପରେ—ଏମିତି କିଛି କାହାକୁ ନକହି ଘରୁ ଲୁଚି ଆସି ବାହା ହୋଇପଡ଼ିଲି ବୋଲି ! ପ୍ଲିଜ୍ ଆଉ ରାଗିବନି ! ମୋର ସତରେ ଭୁଲ୍ ହୋଇଯାଇଛି । ଆଜି ମା' ହେବା ପରେ ମୁଁ ଭାବୁଛି ମୋ ନିଜ ବାପା ମା'ଙ୍କ ମନରେ ଆଘାତ ଦେବାଟା

ମୋର ଅର୍ଦ୍ଧେ ଉଚିତ ହୋଇନାହିଁ । ହଁ ମା', ତୁମେ ଆଈ ହୋଇଛ । ମୋ ଝିଅକୁ ଏବେ ଠିକ୍ ମାସେ । ମୋ ପାଇଁ ଚିନ୍ତା କରନ୍ତନି, ଖୁବ୍ ଭଲରେ ଅଛି । ଜସ୍ବୀରଜଙ୍କ ପରିବାରରେ ସମସ୍ତଙ୍କର ଆଦରଣୀୟା ମୁଁ । ଏବେ ଛୁଟି ପାଇଁ ସେ ଆପ୍ଲାଇ କରିଛନ୍ତି । ଏଇ ମାସରେ ଆମେ ନିଶ୍ଚୟ ଚାଲି ଯିବୁ । ଜସ୍ ମନେ ଗୁଡ଼ ଫେରିଆସିବେ । ମୁଁ କିନ୍ତୁ ତୁମ ପାଖରେ ଦୁଇ ମାସ ରହିବି—ତଡ଼ିଦେବନି ତ ? ମତେ କ୍ଷମା କରିଦେବ । ଇତି ।

'ତୁମର ସୁଧାପା'

ଆଖିରୁ ଗଡ଼ିଆସୁଥିବା ଲୁହଧାରକୁ ପୋଛି ପାରୁନଥିଲେ ଲତିକା । ହାତ-ଗୋଡ଼ କେମିତି ଅବଶ ହୋଇଯାଉଥିଲା ତାଙ୍କର । ଚିଠି ଦେଇଛି ସୁଧାପା ତାଙ୍କର ପ୍ରାଣାଧିକା କନ୍ୟା । ସତେ କ'ଣ ତାଙ୍କ କୋଳକୁ ଫେରିଆସିବ ସେ ! ଆଃ ମା'ଟା ମୋର—କାହିଁ କେତେ ଦିନରୁ ତତେ ନଦେଖି ଅନ୍ଧୁଣୀ ହୋଇଯାଇଛିରେ !

"ଆରେ ତୁମର କ'ଣ ହେଲା ? ଖୁସି ନହୋଇ କାନ୍ଦୁଛ କ'ଣ ? ସମ୍ବିତ୍ ଫେରିପାଇଲେ ଲତିକା । ସ୍ୱାମୀଙ୍କ କଣ୍ଠଟା ମଧ୍ୟ ଓଦା ଓଦା । "ଏଇ ଟେଲିଗ୍ରାମ୍‌ଟା ଦେଖ ତ—ଆଶିଷ ଦେଇଛି ।"

"ଆରାଇଭିଂ ବାଏ ସେଭେନ୍‌ଥ ଫ୍ଲାଇଟ୍—"

"କାଲି—କାଲି ଆସୁଛି ଆଶିଷ ! ବୋକାଙ୍କ ଭଳି ଟେଲିଗ୍ରାମ୍‌କୁ ଦେଖୁଥିଲେ ସେ । କିଛି ବୁଝିପାରୁ ନଥିଲେ । ସ୍ୱାମୀଙ୍କ ଆଖି ଦୁଇଟା କେମିତି ଉଜ୍ଜ୍ୱଳ ଦିଶୁଛି । ମୁହଁରେ ସ୍ୱର୍ଗୀୟ ହସ ।

"ବୁଝିଲ, ଟେଲିଗ୍ରାମ୍ ପାଇ ସାଙ୍ଗେ ସାଙ୍ଗେ ଫୋନ୍ କରିଥିଲି ତା' ପାଖକୁ । ବୋହୂ ଓ ନାତିକୁ ନେଇ ଆସୁଛି । ତା'ର ପଞ୍ଚାବନ ଦିନ ଛୁଟି । ଏଇଠି ଆମ ପାଖରେ ରହିବେ । ମଝିରେ ଚାରିଟା ଦିନ ପାଇଁ ଯାହା ନୈନିତାଲ ଯିବେ—ନାତିକୁ ଆମ ପାଖରେ ଛାଡ଼ି ।"

ଲତିକା ବୁଝି ପାରୁନଥିଲେ ଏତେ ଆନନ୍ଦ ସେ ଧରିରଖିବେ କେଉଁଠି ? ମୁଣ୍ଡଟା କ'ଣ ହୋଇଯାଉଛି ସେ ! ମନେହେଉଛି ଯେମିତି ଏଇଠି ପଡ଼ିଯିବେ ।

ହାତଟା ଧରିପକାଇଲେ ସ୍ୱାମୀ—"ଚାଲ ଲତିକା, ଘର ଭିତରକୁ ଚାଲ । ଭାରି ଭୋକ ହେଲାଣି ।" ସେମିତି ବୋକାଙ୍କ ଭଳି ସ୍ୱାମୀଙ୍କ ଉପରେ ଭର ଦେଇ ଘର ଭିତରକୁ ଆଗେଇ ଗଲେ ସେ ।

□□□

# ମୁଖ୍ୟ ଚରିତ୍ର

ଦୁଇ ହାତରେ ହ୍ୱିସ୍କି ଗ୍ଲାସ୍‌କୁ ଘୂରାଉ ଘୂରାଉ ରାଜେନ୍ଦ୍ର ଦାସ ଚିନ୍ତା କଲା ଭଳି କହିଲେ, "ମୋ ମତରେ ଚୌଧୁରୀ, ତୁ କିଛି ଦିନ ପାଇଁ ବିଶ୍ରାମ ନେ ।"

"ବିଶ୍ରାମ !!" ଆଇସ୍ ବକେଟ୍‌ରୁ ଆଉ ଗୋଟାଏ କ୍ୟୁବ୍ ଗ୍ଲାସ୍‌ରେ ପକେଇଲେ ଶାନ୍ତନୁ ଚୌଧୁରୀ । "ଏବେ ମୁଁ ଆଉ କରୁଛି କ'ଣ ? ଦେଖିବାକୁ ଗଲେ ଲମ୍ବା ଛୁଟିରେ ଇ ତ ଅଛି । ଗତ ମେ'ରୁ ଖାଲି ବିଶ୍ରାମ ହିଁ ନେଉଛି ।"

ନିଜ ଉପରେ ତାଙ୍କର ଆକ୍ରୋଶ । ଏତେ ଦିନ କିଛି କରିପାରୁ ନଥିବାରୁ ମନରେ ତାଙ୍କର କ୍ଷୋଭ । ସବୁ ବୁଝିଥିଲେ ବନ୍ଧୁ ରାଜେନ୍ଦ୍ର ।

"ଏଇଟା ତ ଠିକ୍ ଛୁଟି ନୁହେଁ । ତୁ ପାଗଳଙ୍କ ଭଳି ଏ ମୁଣ୍ଡରୁ ସେମୁଣ୍ଡ ଘୂରୁଛୁ । ଭଲ ଗପ ଖୋଜୁଛୁ । ଚରିତ୍ର ବିଶ୍ଳେଷଣ କରୁଛୁ । ପ୍ରଡ୍ୟୁସର୍, ଡିଷ୍ଟ୍ରିବ୍ୟୁଟର୍‌ଙ୍କ ସାଙ୍ଗରେ ଆଲୋଚନା ବି ବନ୍ଦ ନାହିଁ । ଏ କି ପ୍ରକାରର ବିଶ୍ରାମ ?"

"ତୁ କହ ଦାସ୍, ଏ କ୍ଷେତ୍ରରେ ମୋ ଗୋଡ଼ ଯେ ବାନ୍ଧି ହୋଇଯାଇଛି । ଥରେ ଜାତୀୟ ପୁରସ୍କାର ପାଇବା ପରେ ମୋଠୁଁ ସମସ୍ତଙ୍କର ଏକ୍ସପେକ୍ଟେସନ୍ ବଢ଼ିଯାଇଛି । ଏ ପରର ଛବି ଯଦି ପ୍ରଥମ ଦୁଇଟିରୁ ଭଲ ନ ହୁଏ, ତା'ହେଲେ ଜମା ଚଳିବ ନାହିଁ । ଏଣେ ଦେଖ, ଗୋଟାଏ ହେଲେ ଭଲ ଆଇଡିଆ ମୁଣ୍ଡରେ ପଶୁନି । ...ଦିସ୍ ଟେନ୍‌ସନ୍ ଉଇଲ୍ କିଲ୍ ମି ।"

ଶାନ୍ତନୁ ଚୌଧୁରୀ ଚଳଚ୍ଚିତ୍ର ନିର୍ଦ୍ଦେଶକ । ତାଙ୍କର ପ୍ରଥମ ଛବି ବର୍ଲିନ୍ ଚଳଚ୍ଚିତ୍ର ଉତ୍ସବରେ ପ୍ରଦର୍ଶିତ ହୋଇ ଉଚ୍ଚ ପ୍ରଶଂସିତ ହୋଇଥିଲା । ଆଉ ତାଙ୍କର ଦ୍ୱିତୀୟ ଛବି ଜାତୀୟ ପୁରସ୍କାର ପାଇଲା ଗତବର୍ଷ । ସେ'ପରେ ହଠାତ୍ ଯେ କେମିତି ଏକ ମାନସିକ ଶୂନ୍ୟତା ଭିତରେ ପଡ଼ିଗଲେ ଶାନ୍ତନୁ, ସେ ନିଜେ ବୁଝିପାରୁନାହାନ୍ତି । ଏକଥା ସତ ଯେ ଖୁବ୍ ଶୀଘ୍ର ତାଙ୍କୁ ଚଳଚ୍ଚିତ୍ର ନିର୍ମାଣ କରିବାକୁ ପଡ଼ିବ । ନିଜର ସନ୍ତୋଷ, ସମ୍ମାନ ଇତ୍ୟାଦି ଆଦର୍ଶବାଦୀ କଥା ତ ଅନେକ ପରର, ପ୍ରଥମେ ଆଗ ଘର ଚଳେଇବା ପାଇଁ ଟଙ୍କା ଦରକାର । ନିଷ୍ଠୁର ବାସ୍ତବତାକୁ ଏଡ଼ାଇ ଦେଇ ପାରନ୍ତେ ଚୌଧୁରୀ; କିନ୍ତୁ ତାଙ୍କ ଉପରେ ଯେ ପାଞ୍ଚଜଣ ନିର୍ଭର କରିଅଛନ୍ତି । ସ୍ତ୍ରୀ ଛନ୍ଦା, ପୁଅ କିନ୍ ଓ ଝିଅ ରିଙ୍କି ଏବଂ ଗାଁରେ ବୁଢ଼ାବାପା ଓ ବୁଢ଼ୀମା' ।

ଏଇ ତ ସେୟାନ ଛନ୍ଦା ତାଙ୍କୁ କି ସୁନ୍ଦର ସମାଧାନ ବତେଇଦେଲା ! ବିଦ୍ରୂପ କଲାଭଳି ଶାନ୍ତନୁ ମନେପକାଇ ହସିଲେ । ଛନ୍ଦା କହିଥିଲା, "ଶାନ୍ତନୁ, ଏଥର କୋଣାର୍କ ଆର୍ଟ ଫିଲ୍ମକୁ ବାଦ୍‌ଦିଅ । ବନ୍ଦ୍ୟ ଅଫିସ୍ ମସଲା ଦେଇ ଗୋଟାଏ କମର୍ସିଆଲ ଫିଲ୍ମ କର । ଅଳେ ଯଦି ହିଟ୍ ହୋଇଯାଏ ନା, ତୁମକୁ ସାରା ଜୀବନ ଧରି ଟଙ୍କା କଥା ଭାବିବାକୁ ହେବନି । ତେଣିକି ତୁମେ ମନ ଖୁସିରେ ତୁମ ଟାଇପ୍ ଫିଲ୍ମ କର । କ'ଣ କହୁଛ ?"

ଆଉଜଣ ମିଳୁନି ବୋଲି 'ଗ୍ଲୁ' ଫିଲ୍ମ ତିଆରିକରିବେ ଶାନ୍ତନୁ ? ଘରକୁ ଟଙ୍କା ଆସିବ ବୋଲି ଫାଇଟିଙ୍ଗ୍, କାର୍ ରେସିଂ, ଦୁଇ ଘଣ୍ଟା ରେପ୍ ପୁରେଇ ସିନେମା ତିଆରି କରିବେ ସେ ? "ଓ ହେଲ୍, ହେଲ୍, ହେଲ୍···ଚୌକିରୁ ଉଠି ଯାଇ ବାଲ୍‌କୋନିରେ ଠିଆହେଲେ ଶାନ୍ତନୁ ।

ଆସ୍ତେ ଯାଇ ତାଙ୍କ କାନ୍ଧରେ ହାତ ପକେଇଲେ ରାଜେନ୍ଦ୍ର, "ମୋ କଥା ମାନ ଚୌଧୁରୀ ! କିଛି ଦିନ ପାଇଁ କେଉଁଠି ବୁଲିଆ—ଫ୍ୟାମିଲି ନନେଇ ।" କିଛି ସମୟ ରହିଯାଇ ସେ ପୁଣି କହିଲେ, "ତୁ ଯଦି ରାଜିହେଉ, ତେବେ ମୁଁ ଗୋଟାଏ ଜାଗା ସଜେଷ୍ଟ କରିବି । ଜଙ୍ଗଲ ଭିତରେ ରେଷ୍ଟହାଉସ୍‌ଟିଏ ଅଛି । ଅବଶ୍ୟ ଜାଗାଟି ସମ୍ପୂର୍ଣ୍ଣ ଭାବରେ ଫରେଷ୍ଟ ଅଫିସିଆଲ୍‌ଙ୍କ ପାଇଁ ସୁରକ୍ଷିତ । କିନ୍ତୁ ମୁଁ ବ୍ୟବସ୍ଥା···"

"ମାଫ୍ କର ଦାସ ! ମୁଁ ଗୋଟାଏ ଆର୍ଟିଷ୍ଟ, କମ୍‌କର୍‌ବେଟ୍ ନୁହଁ । ଜଙ୍ଗଲକୁ ଯାଇ ବାଘ, ଭାଲୁ, ହାତୀଙ୍କ ଶିକାର ହେବାରେ ବା ସେମାନଙ୍କୁ ଶିକାର କରିବାରେ ମୋର କୌଣସି ଆଗ୍ରହ ନାହିଁ ।"

ହସିଲେ ରାଜେନ୍ଦ୍ର, "ଶିକାର ? ଏଇଟା ସୁରକ୍ଷିତ ଜଙ୍ଗଲ—ଶିକାର କରିବା ମନା । ବାକି ରହିଲା ତୁ ଶିକାର ହେବା କଥା । ତୁ ତ ରହିବୁ ରେଷ୍ଟହାଉସ୍‌ରେ । ତା' ଚାରି-ପାଖରେ ଫେନ୍ସ । ହାତୀ ବାଘ କ'ଣ ଲଙ୍ଗ୍ ଜମ୍ପ୍ କରି ଆସିବେ ତତେ ଖାଇବା ପାଇଁ ?"

ପୁଣି ସେ ଗମ୍ଭୀର ହୋଇ ହେଲେ, "ସତ କହୁଛିରେ, ମୁଁ ଭାରତରେ ଅଧିକାଂଶ ଜଙ୍ଗଲ ଦେଖିଛି । କିନ୍ତୁ ଆମ ଓଡ଼ିଶାର ଜଙ୍ଗଲ ଭଳି ଏତେ ସୁନ୍ଦର ଅଥଚ ରୋମାଞ୍ଚକର କେଉଁଟି ବି ନୁହେଁ । ଭୋର ହେଲେ ହରିଣ, ମୟୂର, କୁଟୁରିଙ୍କ ମେଳା ଲାଗିଯାଏ । ସନ୍ଧ୍ୟା ହେଲେ ଲୁଣ ଖାଇବାକୁ ହାତୀ ଆସେ । ଅନ୍ୟ ପଶୁପକ୍ଷୀ ତ ଅଛନ୍ତି । ଏଣେ ଜାଗାଟିର ପ୍ରାକୃତିକ ସୌନ୍ଦର୍ଯ୍ୟ କି ଅପୂର୍ବ ! ପାହାଡ଼ ଉପରେ ରେଷ୍ଟ ହାଉସ୍ । ତା' ପାଖରେ ଝରଣାଟିଏ । ରେଷ୍ଟ ହାଉସ୍ ବାରଣ୍ଡାରେ ଠିଆହେଲେ ଦୂରରେ ଥିବା ପାହାଡ଼ ଦେଖାଯାଏ । ଚବିଶ ଘଣ୍ଟା ଝରଣା ସେ ପାହାଡ଼ମାନଙ୍କରୁ ବାହାରୁଛି । ଆଃ ଚୌଧୁରୀ—ମୁଁ ଯଦି କବି ହୋଇଥାନ୍ତି···" ରାଜେନ୍ଦ୍ର ଆତ୍ମହରା ହୋଇପଡ଼ିଥିଲେ । ପ୍ରକୃତିସ୍ଥ ହୋଇ ବୋକାଙ୍କ ଭଳି ଟିକିଏ ହସିଲେ ।

କିଛି ସମୟ ଭାବିହେଲେ ଶାନ୍ତନୁ, "ସତରେ ମୋର ବହୁତ କାମ ଅଛିରେ । ଦୁଇଜଣ ଲେଖକଙ୍କ ସାଙ୍ଗରେ ଗପ ପାଇଁ ଆଲୋଚନା କରିବା କଥା···" ହଠାତ୍ ନିଜକୁ ଶାସନ କଲେ ସେ, "ସବୁ କାମ ଧନ୍ଦା ନର୍କକୁ ଯାଉ···ମୁଁ କେତେ ଶୀଘ୍ର ଯାଇ ପାରିବି, ଦାସ ?"

"ବ୍ରାଭୋ ରୌମ୍ୟୁସ୍ତ···ଦ୍ୟାଟ୍‌ସ ଦ ସ୍ପିରଟ୍‌ !" ଉଚ୍ଛ୍ୱସିତ ସ୍ୱରରେ ସୁରେନ୍ଦ୍ର କହିଉଠିଲେ, "ଏଇ ଶନିବାର ସକାଳୁ ତା'ହେଲେ ମୋ ଡ୍ରାଇଭର ନେଇ ଛାଡ଼ି ଆସିବ ଜିପ୍‌ରେ । ପାଞ୍ଚ-ଛଅଦିନ ପରେ ପୁଣି ନେଇଆସିବ । ଆରେ ହିଁ—ତତେ ସବୁ ଜିନିଷ ନେବାକୁ ପଡ଼ିବ । ଡାଲି ଚାଉଳଠାରୁ ଆରମ୍ଭ କରି ସିଗାରେଟ ପର୍ଯ୍ୟନ୍ତ । କାଲି ଭିତରେ ସବୁ ଯୋଗାଡ଼ କରି ନେ । ଠିକ୍ ତ ?"

"ଠିକ୍···" ହ୍ୱିସ୍କି ଗ୍ଲାସ୍‌ରେ ମୁହଁ ଲଗେଇଲେ ଶାନ୍ତନୁ ।

× × × ×

ଜଙ୍ଗଲରେ ଚବିଶ ଘଣ୍ଟା ହୋଇନି; କିନ୍ତୁ ଶାନ୍ତନୁଙ୍କର ମନେହେଉଛି ସେ ଯେମିତି କେଉଁ ଆଦିମ ଯୁଗରୁ ଏଠାରେ ରହିଆସିଛନ୍ତି । ହରିଣ ଦେଖିବା ଲୋଭରେ ଭୋର ପାଞ୍ଚଟା ବେଳୁ ଉଠିଛନ୍ତି ସେ—ଏବେ ନଅଟା ପାଖାପାଖି ହେଲାଣି । ସହର ହୋଇଥିଲେ ଗାଧୋଇ-ପାଧୋଇ ପ୍ରସ୍ତୁତ ହୋଇ ଅଫିସ୍ ଯାଇ ସାରିଥାଆନ୍ତେ ସେ । କିନ୍ତୁ ଏଠି ଏ ପର୍ଯ୍ୟନ୍ତ ଦାନ୍ତ ଘଷା ବି ହୋଇନି । ଏ ଜାଗା ସତରେ ଅନନ୍ୟ । ସମୟ ପଛରେ ଧାଇଁବାକୁ ପଡ଼େନାହିଁ । ସମୟ ତା'ର ନିଜର ଗୋଟିଏ ପୃଥକ୍ ଗତି ନେଇ ଚାଲେ—ତଳି ତଳି, ହସି ହସି ।

ଆକାଶରେ ମେଘ ଓ ସୂର୍ଯ୍ୟଙ୍କ ଖେଳ । ଚାରିପଟରେ ପାହାଡ଼ ଆଉ କୁହୁଡ଼ିର ଲୁଚକାଳି । ସ୍ୱୀ' ଭିତରେ କେତେ ବେଳ କଟିଯାଏ, ଶାନ୍ତନୁ ଜାଣିପାରନ୍ତି ନାହିଁ । ଡିସେମ୍ବର ମାସର ଶୀତରେ ଦେହ ହାତ ଯେତେବେଳେ କୋଲମାରିଆସେ, ଠିକ୍ ସେତିକି ବେଳେ ପଛରୁ ଧୀର ପାଦ ଶବ୍ଦ ଶୁଣାଯାଏ । ଖୁବ୍ ଆସ୍ତେ ଜଣେ କହେ, "ସାର୍, ଚା ।"

ସେ ନାରଣ ହୋ' । ରେଷ୍ଟହାଉସ୍‌ର କେୟାର୍-ଟେକର୍—ରୋଷେଇୟା—ସବୁ କିଛି ।

କଳା ପତଳା ହୋଇ ପଚିଶ ବର୍ଷର ଆଦିବାସୀ ଟୋକାଟାଏ । ଗୋଲ ଗୋଲ ଆଖି, ଗ୍ଲେଟ ଚେପ୍‌ଟା ନାକ, ସରଳିଆ ଓଠ ଏବଂ ତା'ଠୁଁ ସରଳ ତା' କଥା ।

ପୂର୍ବଦିନ ଶାନ୍ତନୁଙ୍କୁ ଖାଇବାକୁ ଦେଇ ସେଇଠି ତଳେ ବସିଗଲା ନାରଣ—"ସାର୍ ଏଠି ବାଘ ବେଶି ନାହାନ୍ତି । କେବେ କେମିତି ବାଘ ଗର୍ଜନ ଶୁଣାଯାଏ । ହାତୀ କିନ୍ତୁ ପ୍ରାୟ ଆସେ । ···ହେଲେ ସାର୍, ଦକାଳୁ ସକାଳୁ ଏଠି ସମ୍ବର ହରିଣଙ୍କ ମେଳା ଲାଗିଯାଏ । ସେମାନେ ଟ୍ରେଞ୍ଚ ଭିତରକୁ ପଶିଆସନ୍ତି । ଘାସ ଖାଆନ୍ତି ।" ଟିକିଏ ରହିଯାଇ ସେ ପୁଣି କହିଲା, "ମୋ ସ୍ତ୍ରୀ ବଗିଚା କରିଛି ସାର୍, ତାକୁ ସବୁବେଳେ ନଷ୍ଟ କରିଦିଅନ୍ତି । କ'ଣ ଆଉ କରିବା, ଜଙ୍ଗଲର ପଶୁ ।"

ତାର ବିରକ୍ତି ନାହିଁ । ତା' ପାଇଁ ଜଙ୍ଗଲ କେବଳ ମଣିଷଙ୍କର ନୁହଁ, ପଶୁଙ୍କର ବି । ଏଠି ରହିବାକୁ ହେଲେ ସମସ୍ତଙ୍କ ସାଙ୍ଗରେ ମିଶିକରି ରହିବାକୁ ହେବ ଏବଂ ମିଶିକରିହିଁ ତ ଦଶ ବର୍ଷ ଧରି ରହିଛି ରେଷ୍ଟ ହାଉସରେ । ପ୍ରଥମେ ଯେତେବେଳେ ଆସିଲା ତା' ଦରମା ଥିଲା ଦେଢ଼ଶହ । ଏବେ ବଢ଼ି ବଢ଼ି ଦୁଇଶହ ଦଶ ।

"ପ୍ରଥମେ ମୁଁ ଯେତେବେଳେ ଆସିଲି ସାର୍, ଏଠି ରେଷ୍ଟ ହାଉସ୍ ତିଆରି ହୋଇନି, ଟ୍ରେଞ୍ଚ ଖୋଳା ହୋଇନି । ସାହେବମାନେ ବେଳେବେଳେ ଆସନ୍ତି । କହନ୍ତି—ଆଜି ହେବ, କାଲି ହେବ । ଥରେ ହାତୀ ହାବୁଡ଼ି ଗଲି, ସାର୍ । ମୁଁ ଝରଣାରୁ ଗାଧୋଇ ଫେରୁଥିଲି । ଦନ୍ତାଟା ମାଡ଼ିଆସିଲା ମୋ ଆଡ଼କୁ । ମୁଁ ତା' ଲାଞ୍ଜ ଧରି ଓହ୍ଲାଇଗଲି । ମତେ ସେଇମିତି ଖଣ୍ଡେଦୂର ନେଇଗଲା । କେତେ କଷ୍ଟରେ ଜୀବନ ବଞ୍ଚେଇଛି । ସେଦିନ ଭାବିଲି ଗାଁକୁ ଚାଲିଯିବି । କିନ୍ତୁ ଗାଁରେ କେହି ନାହିଁ । ବାପା ଜରରେ ମରି ପଡ଼ିଗଲା । ମାଆ ଦୁଃଖ ହୋଇ ଚାଲିଗଲା କେଉଁଠିରେ । ଭଉଣୀଟାଏ ଥିଲା ଯେ ତା'ର କି ରୋଗ ହେଲା କେଜାଣି, ସେ ବି ବଞ୍ଚିଲା ନାହିଁ । ରହୁ ରହୁ ରହିଗଲି ଏଠି ।"

ଶାନ୍ତନୁ ମଝିରେ ମଝିରେ ଗୋଟିଏ ଦୁଇଟା ପ୍ରଶ୍ନ ପଚାରନ୍ତି । କିନ୍ତୁ ବେଶି ଭାଗ ଖାଲି ଶୁଣିଯାଆନ୍ତି ନାରଣର କଥା । ସେ କଥାରେ ଆବିଳତା ନାହିଁ । କଥା ବୁଲେଇ ବଙ୍କେଇ କହିବା ଶିଖିନାହିଁ ସେ । ତା' କଥା ସ୍ପଷ୍ଟ । ଭିତର ବାହାର ଏକ ତା'ର । ବାସ୍ତବିକ ଏଇମାନେହିଁ ଈଶ୍ୱରଙ୍କ ସନ୍ତାନ ।

× × × ×

ଦିନ କେମିତି କଟିଯାଉଛି କିଛି ଜଣାପଡ଼ୁନି । ଶାନ୍ତନୁ ପ୍ରଥମେ ଯେତେବେଳେ ସ୍ତ୍ରୀ ଛନ୍ଦାକୁ ଏ ବିଷୟରେ କହିଲେ, ସେ ଆଶ୍ଚର୍ଯ୍ୟ ହୋଇଗଲା । ପରେ ନାକ କୁଞ୍ଚେଇ କହିଲା, "ତୁମେ ଜଙ୍ଗଲକୁ ଯିବ···ତୁମେ ?"

ତା'ର ସେ କି ହସ । "ପ୍ଲିଜ୍ ଗୋ । ଏନ୍‌ଜୟ୍ ୟୋର୍‌ସେଲ୍‌ଫ । କିନ୍ତୁ ମୁଁ ଯାଉନି ଶାନ୍ତନୁ । ସେ ଅନ୍‌ସିଭିଲାଇଜଡ୍ ଜାଗାକୁ ପିଲାଙ୍କୁ ବି ଛାଡ଼ିବନି । ସେ ସମୟଟା ମୁଁ ଭାଇଙ୍କ ପାଖରେ କଟେଇ ଆସିବି । ଗୋଟାଏ କଥା ବରଂ କହିରଖେ—ତୁମେ ସାତଦିନର ପ୍ରୋଗ୍ରାମ କରୁଛ । ଦେଖିବ, ଦୁଇଟା ଦିନ ପରେ ତୁମେ ପାଗଳ ହୋଇଯିବ । ମଣିଷର ମୁହଁ ଖୋଜିବ । ସହରର କୋଳାହଳକୁ ଫେରି ଆସିବାକୁ ଚାହିଁବ । ସେତେବେଳେ କ'ଣ କରିବ, ଶାନ୍ତନୁ ? ଡ୍ରାଇଭର ନଥିବ, ଜିପ୍ ନଥିବ । ଫେରିବାକୁ ଚାହିଁଲେ ବି ଫେରି ହେବନି ।"

ଶାନ୍ତନୁ କେବଳ ଆଲୋଚନା ଆଡ଼େଇଦେଇ କହିଥିଲେ—"ଦେଖାଯାଉ ।"

କି ଆଶ୍ଚର୍ଯ୍ୟ ସତେ ! ପାଞ୍ଚଟା ଦିନ କଟିଗଲାଣି । ଆଉ ଯେ ମାତ୍ର ଦୁଇଦିନର ରହଣି, ଏକଥା ମନେପଡ଼ିଲେ ବି କଷ୍ଟ ଲାଗୁଛି । କେମିତି ଗୋଟିଏ ମାୟା ଅଛି ଏ ଜାଗାର । ଏତେଦିନ କେବଳ ଖାଇବା ପିଇବା, ପ୍ରକୃତି ଉପଭୋଗ କରିବାରେ କଟିଗଲା । କାମ କଥା ଥରେହେଲେ ମନେପଡ଼ିନି । ଆଶ୍ଚର୍ଯ୍ୟ ! ବରଂ ମନ ଭିତର ପରିଷ୍କାର ହୋଇ ଆସୁଛି । କୌଣସି ଟେନ୍‌ସନ୍ ନାହିଁ, ମେଣ୍ଟାଲ୍ ବ୍ଲକ୍ ମଧ୍ୟ ନାହିଁ । ଯେମିତି ନୂଆ ମଣିଷଟିଏ ଶାନ୍ତନୁ ।

"ସାର୍, ଆଜି ଖାଇସାରି ସେ ପାଖ ପାହାଡ଼କୁ ଯିବା । ସେଠି ଖୁବ୍ ସୁନ୍ଦର ଝରଣା

ଅଛୁ ।" ହାତକୁ କଫି ବଢ଼େଇ ଦେଉ ଦେଉ ନାରଣ କହିଲା ।

ପ୍ରଥମ ଥରର ଭୟ ଅନେକଟା କଟିଯାଇଛି ଶାନ୍ତନୁଙ୍କର—ତଥାପି ଏ ପର୍ଯ୍ୟନ୍ତ ନିର୍ଭୀକ ହୋଇ ନାହାନ୍ତି ସେ ।

"ଟ୍ରେଞ୍ଚ ବାହାରକୁ !!" ନାରଣକୁ ଆଉ ଅଧିକା କ'ଣ ସେ କହୁଥାଆନ୍ତେ ? କିନ୍ତୁ ସବୁ ବୁଝିନା ପରି ନାରଣ କହିଲା, "କିଛି ଭୟ ନାହିଁ, ସାର୍ ! ମୁଁ ତ ଥିବ । ଟାର୍ଚ୍ଚ ଆଣିବ ନେଇଯିବ ସାଥିରେ । ହେଲେ ସାର୍, ଏମିତିଆ ସୁନ୍ଦର ଜାଗା ଏ ଜଙ୍ଗଲରେ ଆଉ କୋଉଠି ନାହିଁ ।"

ନିଜର ଦୁର୍ବଳତା ଦେଖାଇବାକୁ ଶାନ୍ତନୁଙ୍କର ପୌରୁଷକୁ ବାଧିଲା । ଏଣେ ପ୍ରକୃତ ଉପଭୋଗ କରିବାର ଲୋଭ । ଶେଷରେ ସେ ରାଜିହେଲେ—"ଆଚ୍ଛା ଆଚ୍ଛା, ଆଜି ଖାଇବା ପରେ ବାହାରିଯିବା ।"

× × × ×

ଝରଣା କଡ଼ରେ ପଡ଼ିଥିବା ବଡ଼ ବଡ଼ କଳା ପଥର ଉପରେ ବସି ଶାନ୍ତନୁ ଭାବୁଥିଲେ ଏ ଜାଗାକୁ ଆସିନଥିଲେ ନିଶ୍ଚୟ ଗୋଟିଏ ବଡ଼ ଅଭାବ ରହିଯାଇଥାଆନ୍ତା । ପ୍ରକୃତିର ଗନ୍ତାଘରେ ସାଇତା ହୋଇ ରହିଥିବା ରୂପସମ୍ଭାର ସାଙ୍ଗରେ କିଛି ଭୟମିଶ୍ରିତ ମିଶିଯାଇ ସୌନ୍ଦର୍ଯ୍ୟକୁ ଯେପରି ଆହୁରି ବଢ଼େଇ ଦେଇଛି । ଝରଣା ପାଣିରେ ମୁହଁ ଧୋଇଲେ ସେ । ପୁଣି ଅଞ୍ଜୁଳା ଅଞ୍ଜୁଳା କରି ପିଇନେଲେ କିଛି ପାଣି ।

"ସାର୍, ଏଇଠି ଦଣ୍ଡୁ କୋଇ ସାଙ୍ଗରେ ମୋର ଆଗ ଦେଖାହୋଇଥିଲା । ସେ ଶାଲମଞ୍ଜି ଗୋଟାଉ ଗୋଟାଉ ଥକିଯାଇ ପାଣି ପିଇବାକୁ ଆସିଥିଲା । ଆଉ ମୁଁ ଆସିଥିଲି କେଇଜଣ ସାହେବଙ୍କୁ ଏ ଝରଣା ଦେଖାଇବାକୁ । ସେଦିନ ମୋ ମନ ଖୁସି ହୋଇଗଲା ତାକୁ ଦେଖି । ତା'ପର ହାଟପାଳିଦିନ ତାକୁ ମୁଁ ହାଟରେ ଦେଖିଲି । ପଚାରିଲି, ବା' ହବୁ ? ସେ ରାଜି ହୋଇଗଲା । ନେଇଆସିଲି ଆଜ୍ଞା···ତା' ବାପକୁ ଦ୍ୱେଶହ ଟଙ୍କା ଦେବାର ବାକି ଅଛି । ମୋ ପାଖରେ ଏତେ ଟଙ୍କା କାହିଁ, ବାବୁ । ଦେଉଛି ଅଳପ ଅଳପ କରି ।"

ଜଙ୍ଗଲରେ ବି ପ୍ରେମ ହୁଏ । ଅଶିକ୍ଷିତ ଏବଂ ତଥାକଥିତ ସଭ୍ୟତାର ପାଖ ମାଡ଼ି ନଥିବା ଆଦିବାସୀ ଜୀବନରେ ବି ବସନ୍ତ ଆସେ !! ତା' ମନ ବି ବ୍ୟାକୁଳ ହୁଏ ଅଜଣା ଅଶୁଣା ପ୍ରାଣଟିଏକୁ ଖୁବ୍ ନିଜର କରିନେବାପାଇଁ । ହସିଲେ ଶାନ୍ତନୁ ।

ଏଇ ନାରଣ ହୋ'—କି ଡ୍ରାମାଟିକ୍ ତା' ଜୀବନ ସତେ ! ଡ୍ରାମାଟିକ୍ ! ନାଟକୀୟ !! ନାଟକ !!! ସିନେମା ? ଶାନ୍ତନୁଙ୍କର ଦେହ ହାତ ସ୍ଥିର ହୋଇଗଲା । ଏଇ ତ, ହାତ ପାଖରେ ଚରିତ୍ର ! ସିନେମା କରିବା ପାଇଁ କେତେ ଲେଖକଙ୍କ ସାଙ୍ଗରେ ଆଲୋଚନା, କେତେ ଗପ ପଢ଼ା; କିନ୍ତୁ ଏଭଳି ଚରିତ୍ର କାହିଁ ? ପ୍ରକୃତି ଯେଉଁ ଚରିତ୍ରକୁ ନିଜ ହାତରେ ଗଢ଼ିଛି, ତା'ଠୁଁ ସୁନ୍ଦର ଆଉ କ'ଣ ହୋଇପାରିଥାଆନ୍ତା ?

"କ'ଣ ହେଲା, ସାର୍ ?"

"ଏଁ…ନା ।" ନିଜ ଉପରେ ନିୟନ୍ତ୍ରଣ ଆଣିଲେ ସେ, "ସିବା, ନାରଣ ?"

"ଗ୍ଲଲନ୍ତୁ ।"

× × × ×

ମୁଣ୍ଡକୁ ଦୁଇ ହାତରେ ଧରି ଟେବୁଲ ଉପରେ କହୁଣୀ ରଖି ଅଫିସ୍‌ରେ ବସିଥିଲେ ଶାନ୍ତନୁ । ଠିକ୍ ସାମ୍ନାରେ ବସିଛୁ ସହକାରୀ ହରୀଶ୍ । ତା' ମୁହଁ ଶୁଖିଲ । ଖୁଷଣ ଅପ୍ରସ୍ତୁତ ଭାବରେ ଦୁଇ ହାତ ମଳୁଛୁ ସେ ।

"ପ୍ଲିଜ୍ ହରୀଶ୍, ଯୁ।' ପରଠୁଁ ମୋ ପାଖକୁ କାହାକୁ ଆଣିବା ଆଗରୁ ତୁମେ ନିଜେ ଥରେ ଟେଷ୍ଟ୍ ନେଇନେବ । ପାଗଳ ସବୁ—ଏମାନେ ପୁଣି ନିଜକୁ ଅଭିନେତା କହନ୍ତି ! ଭାବିଥିଲି ଫ୍ରେଶ୍ ମୁହଁ ନେଲେ ବେଶି ବାସ୍ତବ ହେବ । କିନ୍ତୁ ଏମାନେ…ଗଡ୍ ହେଲ୍‌ପ ଦେମ୍ ! ଏତେ ବଡ଼ ବଡ଼ ଇନ୍‌ଷ୍ଟିଚ୍ୟୁଟର ଡିଗ୍ରୀ, ଷ୍ଟେଜ୍‌ର ଅଭିଜ୍ଞତା—ଅଥଚ ସାମାନ୍ୟ ଗୋଟିଏ ଆଦିବାସୀ ଯୁବକର ଅଭିନୟ ଏମାନେ କରିପାରୁନାହାନ୍ତି । ଫୁଲ୍‌ସ୍…"

କବାଟରେ ଠକ୍ ଠକ୍ ଶବ୍ଦ ହେଲା—"ମେ ଆଇ କମ୍ ଇନ୍ ?"

"ୟେସ୍ ।" ଶାନ୍ତନୁଙ୍କ କଣ୍ଠରେ ବିରକ୍ତି ।

ଭିତରକୁ ପଶିଆସିଲା ଦେବେନ୍ଦ୍ର, ତାଙ୍କର ସେକ୍ରେଟାରୀ । ହଠାତ୍ ସବୁତକ ରାଗ ତା'ର ଉପରେ ଝାଡ଼ିଦେଲେ ଶାନ୍ତନୁ । "ତୁମେ ଏତେ ସମୟ ଥିଲ କେଉଁଠି ଦେବୁ ? ଆସି ତିନିଟା ବାଜିଲାଣି । ଏଇଟା ଅଫିସ୍ ଆସିବା ସମୟ ?"

"ଗୁଡ୍ ନିଉଜ୍ ସାର୍ । ଅର୍ଣ୍ଣବ କୁମାରଙ୍କ ସେକ୍ରେଟାରୀ ସାଙ୍ଗରେ ଲଞ୍ଚ ଖାଇ ଫେରୁଛି । ସେ କହୁଥିଲେ…"

"ଦେବୁ"—ଦେବେନ୍ଦ୍ରର କଥା ବନ୍ଦ କରେଇଦେଲେ ଶାନ୍ତନୁ, "ତୁମେ ବୋଧହୁଏ ଭୁଲିଯାଇଛ ଯେ ଏଇଟା ଗୋଟାଏ ଲୋ ବଜେଟ୍ ଫିଲ୍ମ । ଅର୍ଣ୍ଣବ କୁମାର ଭଳି ସୁପର୍ ଷ୍ଟାର୍‌ଙ୍କୁ ନେବା ଭଳି କ୍ଷମତା ମୋର ନାହିଁ । ସିଇନ୍ ?"

ଶାନ୍ତନୁଙ୍କର କଥା ନଶୁଣିବା ଭଳି ଦେବେନ୍ଦ୍ର ଅବିଚଳିତ ଭାବରେ କହିଲା, "ସେ କହୁଥିଲେ ଯେ ଅର୍ଣ୍ଣବ କୁମାର ଇମେଜ୍ ଚେଞ୍ଜ ପାଇଁ ରୋଲ୍ ଖୋଜୁଛନ୍ତି । ସେ ଚାହାନ୍ତି ଆର୍ଟିଷ୍ଟିକ୍ ଫିଲ୍ମ, ଭଲ ଡାଇରେକ୍ଟର, ଭଲ ଚରିତ୍ର—ପାରିଶ୍ରମିକର ପ୍ରଶ୍ନ ହିଁ ନାହିଁ ।"

ଉଚ୍ଛ୍ୱସିତ ଭାବରେ ଚୌକିରୁ ଉଠିଯାଇ ଦେବୁର ପିଠିରେ ଦୁଇ ଚାପୁଡ଼ା ମାରି ଶାନ୍ତନୁ କହିଲେ, "ୱେଲ୍ ଡନ୍, ଦେବୁ । ବର୍ତ୍ତମାନ ଫୋନ୍‌କରି ଅର୍ଣ୍ଣବଙ୍କ ସାଙ୍ଗରେ ଗୋଟାଏ ଡିନର୍ ଆପଏଣ୍ଟମେଣ୍ଟ୍ ଠିକ୍ କର—କୁଇକ୍ ।" ଅଫିସ କବାଟ ଆଉଜାଇ ଦେଇ ସେ ବାହାରକୁ ବାହାରିଗଲେ ।

× × × ×

"ଅର୍ଣ୍ଣବ କୁମାର ହିରୋ ?" ଛନ୍ଦା ଖୁସିରେ ହସିପକେଇଲା, "ବାସ୍, ଛବି ହିଟ୍ ହେଲା ଜାଣ । …ସୁଟିଙ୍ଗ୍ ବେଳେ ମୋ ସିବା ବ୍ୟବସ୍ଥା କରିବାକୁ ଭୁଲିବନି । ଅର୍ଣ୍ଣବ କୁମାର

ସାଙ୍ଗରେ ଚିତ୍ରାପରିଚୟ ତ ହୋଇଯିବ । ତାଙ୍କ ଗାର୍ଲ ଫ୍ରେଣ୍ଡ ଅମିଶାକୁ ଦେଖିବାର ଖୁବ ଇଚ୍ଛା । ଅମିଶା ଦାଦ୍‌ଲାନୀ—ମଡେଲ ମ ! ଯେତ୍...ତୁମେ ତ କାହାକୁ ଚିହ୍ନନା । ଆଚ୍ଛା କୁହ ତ ସୁଟିଙ୍ଗ୍ କେବେ ?"

ସ୍ୱୀକାରିଲେ ଶାନ୍ତନୁ, "କିଛି ଠିକ୍ ହୋଇନି । ଅର୍ଣ୍ଣବକୁମାର ଡେଟ୍ ଇତ୍ୟାଦି ନେଇ ସବୁ ରକମର କୋଅପରେଟ୍ କରିବାକୁ ପ୍ରସ୍ତୁତ । କିନ୍ତୁ ସେ ନାୟକ ହୋ'ର ସେଇ ସରଳ ଏକ୍ସପ୍ରେସନ୍ ତାଙ୍କ ମୁହଁରେ ଠିକ୍ ଫୁଟେଇ ପାରୁନାହାନ୍ତି । ସେଇଥିପାଇଁ..."

"ଡୋଣ୍ଟ୍ ବି ସିଲି, ଶାନ୍ତନୁ ! ଅର୍ଣ୍ଣବ କୁମାର ଭଳି କେତେଜଣ ଅଭିନୟ କରନ୍ତି ?"

"ତା' ଠିକ୍ ଛନ୍ଦା ! କିନ୍ତୁ ତାଙ୍କ ଅଭିନୟରେ କେଉଁଠି ଗୋଟାଏ ଅବାସ୍ତବତା ରହି ଯାଉଛି । ଅର୍ଣ୍ଣବ ଅର୍ଣ୍ଣବ ହିଁ ରହିଯାଉଛନ୍ତି । ମୁଁ ଚାହେଁ, ଯିଏ ତାଙ୍କୁ ଫିଲ୍ମରେ ଦେଖିବ ସେ ଭୁଲିଯିବ ଯେ ଏ ଜଣେ ସୁପର୍ ଷ୍ଟାର୍ । ମୁଖ୍ୟ ଚରିତ୍ର କେବଳ ନାୟକ ହୋ' । ସେଇଥିପାଇଁ ଅର୍ଣ୍ଣବଙ୍କୁ ନେଇ ମୁଁ ଦୁଇଦିନ ପାଇଁ ଜଙ୍ଗଲ ରେଷ୍ଟ ହାଉସ୍‌କୁ ଯାଉଛି । ସେ ଭଲକରି ନାୟକଙ୍କୁ ଲକ୍ଷ୍ୟ କରିବେ—ତା' କଥାବାର୍ତ୍ତା ଭଙ୍ଗୀ, ମ୍ୟାନେରିଜମ୍ ଇତ୍ୟାଦି ।"

"ଶାନ୍ତନୁ, ମୁଁ ଯିବି ପ୍ଲିଜ୍ । ଦେଖ ଜିତୁ, ରିଙ୍କି ଅର୍ଣ୍ଣବ କୁମାରଙ୍କର ବିରାଟ ଭକ୍ତ । ସେମାନେ ବି ଖୁବ୍ ଖୁସି ହେବେ ।"

"ଛନ୍ଦା, ଭିଡ଼ କରି କ'ଣ ଲାଭ କୁହ ? ମୁଁ କାମରେ ଯାଉଛି । ତୁମେମାନେ ବରଂ ସୁଟିଙ୍ଗ୍ ବେଳେ ଯିବ ।"

"ପ୍ଲିଜ୍, ମନା କରନି । ଆମେ ତୁମକୁ ଆଦୌ ଡିଷ୍ଟର୍ବ କରିବୁ ନାହିଁ । ବିଶ୍ୱାସ କର ।"

ଉଠି ଯାଉ ଯାଉ ଶାନ୍ତନୁ କହିଲେ, "ଠିକ୍ ଅଛି, ପଚିଶ ତାରିଖ ସକାଳୁ ଦାସ କହିଛି ସେ ନିଜେ ନେଇଯିବ ।"

× × × ×

ଅର୍ଣ୍ଣବ କୁମାରଙ୍କୁ ନେଇ ମ୍ୟାଟାଡୋର୍ ଭିତରେ ପଶିଲାବେଳକୁ କେମିତି ଏକ ଅସ୍ୱସ୍ତି ଶାନ୍ତନୁଙ୍କୁ ଘେରିଗଲା । ତାଙ୍କୁ ଲାଗିଲା କିଛି ଗୋଟାଏ ଏପଟ ସେପଟ ହୋଇଛି ବା ହେବ । ମ୍ୟାଟାଡୋର୍ ଚଲାଉଛି ସୁରେନ୍ଦ୍ର ଦାସ୍ ନିଜେ । ଦାସ୍ ପଛପଟ ସିଟ୍‌ରେ ଛନ୍ଦା ଓ ରୂପସୀ—ଦାସର ସ୍ତ୍ରୀ । ସେମାନଙ୍କର ଠିକ୍ ପଛରେ ଅଭି, ବିଟୁ—ଦାସ୍‌ର ପୁଅ ଦୁଇଜଣ ଏବଂ ଜିତୁ ଓ ରିଙ୍କି । ଦାସ୍ ପାଖରେ ବସିଲେ ଶାନ୍ତନୁ । ତାଙ୍କ ପାଖରେ ଅର୍ଣ୍ଣବ କୁମାର । ପଛ ସିଟ୍ ଖୋଲ୍ ଭିତରେ ବସିଲା ତାଙ୍କର ସେକ୍ରେଟାରୀ ।

ଚାରି ଘଣ୍ଟାର ଯାତ୍ରା ଯେମିତି ଚାରିଟା ଯୁଗ ଲାଗିଗଲା । ମନ ଭିତରେ ତଥାପି ଗୁଡ଼େଇ ଗୁଡ଼େଇ ହେଉଛି ଶାନ୍ତନୁଙ୍କର । ନା—ଭୁଲ୍ ହୋଇଗଲା । ଅର୍ଣ୍ଣବଙ୍କ ଯିବା ବିଷୟ କାହାକୁ କହିବା ଉଚିତ ନଥିଲା—ସୁରେନ୍ଦ୍ର ଓ ଛନ୍ଦାକୁ ମଧ୍ୟ ନୁହଁ । ଏତେ ବଡ଼ ଗୋଟାଏ ଗୁରୁତ୍ୱପୂର୍ଣ୍ଣ କାମରେ ସେ ଯାଉଛନ୍ତି, କିନ୍ତୁ ମନେହେଉଛି ଯେମିତି ଏକ ପିକ୍‌ନିକ୍ । କେଡ଼େ କଥା

ଅର୍ଣ୍ଣବଙ୍କ ସାଙ୍ଗରେ ଆଲୋଚନା କରିବାର ଥିଲା । ତାଙ୍କ ଭଳି ଜଣେ ବ୍ୟସ୍ତ ଅଭିନେତାଙ୍କ ପାଖରେ ଘଣ୍ଟାଘଣ୍ଟା ପାଇଁ ପାଇବା କ'ଣ କମ୍ କଥା ? ଗଲା—ଏତେଗୁଡ଼ାଏ ସମୟ ହାତରୁ ଗଲା । ରାଜେନ୍ଦ୍ରର ଛୋଟ ଛୋଟ ଅବାନ୍ତର ପ୍ରଶ୍ନ; ଛଦା, ଉପସୀଙ୍କ ଗୃପା ହସ ଓ ଫୁସ୍‌ଫୁସ୍ କଥା ଏବଂ ପିଲାଙ୍କର ପାଟିତୁଣ୍ଡ—ଏସବୁ ଭିତରେ କ'ଣ କିଛି ସିରିୟସ୍ କାମ ହୁଏ ? ବାଧ ହୋଇ ବହି ଖଣ୍ଡେ ଧରି ବସିଲେ ଶାନ୍ତନୁ ।

ପାଖେଇ ଆସିଲାଣି ରେଷ୍ଟ ହାଉସ୍ । ଥରେ ପହଞ୍ଚିଗଲେ ସେ ସମସ୍ତଙ୍କୁ ଠିକ୍ କରିଦେବେ । ରେଷ୍ଟ ହାଉସ୍‌ର ଉପର ଫ୍ଲୋର୍ ଯେଉଁଟା ଅର୍ଣ୍ଣବଙ୍କ ପାଇଁ ସମ୍ପୂର୍ଣ୍ଣ ରୂପେ ରିଜର୍ଭଡ୍ ସେଠି କାହାକୁ ପଶିବାକୁ ଦେବେନି ସେ । ସେଇଠିକି ନାରଣକୁ ବିଭିନ୍ନ ଆଳରେ ଡକେଇ ତା' ସାଙ୍ଗରେ କଥାବାର୍ତ୍ତା, ଗପସପ କରିବାକୁ ହେବ । ସେଇ ସୁବିଧାରେ ତା'ର ଚାଲିଚଲଣ ଇତ୍ୟାଦି ଭଲ କରି ଲକ୍ଷ୍ୟ କରିବେ ଅର୍ଣ୍ଣବ । ଏଠୁ ଫେରିବା ପରେ ସାଙ୍ଗେ ସାଙ୍ଗେ ସୁଟିଙ୍ଗ୍ ଆରମ୍ଭ ହେବ ।

ହଠାତ୍ ବହି ବନ୍ଦ କରି କାନେଇଲେ ଶାନ୍ତନୁ । ରେଡ଼ିଓ ? ଜଙ୍ଗଲ ଭିତରେ ରେଡ଼ିଓ ? ବଣୁଆ ଚଢ଼େଇଙ୍କ ଡାକ ବା ମାଙ୍କଡ଼ର ହୁଁ ହୁଁ କାର—ଯା'ଛଡ଼ା ପ୍ରାୟ କୌଣସି ଶବ୍ଦ ଇ ଶୁଣାଯାଏ ନାହିଁ । ସବୁ କିଛି ଶାନ୍ତ, ନିସ୍ତବ୍ଧ । ତା'ହେଲେ ଏ ରେଡ଼ିଓ ? ଦାସ୍‌ଙ୍କ ମୁହଁକୁ ଚାହିଁଲେ ସେ ।

ରେଡ଼ିଓରୁ ଭାସିଆସୁଥିବା ସିନେମା ଗୀତ ରାଜେନ୍ଦ୍ରଙ୍କ କାନରେ ପଡ଼ୁଛି । ତାଙ୍କ କାନମୁଣ୍ଡା ଲାଲ, ମୁହଁରେ ଲଜ୍ଜିତ ଗୋଟାଏ ଭାବ । ତେବେ କ'ଣ ଦାସ୍...?

"ଆକ୍‌ଚୁଆଲି ଶାନ୍ତନୁ, ଆମ ଡାଇରେକ୍ଟରଙ୍କଠାରୁ ମୁଁ ଯେତେବେଳେ ପର୍‌ମିଶନ୍ ଆଣିବାକୁ ଯାଇଥିଲି, ସେ ରେଷ୍ଟ ହାଉସ୍‌କୁ ଆସିବା ପାଇଁ ଚାହିଁଲେ । ମୁଁ ଠିକ୍ ମନାକରି-ପାରିଲିନି । କିନ୍ତୁ ବିଶ୍ୱାସ କର, ସେ ଯେ ଫ୍ୟାମିଲି ନେଇ ଆସିବେ, ଏକଥା ଜାଣିଥିଲେ..."

ପ୍ରାୟ ଅସାଡ଼ ଭାବରେ ବସିଥିଲେ ଶାନ୍ତନୁ । ମୁହଁର ସବୁ ମାଂସପେଶୀ କଠିନ ହୋଇ ଯାଇଛି ।

ଟ୍ରେଞ୍ଚ ଉପରେ ପଡ଼ିଥିବା କାଠ ଖଣ୍ଡ ଉପର ଦେଇ ମ୍ୟାଟାଡୋର୍ ଭିତରକୁ ପଶିଲା ।

ରେଷ୍ଟ ହାଉସ୍ ସାମ୍ନା ଲନ୍‌ରେ ହେଉଛି କ'ଣ ? ମଝିରେ ନାରଣ, ତା' ଚାରିପାଖରେ ତାକୁ ଘେରି ସ୍ତ୍ରୀ, ପୁରୁଷ, ପିଲା ହୋଇ ପ୍ରାୟ ଦଶ ପନ୍ଦର ଜଣ । ଯାହା ଜଣାପଡ଼ୁଛି ଦାସ୍‌ର ବସ୍ କେବଳ ପରିବାର ନୁହେଁ, ସାହି ପଡ଼ିଶା, ବନ୍ଧୁବାନ୍ଧବ ସମସ୍ତଙ୍କୁ ଧରି ଆସିଛନ୍ତି । ଶାନ୍ତନୁ ତଥାପି କିଛି କହିଲେ ନାହିଁ ।

ଚିଡ଼ିଆଖାନାରେ ଜନ୍ତୁଟିଏ ଯେମିତି ନାରଣ । ମୁହଁରେ ତା'ର ଅଦ୍ଭୁତ ଏକ ଭଙ୍ଗୀ । ସେ ଅବାକ୍ ହୋଇଯାଇଛି, ସ୍ତବ୍ଧ ହୋଇଯାଇଛି । କେଉଁ କାରଣରୁ ଯେ ତାକୁ ନେଇ ସମସ୍ତଙ୍କର ଏପରି ଗଦ୍‌ଗଦ ଭାବ କିଛି ବୁଝିପାରୁନି ସେ । ଏବଂ କେବେ କୌଣସି ଜଟିଳତା ଭିତରେ ପଶି ନ ଥିବା ନାରଣର ମୁଣ୍ଡ ଭିତରେ କ'ଣ ସବୁ ଗୋଳମାଳ ହୋଇଯାଉଛି ।

ହଠାତ୍ ଛଟ୍‌କି ପଡ଼ିଲେ ସମସ୍ତେ—"ହେଇରେ ଆସିଗଲେ ।"

ଗ୍ରେଡ଼ିଆ ଭଡ଼ିଟି ନାରଣ ସ୍ତ୍ରୀରପାଖରୁ ସିଧା ଆସି ମ୍ୟାନେଜର୍‌କୁ ଯେଉଁଗଲା । ସ୍ପଷ୍ଟ ନିର୍ଲିପ୍ତ ଭାବରେ ଅର୍ଣ୍ଣବଙ୍କୁ ତନ୍ନତନ୍ନ ଆଖିରେ ପରୀକ୍ଷା କରୁଥାଆନ୍ତି ସେମାନେ । ଏ ସବୁରେ ଖୁବ୍ ଭଲଭାବରେ ଅଭ୍ୟସ୍ତ ଅର୍ଣ୍ଣବକୁମାର । ନିର୍ବିକାରଭାବରେ ଭିଡ଼ କାଟି ଯାଉ ଯାଉ ଶାନ୍ତନୁଙ୍କୁ କହିଲେ, "ମିଷ୍ଟର ଚୌଧୁରୀ, କିଛି ସମୟ ରେଷ୍ଟ ନେବି । ଏଠି ଚା'ର ବ୍ୟବସ୍ଥା ତ ନିଶ୍ଚୟ ଥିବ···"

"ଅଫ୍‌କୋର୍ସ ! ଆରେ ନାରଣ···ବାବୁଙ୍କୁ ତାଙ୍କ ରୁମ୍ ଦେଖାଇ ଦେ ତ—ଆଉ ଚା' ଟିକିଏ କର ।"

ଏତେ ସମୟ ଧରି ହତବାକ୍ ହୋଇଯାଇଥିବା ନାରଣ ହଠାତ୍ ଫେରିପାଇଲା ଯେମିତି । ଅର୍ଣ୍ଣବଙ୍କ ସ୍କାଏବ୍ୟାଗ୍‌ଟି କାନ୍ଧରେ ପକେଇ କହିଲା, "ଆସନ୍ତୁ ସାର୍ !"

ସାମ୍ନାରେ ଅର୍ଣ୍ଣବ । ତାଙ୍କ ପାଖାପାଖି ଚାଲିଛି ନାରଣ । ଅର୍ଣ୍ଣବଙ୍କ ବାଁପଟେ ତାଙ୍କ ସେକ୍ରେଟାରି । ପ୍ରାୟ ଗୋଟାଏ ମିଟର ପଛରେ ମାର୍ଚ୍ଚିଂ କଲା ଭଳି ଗ୍ରେଟ ଜନତା ଦଳଟି ଚାଲିଥିଲେ । ଫୁସ୍‌ଫୁସ୍ କଥା, କରିକିରି ହସ ମଝିରେ 'ଫିଲ୍‌ମ', 'ଆଦିବାସୀ', 'ଅର୍ଣ୍ଣବ କୁମାର', 'ନାୟକ ହେବ' ଏହିଭଳି କେତେଟା ଶବ୍ଦ ଖାଲି ଶୁଣାଯାଉଥିଲା ।

ନାରଣ ବିବ୍ରତ ହୋଇପଡ଼ୁଥିଲା । ବିସ୍ମୟ, ଭୟ, ଆଶଙ୍କା ସବୁ ଏକାଠି ହୋଇ ଏକ ଅଦ୍ଭୁତ ଭାବ ତାକୁ ଘେରିଯାଇଥିଲା । ସାବଲୀଳ ଜୀବନଯାତ୍ରାରୁ ଛିଟିକିଯାଇ କଡ଼କିଆ ହୋଇ ତା'ର ଜୀବନଟି । ହଠାତ୍ ଅଜଣା ଅଶୁଣା ନାରଣ ମହାପ୍ରାଣ୍ ହୋଇଗଲା କେମିତି ? ଦୁଇଶହ ତିରି ଟଙ୍କାର ଚାକିରି ତା'ର ଦଶବର୍ଷ ପରେ ବି ସ୍ଥାୟୀ ହୋଇନି । ଶାଗ ସିଝା ଭାତ ଖିଆ ପଚିଶ ବର୍ଷର ଜୀବନ—କ'ଣ ଏମିତି ପରିବର୍ତ୍ତନ ଆସିଲା ଯେ ସମସ୍ତେ ତାକୁ ଘେରି ପ୍ରଶ୍ନ ପରେ ପ୍ରଶ୍ନ କରିଗଲେ ?

ଯେଉଁମାନେ ଜଙ୍ଗଲକୁ ଆସନ୍ତି ସେମାନେ ବହୁ ପ୍ରଶ୍ନ ପଚାରନ୍ତି । କିନ୍ତୁ ସେ ସବୁ ଜଙ୍ଗଲ ସମ୍ବନ୍ଧରେ, ପାହାଡ଼ ବିଷୟରେ ବା ଜୀବଜନ୍ତୁଙ୍କୁ ନେଇକରି । ସେଠି ନାରଣ ହେବା'ର ଅସ୍ତିତ୍ୱ ନାହିଁ । କେତେବେଳେ କେମିତି 'ତୁମ ଘର କେଉଁଠି' ? ବା 'କେବେଠୁଁ ଅଛ' ? ଭଳି ପ୍ରଶ୍ନଟିଏ—ବାସ୍—ସେଇ ଯଥେଷ୍ଟ । କିନ୍ତୁ ଆଜି ସକାଳଠୁଁ ତାକୁ ନେଇ ସମସ୍ତଙ୍କର ଏମିତି କୌତୂହଳ ? ପୁଣି କି ସବୁ ପ୍ରଶ୍ନ, ଚେଷ୍ଟା କଲେ ବି କୌଣସିଟିର ଉତ୍ତର ସେ ଦେଇପାରିବନି ।

"ତୁମକୁ ନେଇ ସିନେମା ହେବ, ଜାଣ ?"

"ସିନେମା ? ସେ ପୁଣି କ'ଣ ? ଗାଁରେ ଡ୍ରାମା ହୁଏ—ସେଇଭଳି କିଛି ହୁଏତ ।"

"ଅର୍ଣ୍ଣବ କୁମାର ଅଭିନୟ କରିବେ ।" ଆଗରୁ କେବେ ସେ ନାଁ ଶୁଣିନଥିଲା ନାରଣ ।

"ସେ ସବୁ ତୁମଠୁଁ ତୁମ ହାବଭାବ ଶିଖିବାକୁ ଆସିଛନ୍ତି···ହଃ ହଃ ।"

ହାବଭାବ କି ଜିନିଷ ?

"ତୁମେ ଏଥର ତାଙ୍କ ସାଙ୍ଗରେ ସହରକୁ ଚାଲିଯିବ କି ?"

ସହର ? ପଚିଶ ବର୍ଷ ଧରି ସେ ଜଙ୍ଗଲରେ ପଡ଼ିରହିଛି । ଜଙ୍ଗଲ ଭିତରର କେତୋଟି ଆଦିବାସୀ ଗାଁଛଡ଼ା ଆଉ କୁଆଡ଼େ ଯାଇନି ନାରଣ । ଯିବାକୁ ମନ କେବେବଳେଇନି । ଆଉ ଏବେ ସେ ସହରକୁ ଯିବ କାହିଁକି ?

"ବାଃ ରେ, ତୁମେ ଏତେ ଫେମସ୍ ହୋଇଯିବ—ତୁମକୁ ଲୋକ ଦେଖିବେ ।"

ଲୋକ ଦେଖିବେ ? ମଣିଷଟିଏ ମଣିଷକୁ ଦେଖିବ କାହିଁକି ?

ସ୍ତ୍ରୀ' ଉତ୍ତରରେ ଗୁଡ଼ାଏ ହସିଥିଲେ ସମସ୍ତେ ।

"ବ୍ଲଡ଼ି ସିଂପଲ୍‌ଟନ୍ ।"

"ନା ନା—ଗୁରୁ ଆଲ୍ଡର ।"

"କରେକ୍ଟ—ଯଷ୍ଟ୍ ସି ହିଜ୍ ଏକ୍‌ସପ୍ରେସନ୍‌ସ୍ ।"

ଏଇଭଳି ବୁଝିପାରି ନଥିବା କଥା କେତୋଟି ନାରଣ ଶୁଣିଲା । କିନ୍ତୁ ଏତିକି ଜାଣି ପାରିଲା ଯେ ସେ ହିଁ ଚର୍ଚ୍ଚାର ବିଷୟ । ତାକୁ ଇ ନେଇ ଯେତେ ସବୁ ଆଲୋଚନା ।

କବାଟରୁ ତାଲା ଖୋଲି ଭିତରକୁ ପଶିଲା ନାରଣ । ବ୍ୟାଗ୍‌ଟିକୁ ଟେବୁଲ ଉପରେ ରଖି କହିଲା, "ଚା' କରି ଆଣୁଛି ସାର୍ ।"

ଖଟ ଉପରେ ବସିପଡ଼ି ଭିଡ଼ିମୋଡ଼ି ହେଉ ହେଉ ଅର୍ଣ୍ଣବ କହିଲେ, "ହଁ ହଁ, ନେଇ ଆସ । ବସି ଟିକିଏ କଥାବାର୍ତ୍ତା କରିବା । ତୁମକୁ କେତେଟା କଥା ପଚାରିବାର ଥିଲା ।"

ସତେ କି ଗଛ ଉପରୁ ଖସିପଡ଼ିଲା ନାରଣ । ପ୍ରଶ୍ନ ? ଆଉ୍ବରି ପ୍ରଶ୍ନ ? ତାକୁ ଘେରି ଯାଇ ତାକୁ ଇ ନେଇ ଆଉରି ଚର୍ଚ୍ଚା ଆଲୋଚନା ? ନା—ନା—ନା—କଳା ମୁହଁ ବେଶି କଳା ହୋଇଗଲା ତା'ର । ନିଃଶ୍ୱାସର ବେଗ ବଢ଼ିଗଲା । ଆଖି ଦୁଇଟି ବଡ଼ ବଡ଼ ହୋଇ ସତେ ଯେମିତି ବାହାରକୁ ବାହାରି ଆସିବ । ନା—ନା—ନା···

ଶିକାରୀର ବନ୍ଧୁକ ସାମ୍ନାରୁ ଖସିବା ପାଇଁ ଚେଷ୍ଟା କରୁଥିବା ଭୟାର୍ତ୍ତ ହରିଣଟିଏ ପରି ଘର ଭିତରୁ ଦୌଡ଼ିଲା ପରି ବାହାରିଗଲା ନାରଣ । ଭିତରକୁ ପଶିଆସୁଥିଲେ ଶାନ୍ତନୁ । ତାଙ୍କ ସହିତ ଧକ୍‌କା ଖାଇ ପଡ଼ି ଯାଉ ଯାଉ ନିଜକୁ ସମ୍ଭାଳି ନେଇ ସେ ଦୌଡ଼ି ଚାଲିଗଲା ।

"ନା ନା ।" ଖୁବ୍ ଆସ୍ତେ ତା' ପାଟିରୁ ବାହାରିଗଲା "ନା ।"

ଅଟକିଗଲେ ଶାନ୍ତନୁ । ଆଶ୍ଚର୍ଯ୍ୟ ହୋଇ ସେ ନାରଣରେ ଯିବା ବାଟକୁ ଚାହିଁ କ'ଣ ଚିନ୍ତା କରୁଥିଲେ । ପ୍ରକୃତିର କମନୀୟତାକୁ ଦୂଷିତ କରିବା ପାଇଁ ତାଙ୍କର କି କୌଣସି ଅଧିକାର ଅଛି ?

ଅବାକ୍ ହୋଇ ଅର୍ଣ୍ଣବ ଶାନ୍ତନୁଙ୍କ ପାଖକୁ ଚାଲିଆସିଲେ, "ଆଦିବାସୀ ପିଲାଟିର ପୁଣି ହେଲା କ'ଣ ମିଷ୍ଟର ଚୌଧୁରୀ ? ମୁଁ···"

ଶାନ୍ତନୁ କିଛି ଗୋଟିଏ ନିଷ୍ପତ୍ତି ନେବାର ଚେଷ୍ଟା କରୁଥିଲେ । ମୁହଁ ବୁଲାଇ ଆଣି ସେ କହିଲେ, "ଆଜି ଦ୍'ପହରେ ଲଞ୍ଚ୍ ଖାଇ ଫେରିଯିବା, ଅର୍ଣ୍ଣବ ।"

□□□

# କେତୋଟି ଏକାନ୍ତ ମୁହୂର୍ତ୍ତ ପାଇଁ

ଜଳଖିଆ ଭଲକରି ନଖାଇ କୁନା ଚାଲିଗଲା ବାଲେଶ୍ୱର । ତା' ଅଇଁଠା ପ୍ଲେଟ୍‌କୁ କନକ ଲୁହ ଡବଡବ ଆଖିରେ ଟେବୁଲ୍‌ରୁ ଉଠେଇନେଲେ । ଗଲାବେଳେ ପଦଟିଏ କଥା କହିନି ସେ । ପାଦରେ ହାତ ଦେଇ ପ୍ରଣାମ କରି ଗଲା । ସ୍କୁଟର୍ ନେଇ ତା'ର କେଉଁ ସାଙ୍ଗ ଆସିଥିଲା ତା' ସାଙ୍ଗରେ ବସ୍ ଷ୍ଟାଣ୍ଡକୁ ଚାଲିଗଲା । ବାହାରେ ଚୌକି ପକେଇ ସଚ୍ଚିଦାନନ୍ଦ ଖବରକାଗଜ ପଢ଼ୁଥିଲେ—ତାଙ୍କୁ ବି ପ୍ରଣାମ କଲା କୁନା—କିନ୍ତୁ ସେ କିଛି କହିଲେ ନାହିଁ । ଖବରକାଗଜରୁ କ୍ଷଣକ ପାଇଁ ଆଖି ଉଠାଇ ପୁଣି ଖବରକାଗଜକୁ ଫେରିଗଲେ ।

ଅଭିମାନ ହେଲା କନକଙ୍କର । ମଣିଷଟି କି ନିର୍ବିକାର ସତେ ! ଅଳ୍ପ କିଛି ସମୟ ଆଗରୁ ହୋଇଥିବା ବାପ ପୁଅଙ୍କର କଥାବାର୍ତ୍ତା ତାଙ୍କର ମନେପଡ଼ିଗଲା । ମୁହଁ ପୋଡ଼ିଗଲା ଯେମିତି । କେମିତି ଏସବୁ କଥା କହିପାରିଲେ ସଚ୍ଚିଦାନନ୍ଦ ? ଏମିତିକା କଥା ସବୁ ତାଙ୍କ ମନରେ ଆସିଲା କେମିତି ? କେମିତି ? ଇସ୍...

ଘର ଭିତରେ ଅନନ୍ୟାର ସ୍ୱରଶବ୍ଦ ନାହିଁ । ଆହା, କନକଙ୍କର ମନ ଗୋଳେଇ ହୋଇଗଲା । ପିଲା ବୋହୂଟି !! ନୂଆ ଜାଗାରେ ଯାହାକୁ ନିଜର କରିଥିଲା, ସେ ଆଜି ଦୂରକୁ ଗଲା । କେତେ କଷ୍ଟ ହେଉଥିବ ତାକୁ ! ତା' ବାପଘର ଏଇଠି ପାଖରେ ହୋଇଥାଆନ୍ତା କି ଦିନେ ଦୁଇଦିନ ପାଇଁ ପଠେଇ ଦେଇଥାଆନ୍ତେ । କିନ୍ତୁ କାହିଁ କଟକ, ଆଉ କାହିଁ ସୁନାବେଡ଼ା ? ଇଚ୍ଛା ହେଉଛି, ତା' ପଖକୁ ଯାଇ ଟିକିଏ ତା' ମୁଣ୍ଡ ସାଉଁଳେଇ ଦିଅନ୍ତେ !

ପୁଅର ଶୋଇବା ଘର ଆଡ଼କୁ ଯାଉ ଯାଉ କନକ ରହିଗଲେ । ଭୁଲ ବୁଝିବନି ତ ଅନନ୍ୟା ? ସେ ଯଦି ଭାବେ ଯେ ଏଇଟା କନକଙ୍କର ଲୋକଦେଖାଣିଆ ଭଲପାଇବା, ତେବେ... ? ଦୀର୍ଘନିଃଶ୍ୱାସ ନେଲେ ସେ । କୋଡ଼ିଏ ବର୍ଷର ଝିଅଟିକୁ ଦୋଷ ବା କେମିତି ଦେବେ ? ନୂଆ ନୂଆ ଶାଶୁଘର । ତା' ଉପରେ ଶ୍ୱଶୁରଙ୍କର ଏପରି କଥା । ଯା'ପରେ କେଉଁ ବୋହୂ ଶାଶୁକୁ ବିଶ୍ୱାସ କରିବ ? ହୁଏତ ଭାବିବ ଯେ ଶାଶୁ ହିଁ ସବୁ ଶିଖେଇଛନ୍ତି । ଶାଶୁଙ୍କ ପ୍ରରୋଚନାରେ ଶ୍ୱଶୁର ନିଶ୍ଚୟ ମୁହଁ ଖୋଲିଛନ୍ତି ।

ଆଉ କୁନା ? କୁନା ବି କ'ଣ ସେୟା ଭାବିଲା ? ଏତେ ବର୍ଷ ପରେ ମଧ୍ୟ ମା'କୁ ଚିହ୍ନି ପାରିଲା ନାହିଁ ? ମା'ର ଅନ୍ତରର ଭାଷା ବୁଝିପାରିଲା ନାହିଁ ? ନିଶ୍ଚେ ତାଙ୍କୁ ଅବିଶ୍ୱାସ

କଲି କୁନା, ନଚେତ୍ ଗଳ୍ପବେଳେ ପଦଟିଏ କଥା କହି ନଥାଆନ୍ତା ! ଦୁଃଖ, ଅଭିମାନ ଏବଂ କିଛି କରିନପାରିବା ଶୋକରେ କନକଙ୍କର ଆଖିରୁ ଲୁହ ଝରିଗଲା ।

ଏଇ ସ୍ୱାମୀ ! ବତିଶ ବର୍ଷ ତଳେ କ'ଣ ଏମିତି ଥିଲେ ? ସେତେବେଳେ ତାଙ୍କ ଚମଡ଼ା ତଳେ ପଥରର ମୂର୍ତ୍ତିଟିଏ ତ ନଥିଲା । ବରଂ ବହୁଥିଲା ସୁନ୍ଦର ଏକ ଝରଣା—ପ୍ରେମର, ମମତାର । ସେଇ କଲକଲ ଛଲଛଲ ଝରଣାର ସ୍ରୋତରେ ଭାସିଯାଇଥିଲା ପନ୍ଦର ବର୍ଷର କଣୋଆ ମନଟିଏ । ସେ ଦିନର କଥା ସବୁ ସ୍ପଷ୍ଟ ଭାବରେ ମନେଅଛି ତାଙ୍କର । ଭୁଲନ୍ତେ ବା କେମିତି—ସେ ମନଟି ଯେ କନକଙ୍କର !

ବାହାଘର ପରର କଥା । ଲମ୍ବା ଓଢ଼ଣା ନାକ ପର୍ଯ୍ୟନ୍ତ । ଥରଥର ଓଠ ଦିଓଟି ଛଡ଼ା ମୁହଁର କିଛି ବି ଦେଖାଯାଏ ନାହିଁ । କିନ୍ତୁ ଓଢ଼ଣା ତଳୁ ଆଖି ଦିଓଟି କି ଅଧୀର ହୋଇ-ପଡ଼ୁଥିଲା ପାଞ୍ଚଫୁଟ୍ ଆଠଇଞ୍ଚର ଏଇ ମଣିଷଟିକୁ ଥରଟିଏ ଦେଖିବା ପାଇଁ । ଦୂରରୁ ତାଙ୍କର ଗଳାର ସ୍ୱର ଶୁଣିଲେ ବି କନକଙ୍କର ଛାତିର ସ୍ପନ୍ଦନ ବଢ଼ିଯାଉଥିଲା ।

ଆଉ ସଚ୍ଚିଦାନନ୍ଦ କ'ଣ ହଳଦୀ ଗୁରୁଗୁରୁ ଅଳତାମଖା ପାଦର ପାହିଜ ଝୁମୁର୍ ଝୁମୁ ଶବ୍ଦରେ ବିଚଳିତ ହୋଇ ପଡ଼ୁନଥିଲେ ? ଲୁଚେଇ ଲୁଚେଇ ଆଖି ମିଳେଇ ନେବାରେ ସେ କି ସ୍ୱର୍ଗୀୟ ଆନନ୍ଦ !

ଗାଁ ଭିତରେ ରକ୍ଷଣଶୀଳ ପରିବାରର ନୀତି ନିୟମ, କାଇଦା-କଟକଣା । ଶାଶୁଶ୍ୱଶୁର ବଞ୍ଚିଥିବା ଯାଏଁ କନକଙ୍କର ସ୍ୱର ଖୁବ୍ କମ୍ ଲୋକ ଶୁଣିଥିଲେ । ସେ ପ୍ରାୟ ଚୁପ୍ ଇ ରହୁଥିଲେ । ଯେଉଁ କେଇପଦ କଥା ଥର୍ ଥର୍ ଝରୁଥିଲା, ସେ ସବୁ ସ୍ୱାମୀଙ୍କ ପାଖରେ—ରାତି ଏଗାରଟା ପରେ । ତା' ପୁଣି ସପ୍ତାହକୁ ଦୁଇଟା ଦିନରେ—ଶନିବାର ଓ ରବିବାର । ଦିନ ପୁଣି କ'ଣ, ଖାଲି ରାତିର କେଇଟା ଘଣ୍ଟା ଜାଣ । ମନ ଆନନ୍ଦରେ କଥା କହି ହସି କନକ ଲୋଟିଯାଉନଥିଲେ । କେଉଁ କେତେ ଯୁଗର ଗପ ମେଲଇ ନିଘୁନଥିଲେ—କାଳେ କିଏ ଶୁଣିଦେବ ! କାଳେ ପୁଣି ନିନ୍ଦା ରଟିବ ! ପାଦେ ପାଦେ ଜଗି ରଖି କନକ ଚଳୁଥିଲେ ।

ତଥାପି ନୂଆ ନୂଆ ବନ୍ଧାପକା ମନ ଅବାଧ୍ୟ ହୁଏ, ଅଧୀର ହୁଏ । ସଚ୍ଚିଦାନନ୍ଦଙ୍କର ବି । ମନେପଡ଼ିଲେ ଏବେ ହସ ମାଡ଼େ । ବିଶ୍ୱାସ ହୁଏନାହିଁ । କାନ୍ଥବାଡ଼କୁ ଦେଖାଇ ସେତେବେଳେ ସ୍ୱାମୀଙ୍କର କେତେ ଯେ କଥା ସବୁ···"ଓଃ···କାମିଜଟାରେ ବୋତାମ ନାହିଁ, କେହି ଟିକିଏ ସିଲେଇ କରିଦିଅ ଭଲା ।"

"ସେବେଠାରୁ ଖରାରେ ଆସିଲିଣି—କେହି ଟିକିଏ ଲେମ୍ବୁ ସରବତ ଦେଇପାରୁନ ?"

କନକଙ୍କର ମନ ଥରିଯାଏ । ଇଚ୍ଛାହୁଏ ସବୁ କାମ ପୋପାଡ଼ି ଦେଇ ଧାଇଁଯିବେ ସ୍ୱାମୀଙ୍କ ପାଖକୁ । କିଛି ସମୟ ବସିବେ ତାଙ୍କ ପାଖରେ । ତାଙ୍କ ହାତରେ ନିଜ ହାତଟିକୁ ଥାପିଦେଇ ସେ ସବୁକିଛି ଭୁଲିଯିବେ । ବିକଳ ହୋଇ ସେ ଶାଶୁଙ୍କ ମୁହଁକୁ ଚାହାନ୍ତି ।

ଶାଶୁ ବୁଝିପାରନ୍ତି ନାହିଁ ବା ନବୁଝିବାର ଅଭିନୟ କରନ୍ତି । ଥରଟିଏ ବୋହୂକୁ

ପଠାନ୍ତି ନାହିଁ ସେ। ବରଂ ଭଜା ବଟେଇବାର ବା ଡାଲିରେ ଛୁଙ୍କ ଦେବାର ଦାୟିତ୍ୱ କନକଙ୍କୁ ଦେଇ କାନରେ ହାତ ପୋଛି ପୋଛି ଚାଲିଯା'ନ୍ତି ପୁଅ ପାଖକୁ—'ଦେ ଦେ, ବୋତାମ ଲଗେଇ ଦେଉଛି। ସେ ଚନ୍ଦରି ମା'ଟା କେମିତି ଲୁଗା କାଚୁଛି କେଜାଣି ସବୁ କାମିଜର ବୋତାମ ଛିଣ୍ଡା।" ନ ହେଲେ ହୁଏତ ଝିଅକୁ ଡାକ ପକାନ୍ତି, "ଅଲୋ ଏ ରମା, ଭାଇନା ପାଇଁ ଲେମ୍ବୁ ସରବତ ଟିକିଏ କରିଦେ ତ ମା'।"

ଥରେ କନକ ପାଟି ଖୋଲିଥିଲେ, "ଚାହାଟା ମୁଁ ଦେଇ ଆସିବି କି ବୋଉ?" ଏତେଟା ସାହସ ସେ କରି ନଥାନ୍ତେ, କିନ୍ତୁ ଶାଶୁଙ୍କର ଲହୁଣୀ ବୋଳା ହାତ, ଘିଅ ମସର ଆୟୋଜନ ଦେଖି ତାଙ୍କର ଛୋଟ ଆଶାଟିଏ ମୁଣ୍ଡ ଟେକିଥିଲା। ଶାଶୁଙ୍କର ଥମ୍‌ଥମ୍ କରି ମୁହଁ ଆଜି ପର୍ଯ୍ୟନ୍ତ ଭୁଲିନାହାନ୍ତି ସେ। ମୁଣ୍ଡାଏ ମାଟିରେ ଅଙ୍ଗୁଳି ଘଷି ପରିଷ୍କାର କରି ବୋହୂ ହାତରୁ ଚାହା କପ୍‌ଟା ନେଇଯାଇ ପୁଅ ପାଖକୁ ଚାଲିଗଲେ ସେ କନକଙ୍କୁ କୌଣସି ଉତ୍ତର ଦେବା ସମୀଚୀନ ମନେକରିନଥିଲେ। ସେ ନୀରବତା ଭିତରେ ଯେମିତି ସବୁତକ ତାଚ୍ଛଲ୍ୟ ଓ ଦୋଷ ସାଉଁଟି ନେଇ କେଇମାସର ନୂଆବୋହୂ ଉପରକୁ ଫିଙ୍ଗି ଦେଇଯାଇଥିଲେ। ଭିତରେ ଥରିଯାଇଥିଲେ କନକ। ଏ କ'ଣ କଲେ ସେ? କଅଣ ପାଇଁ ସେ ଏତେବଡ଼ ଆସ୍ପର୍ଦ୍ଧା କଲେ?

ଏହି ଘଟଣାର ପ୍ରାୟ ବର୍ଷେ ପରେ କନକଙ୍କର ନିଃସଙ୍ଗ ହୃଦୟ ଅନ୍ୟ ଏକ ବିରାଟ ଆସ୍ପର୍ଦ୍ଧା କରିଥିଲା। ଧାନ ଅମଳ ପରି ମାଘର କଥା। ଶାଶୁ ପୁଅପାଇଁ ଚୂଡ଼ା, ଆଚାର, ବଡ଼ି, ଗୁଆଘିଅ ଇତ୍ୟାଦି ଟିଣ ଭର୍ତ୍ତିକରି ବଡ଼ ବ୍ୟାଗ୍‌ଟିଏ ସଜାଡ଼ୁଥିଲେ। କଥା ହୋଇଥିଲା ରେଭେନ୍‌ସା କଲେଜରେ ପଢ଼ୁଥିବା ସଚ୍ଚିଦାନନ୍ଦଙ୍କର ଦୂରସମ୍ପର୍କୀୟ ଭାଇ ଦୋଳ ବ୍ୟାଗ୍‌ଟିକୁ ନେଇଯିବ। ରାତିରେ ଘର ନିସ୍ତବ୍ଧ ହେବାପରେ କନକ ସାହସର ସହିତ ଦୁଇ ଧାଡ଼ିର ଚିଠି ଖଣ୍ଡିଏ ଲେଖି ବଡ଼ି ଟିଣ ଭିତରେ ପୂରେଇଦେଲେ। କିଛି ଗୋଟାଏ ବାହାନା କରି ତାଙ୍କୁ କଟକ ନେଇଯିବା ପାଇଁ ଚିଠିଟି ଲେଖିଥିଲେ ସେ।

ଭଜା ବଡ଼ି ଖାଇବାକୁ ମନ କରି ବଡ଼ି ଟିଣଟି ଖୋଲି ସଚ୍ଚିଦାନନ୍ଦଙ୍କୁ ସ୍ତ୍ରୀର ଗୋଲ ଗୋଲ ଅକ୍ଷରର ଚିଠିଟି ମିଳିଥିଲା ଏବଂ ମାତ୍ର ସପ୍ତାହକ ପରେ ଦୁର୍ବଳତା, ମୁଣ୍ଡବୁଲା ଓ ଲୋ ବ୍ଲଡ୍ ପ୍ରେସର୍‌ର ବାହାନାରେ ସେ ଛୁଟି ନେଇ ଗାଁକୁ ଆସିଲେ। ରୋଗର ବାହାନା ସେ ଦୁହିଁଙ୍କୁ ପାଖାପାଖି ରହିବାର ସୁଯୋଗ ଦେବ ବୋଲି ସଚ୍ଚିଦାନନ୍ଦ ଭାବିଥିଲେ—କିନ୍ତୁ ଏ ଧାରଣା ବି ଅମୂଳକ ଥିଲା।

ଘରେ ହୁଲସ୍ଥୁଲ ପଡ଼ିଗଲା। ଘରର ବଡ଼ ପୁଅ ଯେ ଅସୁସ୍ଥ! ପାଖ ଗାଁର ନାଁକରା ହୋମିଓପ୍ୟାଥ ଡାକ୍ତରଙ୍କୁ ଦିନରେ ଦୁଇଥର ଆସି ଦେଖିବାର ବ୍ୟବସ୍ଥା କରାଗଲା। ଡାକ୍ତର ତ ଆଉ ଘରର ଭିତର ଖଣ୍ଡାରେ ପଶିବେ ନାହିଁ—ତେଣୁ ଦଅର ରବିଙ୍କ ପଢ଼ାଘରେ ସଚ୍ଚିଦାନନ୍ଦଙ୍କର ରହିବା ବ୍ୟବସ୍ଥା ହେଲା। ରବି ହିଁ ରାତିରେ ପାଖରେ ଜଗି ଶୋଇଲେ। ଅନନ୍ୟୋପାୟ ହୋଇ ସଚ୍ଚିଦାନନ୍ଦ ସୁସ୍ଥ ହୋଇଉଠିଲେ ଏବଂ କଟକ ଯିବା ଆଗରୁ

ମା ବାପାଙ୍କୁ ଖୁବ୍ ସାହସରେ କହିଲେ ଯେ ହାତରେ ରାନ୍ଧି ଖାଇବାକୁ ବଡ଼ ଅସୁବିଧା ହେଉଛି । କନକ ଗଲେ···

ଶାଶୂ ଶଶୁର ପରସ୍ପର ମଧ୍ୟରେ ଆଲୋଚନା କରି ଗୋଟାଏ ନିଷ୍ପତ୍ତି ନେଲେ । କନକର ସହର ଯିବା ହେଲା ନାହିଁ । ଖୋଜ ଖୋଜ ଶୀଘ୍ର ସଚ୍ଚିଦାନନ୍ଦଙ୍କ ବାପା ପୁଅପାଇଁ ରୋଷେଇ କରିବା ପିଲାଟିଏ ଯୋଗାଡ଼ କରିଦେଲେ ।

ପ୍ରଥମଥର ପାଇଁ ନିଃସହାୟ ଭାବରେ ସ୍ତ୍ରୀ ପାଖରେ ଫାଟିପଡ଼ିଥିଲେ ସଚ୍ଚିଦାନନ୍ଦ । କେହି କେମିତି କିଛି ବୁଝୁନାହାନ୍ତି ?

ଦୀର୍ଘନିଃଶ୍ୱାସ ନେଲେ କନକ । ଧୀରେ ଧୀରେ ସବୁ ଉତ୍ସାହରେ ଭଟ୍ଟା ପଡ଼ିଗଲା । ଏଥର ସଚ୍ଚିଦାନନ୍ଦ ଘରକୁ ଆସିଲେ ରମାକୁ ହିଁ ଚାହା ମାଗନ୍ତି । ପାର୍କରୁ ବୋଡାମ ଛୁଟିଗଲେ ସିଧା ଚାଲିଯାନ୍ତି ମା'ଙ୍କ ପାଖକୁ । କନକ ମଧ୍ୟ ଅବିଚଳିତ ଭାବରେ ରୋଷେଇ ଘରେ କାମ କରିଯାଆନ୍ତି । ଅସ୍ଥିର ମନ ତାଙ୍କର କେତେବେଳେ ଯେ ସ୍ଥିର, ନିଶ୍ଚିନ୍ତ ହୋଇଗଲା, ସେ କିଛି ଜାଣି ପାରିଲେ ନାହିଁ ।

ତା'ପରେ ଲଗ ଲଗ ବହୁ ଘଟଣା ଘଟିଗଲା । ତାଙ୍କ କୋଳକୁ କୁନା ଆସିଲା । ନଣନ୍ଦ ରମାଙ୍କର ବାହାଘର ହୋଇଗଲା । ଦିଅର ରବି ଇଞ୍ଜିନିୟରିଙ୍ଗ୍ ପଢ଼ିବାକୁ ଚାଲିଗଲେ ରୁର୍କୀ । କୁନାକୁ ଯେତେବେଳେ ସାତବର୍ଷ, ତୀର୍ଥଯାତ୍ରାରେ ବାହାରି ଶାଶୂ ଶଶୁର ଆଉ ଫେରିଲେ ନାହିଁ । କେଦାରନାଥ ଯିବା ରାସ୍ତାରେ ବସ୍ ଦୁର୍ଘଟଣା ଘଟି ଦୁହିଁଙ୍କର ମୃତ୍ୟୁ ଘଟିଲା ।

ସାତବର୍ଷର କୁନାକୁ ଧରି କନକ କଟକ ଆସିଲେ । ସ୍ୱପ୍ନର ସହରରୁ ତାଙ୍କ ରଙ୍ଗ ହଜିଯାଇଥିଲା ସେତେବେଳକୁ । ଏତେ ବର୍ଷ ଧରି ମନ ଫଲ୍‌ଗୁକୁ ଚୁପି ଚୁପି ହଜେଇ ଦେଇଥିଲେ ଦୁହେଁ । ସେମାନଙ୍କର ଛୋଟିଆ ସଂସାର ହେଲା, ସଜଡ଼ା ଘର ମଧ୍ୟ ହେଲା, କିନ୍ତୁ ସେଥିରେ ପ୍ରାଣ ନଥିଲା । ସେମାନଙ୍କର ବିବାହିତ ଜୀବନ ହେଲା ସାଧାରଣ, ଗତାନୁଗତିକ—ଆଉ ପାଞ୍ଚଜଣଙ୍କର ପରି । କନକ ତାଙ୍କର ଗୃହିଣୀପଣିଆ ଓ କୁନାକୁ ନେଇ ବ୍ୟସ୍ତ ରହିଲେ ଏବଂ ସଚ୍ଚିଦାନନ୍ଦ ବୁଡ଼ିଗଲେ ଖବରକାଗଜ, ଚାହା ଓ ବ୍ରିଜ୍‌ରେ ।

କେତେ ଶୀଘ୍ର କଟିଗଲା ଆଉ ଏକୋଇଶ ବର୍ଷ । କୁନା ମାଟ୍ରିକ୍ ପାଶ୍ କଲା । କଲେଜ୍‌ରେ ପଢ଼ିଲା । ଚାକିରି କଲା । ବାହାଘର କଥା ଉଠିଲା । ପ୍ରବଳ ଉତ୍ସାହରେ କନକ ନିଜ ହାତରେ ସବୁ କଲେ । ଝିଅ ଦେଖାଠାରୁ ବାହାଘର କାର୍ଡ଼ ବାଣ୍ଟିବା ପର୍ଯ୍ୟନ୍ତ । ଏଇ ତ ମାସେ ତଳେ କୁନା ବାହାଘର କରିଛନ୍ତି ସେ । ତାଙ୍କର ସବୁଠାରୁ ବଡ଼ ସନ୍ତୋଷ ଯେ କୁନାର ବୋହୂ ଖୁବ୍ ପସନ୍ଦ ହୋଇଛି । ଦୁହିଁଙ୍କୁ ଏକାଠି ଦେଖିଲେ ଛାତି ପୂରିଯାଏ ତାଙ୍କର ।

ଇତିହାସର ପୁନରାବୃତ୍ତି ହୁଏ । ଖୁବ୍ କମ୍ ଚାହା ପିଉଥିବା କୁନା ବେଳ ଅବେଳରେ ଡକା ପକାଏ, "ବୋଉ, ସଦା ପକେଇ ଚାହା ଟିକିଏ କର ।"

ସ୍ତୁହା କରି ଅନନ୍ୟା ହାତରେ ପଠେଇ ଦଅନ୍ତି କନକ, "ଯା ଲୋ ମା, ଟିକିଏ ଗଡ଼ିପଡ଼େ। ସେପେଇ ତ ସରିଲାଣି।"

ବୋହୂର ଲାଜ ବୋଲା ମୁହଁ ଦେଖି କନକ ମନକୁ ମନ ହସନ୍ତି।

ଗୁହୁଁ ଗୁହୁଁ କୁନାର ଛୁଟି ସରିଆସିଲା। ବାହାଘର ପାଇଁ ମାସେ ଛୁଟି ନେଇଥିଲା। କାଲି ସ୍ତରେ ପିଠା ପାଇଁ ବିରି ବତୁରଉଥିଲେ କନକ। ତାଙ୍କ ପାଖରେ ଆସି ଠିଆହେଲା କୁନା—"କ'ଣ କରୁଛୁ କି ବୋଉ ?"

"ଚକୁଳି ପିଠା ଟିକିଏ କରିବି କାଲି ସକାଳକୁ—ବିରି ବତୁରଉଥିଲି।"

"କାହିଁକି ?"

"ନାହିଁ ମ, ଏମିତି।"

କନକ ବୁଝିପାରିଲେ କିଛି ଗୋଟାଏ କହିବାକୁ ଆସିଛି କୁନା। ସେ ପୁଣି କେବେଠୁଁ ମା' ପାଖରେ ଏତେ ଲାଜ କରିବାକୁ ଶିଖିଲାଣି!

"କିଛି କହିବୁ, ବାପା ?"

"ବୋଉ ଲୋ"—ଟିକିଏ ଅଡୁମଡୁ ହେଲା କୁନା, "ତୁ ଟିକିଏ ବାପାଙ୍କୁ କହ..."

"କେଉଁ କଥା ?"

କନକ ଟିକିଏ ଟିକିଏ ଅନୁମାନ କରିପାରୁଥିଲେ କୁନା ଯାହା କହିବାକୁ ଆସିଛି। ତଥାପି ନବୁଝିବାର ଭଙ୍ଗୀରେ ଆଉ ଥରେ ପଚାରିଲେ, "କେଉଁ କଥା ?"

ରହି ରହି ପୁଅ କହିଲା, "ଏଇ ମ! ତୁ ତ ଜାଣିଛୁ ସେଠି ଖାଇବାରେ କେତେ ଅସୁବିଧା। ନନା ହୋଟେଲ୍‌ରେ ଲୁଣିଆ ଅଲଣା ଖାଇ ଖାଇ ବିରକ୍ତ ଲାଗିଗଲାଣି। କହୁଥିଲି କ'ଣ କି, ତୋ ବୋହୂ ସାଙ୍ଗରେ ଗଲେ ମଣିଷ ଟିକିଏ ଶାନ୍ତିରେ ଖାଆନ୍ତା।"

କନକ ହୋ ହୋ ହୋଇ ବଡ଼ପାଟିରେ ହସିବାକୁ ଗୁହୁଁଥିଲେ। ଖୁବ୍ କଷ୍ଟରେ ନିଜକୁ ନିୟନ୍ତ୍ରଣ କରି ଗମ୍ଭୀର ସ୍ୱରରେ କହିଲେ, "ହଉ, ମୁଁ ବାପାଙ୍କୁ କହି ଦେଖେ..."

କିନ୍ତୁ ସେ କି ଜାଣିଥିଲେ ସଚ୍ଚିଦାନନ୍ଦ ଅରାଜି ହେବେ ? ଏ ଘଟଣା ଯେ ଏକତିରିଶ ବର୍ଷ ଆଗରୁ ଥରେ ଘଟିଯାଇଥିଲା। ସେତେବେଳେ କିନ୍ତୁ ନାୟକ ଭୂମିକାରେ ଥିଲେ ସଚ୍ଚିଦାନନ୍ଦ ନିଜେ। କେତେ ଶୀଘ୍ର ନପାଇବାର ଯନ୍ତ୍ରଣା ଭୁଲିଗଲେ ସେ! କେବେଠୁଁ ସେ ସମାଜ ଓ ସାହିପଡ଼ିଶାଙ୍କର ସମାଲୋଚନାକୁ ଭୟ କରିବାକୁ ଶିଖିଲେ ?

ଆଜିକାଲିକାର ପିଲା କୁନା। ବୋହୂ ବି ଶିକ୍ଷିତା। ସେମାନେ ଗୁହୁଁଥିଲେ ତ ନିଷ୍ପତ୍ତି ନିଜେ ନିଜେ ନେଇ ପରେ ବାପା ମା'ଙ୍କୁ ଜଣେଇ ପାରିଥାଆନ୍ତେ। ତା' ନକରି କୁନା ମା' ପାଖରେ ଅଳି କରିଥିଲା—କେତେ ବୁଲେଇ ନିଜ ମନ କଥା କହିଥିଲା।

ସଚ୍ଚିଦାନନ୍ଦ ସେ ମନକୁ ବୁଝି ପାରିଲେ ? ସେକ୍‌ଠୋକ୍ ପୁଅକୁ କହିଦେଲେ, "ବୋହୂ କିଛି ମାସ ଏଠି ରହନ୍ତୁ। ନୂଆ ଜାଗା। ସେଠିକୁ ଯିବା କ'ଣ ଦରକାର ? ବାଲେଶ୍ୱର ତ ବେଶୀ ବାଟ ନୁହଁ। ତୁ ଛୁଟିଦିନ ଦେଖି ଗୁଲିଆସିବୁ।"

ଲୁନା ରହି ରହି କହିଲା, "ନୂଆ ଜାଗା ଆଉ କ'ଣ ? ମୁଁ ତ ସେଠି ଅଛି ଚଉଦବର୍ଷ ହେଲାଣି । ପାଖ ପଡ଼ଶା ବେଶ୍ ଜଣାଶୁଣା । ଅସୁବିଧା କିଛି ହେବନି ।"

"ଏଠି ଲୋକ କହିବେ କ'ଣ ? ସମାଜରେ ଘର କରି ରହିଛୁ ଯେତେବେଳେ ସବୁ ଜଗିରଖି ଚଳିବାକୁ ତ ହେବ ।"

ଆଶା ନେଇ ଲୁନା ବୋଉ ମୁହଁକୁ ଚାହିଁଲା । କନକଙ୍କ ଆତ୍ମା ଛଟପଟ କରିଉଠିଲା । ପୁଅ ପାଇଁ ଓକିଲାତି କରିବାକୁ ଚାହିଁ ମୁଦ୍ଧା କରିପାରିଲେ ନାହିଁ । ଏତେଗୁଡ଼ାଏ ବର୍ଷ ଚୁପ୍ ରହିବା ପରେ ହଠାତ୍ କରି କ'ଣ ମୁହଁ ଖୋଲିହୁଏ ?

× × × ×

ପଣତରେ ଆଖି ପୋଛିନେଲେ କନକ । ଗୁଡ଼ାଏ ବେଳ ହେଲାଣି । ଜଳଖିଆ ଖାଇସାରି ଚାହା ପିଇବାର ପୁରୁଣା ଅଭ୍ୟାସ ସଚ୍ଚିଦାନନ୍ଦଙ୍କର—ଅଥଚ ଏ ଯାଏଁ ଚାହା ଦେଇନାହାନ୍ତି । ଥରିଲା ହାତରେ କନକ କେଟ୍‌ଲରେ ପାଣି ଦେଲେ । ଦିଆସିଲି ଆଣି ଗ୍ୟାସ୍‌ଚୁଲି ଲଗେଇବାକୁ ଯାଉ ଯାଉ କିଛି ଗୋଟାଏ ମନେପଡ଼ିଗଲା । ଠିକ୍ ପରିଷ୍କାର ଭାବରେ ନୁହଁ—ଝାପ୍‌ସା । କେବେ ଯେମିତି ସ୍ୱପ୍ନରେ ସେ ଦେଖିଥିଲେ । ମନ ଭିତର ଯାଉଁଚି ପକଉଛନ୍ତି କନକ । ହାତ ଯେମିତି ସ୍ଥିର ରହିଯାଇଛି । ଅଧା ସ୍ୱପ୍ନ ଓ ଅଧା ବାସ୍ତବତାରେ ଧାଇଁ ଧାଇଁ ଷ୍ଟୋରେଇ ଘରୁ ବାହାରିଗଲେ ସେ ।

× × × ×

ଏତେବେଳ ହେଲାଣି—ଚାହା କାହିଁ ? କନକ ଆଜି ନିଶ୍ଚୟ ଭୁଲିଯାଇଛନ୍ତି ଚାହା ଦେବା କଥା । ସଚ୍ଚିଦାନନ୍ଦଙ୍କର ରାଗ ହେଲା । ବୋହୂ ଆଣିଲେ ବୋଲି ଏମିତି ଚିଲ ? ବିରକ୍ତିରେ ଖବରକାଗଜ ଭାଙ୍ଗି ଟେବୁଲ୍ ଉପରେ ରଖି ଭିତରକୁ ଗଲେ ସେ ।

ଷ୍ଟୋରେଇଘରେ କେହି କୁଆଡ଼େ ନାହିଁ । ଟି' କେଟ୍‌ଲ ଚୁଲି ଉପରେ ବସିଛି, କିନ୍ତୁ ଚୁଲି ଜଳୁନାହିଁ । ଗାଧୁଆ ଘର ମେଲା । ଶୋଇବା ଘର ଖାଲି । ଠାକୁର ଘର କବାଟରେ ତାଲା । ଯେତେସବୁ ଅବ୍ୟବସ୍ଥା ଆଜି । କୁଆଡ଼େ ଗଲେ କନକ ?

କିଛି ଗୋଟାଏ ଶବ୍ଦ ଭଣ୍ଡାର ଘରୁ ଶୁଣାଗଲା । ଟ୍ରଙ୍କ୍‌ର ଶବ୍ଦ । ସଚ୍ଚିଦାନନ୍ଦଙ୍କ ଚଢ଼ି ଲାଗିଲା । ଏଣେ ଘର କାମ ହୋଇନାହିଁ—ତେଣେ ଭଣ୍ଡାର ଘର ଟ୍ରଙ୍କ୍ ବାକ୍ସ ସଜାଡ଼ି ବସିଲେଣି କନକ ! ସ୍ତ୍ରୀଲୋକ ଜାତଟା ଇ ଅଦ୍ଭୁତ ! ଆରେ ଯାହା ଯେତିକି କଲେ ନଚଳେ ସେତିକି କର, ଅଯଥା ଭୂତ ଭଳି ଖଟଣୀ କାହିଁକି ? ହେଲେ ଅବା ସୁସ୍ଥ ମଣିଷଟାଏ ହୋଇଥାଆନ୍ତା ! କିନ୍ତୁ କନକଙ୍କୁ ଯେ ପନ୍ଦର ବର୍ଷ ହେଲାଣି ଶ୍ୱାସ ରୋଗଟା ଚାପି ଧରିଛି । ଡାକ୍ତରଙ୍କର କେତେ ଉପଦେଶ, "ଧୂଳି କାମ କରିବେ ନାହିଁ, ଆପଙ୍କର ଧୂଳି ଅଲର୍ଜି ।" ସବୁ ଉପଦେଶ ଗଲା ଚୁଲିକି, ଭଣ୍ଡାର ଘର ପରିଷ୍କାର କରିବାକୁ ଘରଣୀ ଚାଲିଲେ ।

କଡ଼ା କଡ଼ା କରି ଦୁଇପଦ ଶୁଣେଇ ଦେବା ପାଇଁ ସ୍ଥିର କରି ଭଣ୍ଡାର ଘରର ଆଉଜା

ଦୁଆର ମେଲାଇଦେଲେ ସଚ୍ଚିଦାନନ୍ଦ । ଶବ୍ଦ କରି କବାଟ ଖୋଲିଗଲା । ବାହାଘର ବେଳର ବଡ଼ ଟ୍ରଙ୍କ ଖୋଲି ତା' ସାମ୍ନାରେ ଧ୍ୟାନରେ ବସିଛନ୍ତି କନକ । କବାଟ ଖୋଲିବା ଶବ୍ଦରେ ବୁଲି ଚାହିଁଲେ ନାହିଁ । ହାତରେ କ କାଗଜ ଖଣ୍ଡିଏ ଧରିଛନ୍ତି । ତାଙ୍କ ଚାରିପଟେ ଅସ୍ତବ୍ୟସ୍ତ ଭାବରେ ଗଡ଼ୁଛି ଏମ୍ବ୍ରଏଡ଼ରିକରା ଫଟ, ପୁରୁଣା ଠାକୁର କ୍ୟାଲେଣ୍ଡର ଏବଂ ପୁରାଣ ବହି ।

ସାମାନ୍ୟ ଅସ୍ୱସ୍ତି ଲାଗିଲା ସଚ୍ଚିଦାନନ୍ଦଙ୍କୁ । ଏମିତି ଚୁପ୍‌ଚାପ୍ ହୋଇ କନକ ବସିଛନ୍ତି କାହିଁକି ? କଣ୍ଠସ୍ୱର ସାମାନ୍ୟ ନରମ କରି ସେ ପଚାରିଲେ, "କ'ଣ କରୁଚ କ ?"

ଏଥର ମୁହଁ ବୁଲାଇଲେ କନକ । ଆଖି ଶୁଖିଲା, ଅସମ୍ଭବ ଭାବରେ ଶୁଖିଲା । ଗାଲରେ ଲୁହ ଧାର ଶୁଖିଯାଇଛି । ଫାଙ୍କା ଫାଙ୍କା ଚାହାଣି । କାନ୍ଥରେ ଭରା ଦେଇ ଉଠି ଠିଆହେଲେ ସେ । ଦୁଇ ହାତରେ ତଥାପି ଧରିଛନ୍ତି କାଗଜଟିକୁ । ସଚ୍ଚିଦାନନ୍ଦ କ'ଣ କହିବାକୁ ଆସିଥିଲେ ? ଆରେ—ସେସବୁ ଭୁଲିଯାଇଛନ୍ତି କାହିଁକି ? କଅଣ ପାଇଁ ତାଙ୍କ ଭିତରେ ଗୋଳମାଳ ହୋଇଯାଉଛି ? ଆସ୍ତେ ହାତ ବଢ଼ାଇ ସ୍ତ୍ରୀହାତରୁ କାଗଜଟିକୁ ନେଲେ ସେ । ଛାତି ଭିତରେ ଗୋଟାଏ ଭୂମିକମ୍ପ ହୋଇଗଲା । ଏ କାଗଜ ଏବେ ବି ବଞ୍ଚିଛି ?

ସଚ୍ଚିଦାନନ୍ଦଙ୍କର ଆଖିରେ ଚଷମା ନାହିଁ । ତଥାପି ତାଙ୍କର କଅଣ ବଡ଼ କଷ୍ଟରେ ଏକତିରିଶ ବର୍ଷ ଆଗରୁ ଲେଖା କାଗଜଟିକୁ ଚିହ୍ନିବାରେ କେବେହେଲେ ଭୁଲ ହୋଇପାରେ ? ଚୁପ୍ ରହି ସଚ୍ଚିଦାନନ୍ଦ ଖାଲି ଭାବୁଥିଲେ ଆଉ ଭାବୁଥିଲେ । କେତେବେଳକେ କାଗଜ ଉପରୁ ମୁହଁ ଟେକି ସେ କହିଲେ, "ଭାବୁଛି, ବଟକୁ କହିବି ଗାଡ଼ିଟିଏ ଯୋଗାଡ଼ କରିଦେବା ପାଇଁ । ଆମେ ଯାଇ ବୋହୂକୁ ବାଲେଶ୍ୱରରେ ଛାଡ଼ିଦେଇ ଆସିଲେ କେମିତି ହୁଅନ୍ତା ?"

□□□

# ସୂର୍ଯ୍ୟୋଦୟର ମଣିଷ

ତଣ୍ଟି ଭିତର ଶୋଷରେ ଶୁଖିଯାଉଛି । ଆହତ ହୃତ୍‌ପିଣ୍ଡଟା ସତେ ଯେମିତ ଉଠିଆସିଛି ଗଳା ପାଖକୁ, ନିଃଶ୍ୱାସ ନେଲାବେଳେ ହଠାତ୍ ବାହାରି ଆସିବ । କପାଳରେ ଝାଳ ଭର୍ତ୍ତି । ମୁଣ୍ଡ ଉପରେ ସୂର୍ଯ୍ୟଟା ଫାଟିପଡ଼ୁଛି, ଖଣ୍ଡ ଖଣ୍ଡ ଶିଖା ତା' ଭିତରେ । ଓଃ, ବୃନ୍ଦାଏ ପାଣି । ମରିବା ପୂର୍ବରୁ ଗୋଟାଏ ଥର ଜିଭ ଅଗରେ ଟୋପାଏ ପାଣିର ସ୍ପର୍ଶ ପାଇଁ ଏ ତୃଷ୍ଣା । କଳା କଳା ଫଟା ଓଠ ଉପରେ ଶୁଖିଲା ଜିଭଟା ଥରେ ବୁଲେଇ ଆଣିଲା ସାହ୍‌ନଓ୍ୱାଜ୍ । ସାମ୍ନାରେ ନୀଳ, ଗଭୀର ନୀଳ ଜଳରାଶି । ତା' ଢେଉ ଛୁଇଁବାକୁ ଆଉ ମାତ୍ର ଗୋଟାଏ ପାଦ ଘୁଷୁରି ଯିବାକୁ ପଡ଼ିବ । ବହୁତ ଚେଷ୍ଟା କରି ମଧ୍ୟ ସେ ଦେହଟାକୁ ଉଠାଇପାରୁନାହିଁ । ବାରୁଦ ଓ ଲୁହାକଣ୍ଟାର ଛୁଟାତକ ପଶି ମାଂସ ଦଳୁ ପଚାଯାଇଛି । ଯେଉଁ ଶରୀରର ପ୍ରତିଟି ମାଂସପେଶୀରେ ମାତ୍ର ସାତଟା ଦିନ ଆଗରୁ ଯୌବନ ମୁଣ୍ଡ ଟେକୁଥିଲା, ତା'ର ସେ ତିରିଶ ବର୍ଷର ଦେହଟା ଆଜି ତା' ଅକ୍ତିଆରରେ ନାହିଁ । ମନ କହୁଛି, ଆଉ ପାଦେ—ଦେହରେ କଳୁ ପୃଥିବୀର ଓଜନ । ବହୁ ଚେଷ୍ଟାରେ ସେ ମୁଣ୍ଡଟିକୁ ସାମାନ୍ୟ ଉଠେଇ ପାରିଲା । ହେଲେ, କିଛି ବୁଝିପାରିବା ଆଗରୁ ପାଣି ଉପରେ ପୁଣି କରିଗୁଡ଼ି ହୋଇଗଲା ତା' କ୍ଷତାକ୍ତ ଦେହଟା । ସେତେବେଳ ପର୍ଯ୍ୟନ୍ତ ସେ ବଞ୍ଚିଛି । ତା' ଝାଙ୍କୁଆ, ଅସାଡ଼ ମୁହଁରେ ପାଣିର ସ୍ପର୍ଶ ସତେ ଯେମିତ ବଞ୍ଚିବାର ବିଶ୍ୱାସକୁ ଆଉ ଟିକିଏ ଟେକ ଧରିଲା । ଜିଭ କାଢ଼ିଲା ସାହ୍‌ନଓ୍ୱାଜ୍, ବୃନ୍ଦାଏ ପାଣି । ମେଡିଟେରାନିଅନ୍ ସାଗରରେ ଅଜସ୍ର ଜଳର ଢେଉ । ଆଃ ! ଲବଣାକ୍ତ ଜଳ ସ୍ପର୍ଶରେ ବିକୃତ ହୋଇଉଠିଲା ତା' ମୁହଁ । ବିଷର ଜ୍ୱଳନରେ ଆହତ ଦେହ ଭିତରଟା ସତେ ଯେମିତ ଏଇ ମାତ୍ର ବାହାରକୁ ବାହାରି ଆସିବ । ସମସ୍ତ ଶରୀର ତା'ର ଜଳୁଛି । ପଛରେ ଜଳୁଛି ବେରୁଟ୍ ସହରର କାନ୍ଥ, ରାସ୍ତା, ଗଳି, ପାର୍କ । ୟାସେର୍ ଆରାଫାତ୍ ଡାକୁଛି—"ଆଉ ଗୋଟାଏ କଦମ୍ ।"

× × × ×

ଆକାଶରେ ନକ୍ଷତ୍ରବୀଥିତା ଓହ୍ଲାଇ ଆସିଲାଣି ସହର ଉପରେ, ଯେଉଁଠି ବଡ଼ ତା'ର ଟାରିଫୁଲ ପକା କଳା ଧୂମର ଶାଢ଼ି ଘୋଡ଼େଇ ଦେଇଛି ଅନେକ ବେଳୁ । ପହରା ଦେଉଥିବା ପୋଲିସର ଲମ୍ବା ହୁଇସିଲ୍ କେତେବେଳେ ଖୁବ୍ ନିକଟରୁ, କେତେବେଳେ ପୁଣି ବହୁତ ଦୂରରୁ ଭାସିଆସିବା ଭଲ ମନେହେଉଛି । ଜାଁ ଭାଁ କ୍ଲେଉିଁ ମାଲ୍‌ବାହୀ ଟ୍ରକର ବିକଟ ଚିତ୍କାର

ବା ମୋବାଇଲ୍ ପୋଲିସ୍ ଭ୍ୟାନ୍‌ର ଦୀର୍ଘ ସାଇରନ୍ ଥରେଇ ଦେଉଛି ନିର୍ଜନତାକୁ । କାନ୍ଥ ଘଣ୍ଟାକୁ ଚାହିଁଲା ସଲ୍‌ମା—ବାରଟା ଦଶ । ପଢ଼ାଘରେ ଏବେ ମଧ୍ୟ ଧ୍ୟାନମଗ୍ନ ଡାକ୍ତର ସ୍ୱାମୀ ତାଙ୍କର । ସ୍ୱାମୀଙ୍କର ଏମିତି ମନୋଯୋଗରେ କୌଣସି ବାଧା ସୃଷ୍ଟି କରିବାକୁ ବିବେକ ବାରଣ କରେ । କିନ୍ତୁ ସ୍ତ୍ରୀ-ପ୍ରାଣଟି ତାଙ୍କର ଛଟପଟ ହୋଇଉଠେ । ଅନିଚ୍ଛା ସତ୍ତ୍ୱେ ସଲ୍‌ମା ଉଠିଲେ ।

ସ୍ୱାମୀ ତାଙ୍କର ପ୍ରସିଦ୍ଧ ସରକାଶ୍ୱ ଡାକ୍ତର । ଲେବାନନ୍‌ର ସର୍ବୋଚ୍ଚ ମହଲ ପାଇଁ ଗଢ଼ାହୋଇଥିବା ପଲିକ୍ଲିନିକ୍, ଯେଉଁଠି ଅଛନ୍ତି ଦେଶର ଶ୍ରେଷ୍ଠ ଡାକ୍ତରମାନେ, ସେଇଠାକୁ ଛଅମାସ ହେବ ପଦୋନ୍ନତି ନେଇ ଆସିଛନ୍ତି । ଆଜିକାଲି ତାଙ୍କର ଗୋଟାଏ ନୂଆ ରୋଗ ସମ୍ବନ୍ଧରେ ଗବେଷଣା ଚାଲିଛି । ଦିନବେଳଟା କଟିଯାଏ ଲାବୋରେଟୋରି ଓ ବିଭିନ୍ନ ମେଡିକାଲ ଜର୍ଣ୍ଣାଲ୍ ଭିତରେ । ଦିନର ଅନୁସନ୍ଧାନକୁ କାଗଜ କଲମରେ ବାନ୍ଧିରଖନ୍ତି ସେ ରାତିରେ ଘରକୁ ଫେରି । ଏମିତି ଅବିଶ୍ରାନ୍ତ ପରିଶ୍ରମରେ କ'ଣ ଦେହ ରହେ ?

ଷ୍ଟଡିରୁମ୍ ପର୍ଦ୍ଦା ଟେକି ଭିତରକୁ ପଶିଲେ ସଲ୍‌ମା । ସ୍ୱାମୀଙ୍କର କୁଞ୍ଚକୁଞ୍ଚିଆ ଗହଳିଆ ବାଳରେ ହାତ ସାଉଁଳାଇ ନେଇ ଖୁବ୍ ଧୀରେ କହିଲେ, "ଖାଇବେନି ? ରାତି ଅନେକ ହେଲାଣି ।"

ସେମିତି ଲେଖି ଚାଲିଥିଲେ ଡାକ୍ତର ଇସ୍‌ମାଇଲ୍ ହୁସେନ୍—"ମତେ ଆଉ ପନ୍ଦର ମିନିଟ୍ ସମୟ ଦିଅ, ସଲ୍‌ମା ।"

ହାତର ଆଙ୍ଗୁଳିଗୁଡ଼ିକୁ ଆସ୍ତେ ହୁଗୁଳାଇ ନେଇ ଫେରିଆସିଥିଲେ ସେ—"ଶୁଣ ।"

ପଛକୁ ଫେରି ଚାହିଁଲେ ସଲ୍‌ମା ।

—"ଝର୍କାଟା ଟିକେ ଦେଇଦେବ, ଜାନ୍ ?"

ଧୀରେ ଧୀରେ ଯାଇ ଝର୍କା ପାଖରେ ଠିଆହେଲେ ସଲ୍‌ମା । ବାହାରେ ଦଶମୀର ଜହ୍ନ ହସୁଛି । ଜହ୍ନ ଆଲୁଅରେ କେମିତି ସ୍ୱପ୍ନଭରା ମନେହେଉଛି ଏ ରାତି । ଅଉ ବଗିଚାର ଫୁଲମାନେ କ'ଣ ତାଙ୍କରି ପାଇଁ ସଜେଇ ହୋଇ ଅପେକ୍ଷା କରିଛନ୍ତି ? ପବନରେ ଗୋଲାପଫୁଲର ବାସ୍ନା ଭାସିଆସିଲା । ପ୍ରାଣଭରି ନିଃଶ୍ୱାସ ନେଲେ । ଗୋଲାପ ତାଙ୍କର ଅତି ପ୍ରିୟ । ତାଙ୍କରି ପାଇଁ ତ ବହୁ ରକମର ଗୋଲାପ ଚାରା ମଗେଇ ଆଣିଛନ୍ତି ଇସ୍‌ମାଇଲ । ଏତେ ରଙ୍ଗର ଫୁଲ ସବୁ ଫୁଟେଇ ଦେଇଛନ୍ତି ତାଙ୍କରି ସଲ୍‌ମା ପାଇଁ । ନିଜ ଭାବନାରେ ଆତୁର କେତେ ସମୟ ମଜ୍ଜି ଯାଇଥାଆନ୍ତେ କେଜାଣି, ହଠାତ୍ ପଛରୁ କାନ୍ଧରେ ହାତ ରଖିଲେ ସ୍ୱାମୀ ।

"ବାଃ ବେଗମ୍ ବାଃ, ଝର୍କା ବନ୍ଦ କରିବାକୁ ଆସି ଦାର୍ଶନିକ ପାଲଟିଗଲ ଯେ !"

"ଆଲ୍ଲାଙ୍କ ପୃଥିବୀ ଦେଖୁଥିଲି । ଦେଖନ୍ତୁ ନା, କି ସୁନ୍ଦର ଜହ୍ନ । ଇଚ୍ଛା ହେଉଛି ଜହ୍ନ ଆଲୁଅରେ ଧୋଇଦିଅନ୍ତି ସାରା ଦେହକୁ ।"

ସଲ୍‌ମାଙ୍କ ମୁହଁକୁ ଚାହିଁଲେ ଇସ୍‌ମାଇଲ୍ । କିଛି ନକହି ପତ୍ନୀଙ୍କ ଅଣ୍ଟାରେ ହାତ ଛନ୍ଦି

ଆଗେଇଗଲେ । ଘରର ପଛ କବାଟ ଖୋଲି ଅଳ୍ପ ବାଟ ଗଲେ ଝାଉଁବଣ । କିଛି ଦୂରରେ ସମୁଦ୍ରର ଗର୍ଜନ, ଅନନ୍ତ ଢେଉ । ଜହ୍ନ ଆଲୁଅରେ ସକଳରେ ମରୁଆଲି ହୋଇଉଠିଛି ସୃଷ୍ଟି ।

"ଜନ୍ନତ୍ ଦେଖିଛ ବେଗମ୍ ?"

ସ୍ୱାମୀଙ୍କ କାନ୍ଧରେ ମୁଣ୍ଡ ରଖି ନିରୁତ୍ତର ରହିଲେ ସଲ୍ମା । ଡାକ୍ତରମାନେ ପୁଣି ଭାବୁକ ହୁଅନ୍ତି !

ଜନ୍ନତ୍ ? ସ୍ୱର୍ଗ ?

ଜନ୍ନତ୍ କ'ଣ ଦରକାର ତାଙ୍କର ? ଏଇ ତାଙ୍କର ସଂସାର, ଯେଉଁଠି ଭଲପାଇବା ଦେବୀ ଘେରିରହିଛନ୍ତି । ସ୍ୱାମୀ ପରେ ତାଙ୍କର ଆଉ ଦରକାର କ'ଣ ?

ନିଜ ପ୍ରଶ୍ନ ଦୋହରାଇଲେ ସଲ୍ମା, "ମାଲିକ ! ଜହ୍ନକୁ ଥରେ ଦେଖନ୍ତୁ ନା ?"

ସ୍ୱପ୍ନିଳ ଆଖି ଉପରକୁ ପଲକ ନଇଁଆସିଲା । ବୁର୍ଖାର ପର୍ଦ୍ଦା ଖୋଲି । ସ୍ୱାମୀଙ୍କର ହାଲୁକା ନିଃଶ୍ୱାସ କପାଳରେ ବାଜୁଛି ।

ଖୁବ୍ ଆସ୍ତେ ସଲ୍ମାଙ୍କ କାନ ପାଖରେ ଓଠ ରଖି କହିଲେ, "ଜହ୍ନ ତ ଆସିଛି ମୋ ମେହବୁବ୍ ପାଇଁ ତୋଫା ନେଇ, ତାକୁ କ'ଣ ଦେଖିବ ଭୁହ ? ମୋ ଜହ୍ନକୁ ମତେ ଦେଖିବାକୁ ଦିଅ ।"

"ଯାଃ—ହବୁଟବେଳେ ଖାଲି ଥଟ୍ଟା", ମିଛ ଅଭିମାନରେ ଆହୁରି ପାଖକୁ ଲାଗିଆସିଲେ ସଲ୍ମା । ଆଖି ବନ୍ଦକରି ଭାବୁଥିଲେ, କିଏ ଯେ କହୁଥିଲା···ମୋହବ୍ବତ ମିଳିଲେ ଦୁଆଡ଼େ ଖୁଦା ବି ନଜର ହୋଇଯାଆନ୍ତି ।

"ୟା ଆଲ୍ଲା !"

କାହାର ? କାହାର ଏ ଆର୍ତ୍ତ ଚିତ୍କାର ? ଧାଇଁଗଲେ ଇସ୍ମାଇଲ । ପଛରେ ସଲ୍ମା । ଯୋଖାଣ ହୋଇ ଉଠିବାର ଚେଷ୍ଟା କରୁଛି ଛାୟାମୂର୍ତ୍ତିଟି । ହଠାତ୍ ପୁଣି ସେ କଚଡ଼ି ହୋଇଗଲା ପାଣି ଉପରେ । ସବୁ ଚୁପ୍ଚାପ୍ । ଯୋଷିଦେଲାଭଳି ସମୁଦ୍ର ଲହରୀ କଲ୍ଲୋ ଗର୍ଜନ କରି ଆସି ବାଲି ଉପରେ ପିଟି ହୋଇଯାଉଛି ।

ସମସ୍ତ ନଷ୍ଟ ନଜର ଅଜ୍ଞାନ ଶରୀରଟିକୁ ଦୁଇ ହାତରେ ଟେକିଧରିଲେ ଡାକ୍ତର ଇସ୍ମାଇଲ । ଆଃ—ଗୋଟାଏ ଦେହରେ ପୁଣି ଏତେ କ୍ଷତ ? ଅସାଡ଼ ଦେହଟି ଯନ୍ତ୍ରଣାରେ ଛଟପଟ କରିଉଠିଲା । ଦୌଡ଼ି ଦୌଡ଼ି ସେ ନିଜ ଗେଷ୍ଟ ରୁମକୁ ନେଇଗଲେ ଲୋକଟିର ଶରୀରକୁ ।

"ସଲ୍ମା, ଟାଓ୍ୱେଲ, ଗରମ ପାଣି ।" ହାତର ଇଞ୍ଜେକ୍ସନ୍ ସିରିଞ୍ଜ ଠିକ୍ କରୁ କରୁ ପତ୍ନୀଙ୍କ ଉଦ୍ଦେଶ୍ୟରେ କହିଲେ ଇସ୍ମାଇଲ୍ । ଏକରକମ ଦୌଡ଼ିଗଲେ ସଲ୍ମା ଭେତେର ଘରକୁ । ଖୁବ କମ୍ ସମୟ ମଧ୍ୟରେ ଫେରିଆସିଲେ ପୁଣି । ବାଁହାତରେ ବଡ଼ ଗୋଟାଏ ଟର୍କିସ୍ ଟାଓ୍ୱେଲ୍, ଡାହାଣ ହାତରେ ଗରମ ପାଣି । ନିଜ ହାତରେ ଇସ୍ମାଇଲ୍ ଧୋଇ-ଦେଲେ ଲୋକଟିର କ୍ଷତ ସବୁ । ଦେହ ଉପରୁ ରକ୍ତ ଓ ବାଲିର ଗୋଟାଏ ପରସ୍ତ

ଉଠିଯିବା ପରେ ଯେଉଁ କଙ୍କାଳସାର ଶରୀର ପଡ଼ିରହିଲା, କେଇଦିନ ଆଗରୁ ତାହା ଯେ ଜଣେ ସୌମ୍ୟଦର୍ଶନ ଯୁବକର ଥିଲା, ସେ କଥା ଡାକ୍ତର ଇସ୍ମାଇଲ୍ ଠିକ୍ ବୁଝିପାରିଥିଲେ । ବୁଝି ମଧ୍ୟ ପାରିଥିଲେ ସଲ୍ମା । କୋମଳ ନାରୀ ମନ ତାଙ୍କର ଆର୍ଦ୍ର ହୋଇଅସୁଥିବା ବେଳେ ରକ୍ତ ପୂଜ ଧୂଳିବୋଳା ସାର୍ଟ ପକେଟରୁ ସ୍ୱାମୀ ତାଙ୍କର ବାହାର କରିନେଲେ କାର୍ଡ଼ଟିଏ । ପଲିଥିନ୍ କାଗଜରେ ଘେରିହୋଇଛି ଛୋଟ କାର୍ଡ଼ଟି । ଡାହାଣ ପଟରେ ପଚିଶ-ଛବିଶ ବର୍ଷ ଯୁବକର ଫଟୋ, ତା' ତଳେ ଲେଖା ହୋଇଛି ସାହନର୍ୱାଜ । ବାଁ ପଟେ କେବଳ ମୋହରଟିଏ, ତା' ଭିତରେ ଛୋଟ ଛୋଟ ଅକ୍ଷରରେ ଛପା "ପି. ଏଲ୍. ଓ." ।

ଡାକ୍ତରଙ୍କ ମନ ହଠାତ୍ କେଉଁଠି କ'ଣ ଚହଲିଯାଇଥିଲା କେଜାଣି । ଅତି କଠିନ ରୋଗରେ ଆକ୍ରାନ୍ତ ରୋଗୀଟିକୁ ଦେଖିଥିଲେ ମଧ୍ୟ ଏତେ ବିବ୍ରତ ହୋଇ ନ ଥାଆନ୍ତେ ଇସ୍ମାଇଲ୍ ।

ସ୍ୱାମୀଙ୍କର ଅମନୋଯୋଗିତାର କାରଣ କିଛି ବୁଝିପାରୁନଥିଲେ ସଲ୍ମା । "ବାଁ ପଟ ଛାତିର ଏ କ୍ଷତରୁ ଯେ ଏବେ ମଧ୍ୟ ଭୀଷଣ ରକ୍ତସ୍ରାବ ହେଉଛି, ଆପଣ କିଛି ଔଷଧ ଦେବେ ନାହିଁ ?"

"ସଲ୍ମା"—ପତ୍ନୀଙ୍କ କାନ୍ଧରେ ହାତ ରଖିଲେ ଇସ୍ମାଇଲ୍ । "ଏହି ଯୁବକ କିଏ ଜାଣ ? ପାଲେଷ୍ଟାଇନ୍ ମୁକ୍ତି ସଙ୍ଗଠନର ଜଣେ ସକ୍ରିୟ ସଭ୍ୟ । ତାକୁ ଘରେ ସ୍ଥାନଦେଇ ସେବାଶୁଶ୍ରୂଷା କରି ମୋ ନିଜ ପରିବାର ଉପରକୁ ବିପତ୍ତି କେମିତି ଡାକି ଆଣିବି କୁହ ?"

ପାଦତଳେ ମାଟି ନଥାଇ କେବଳ ଆକାଶକୁ ଚାହିଁ ସ୍ୱପ୍ନ ଦେଖୁଥିବା ଏବଂ ଇସ୍ରାଏଲ ଅଧିକୃତ ପାଲେଷ୍ଟାଇନ୍‌କୁ ନିଜର ଜନ୍ମଭୂମି ବୋଲି ମନେକରୁଥିବା ଏଇ ଦଳଟି ବିରୁଟ୍‌କୁ ନିଜର କାର୍ଯ୍ୟସ୍ଥଳୀ କରିନେଇଥିଲେ । ବିରୁଟ୍‌ରୁ ପଡ଼ୋଶୀ ଇସ୍ରାଏଲ୍ ଉପରେ ଆକ୍ରମଣ କରିବା ବେଶ୍ ସୁବିଧା ହେଉଥିଲା । ଇସ୍ରାଏଲ୍‌ର ପ୍ରତିରକ୍ଷା ମନ୍ତ୍ରୀ ସାରୋନ୍ ସେଇଥିପାଇଁ ଲେବାନନ୍‌କୁ ଶେଷଥର ପାଇଁ ଚେତାବନୀ ଦେଲେ, "ତଡ଼ିଦିଅ ଏ ବର୍ବରମାନଙ୍କୁ । ଲୋପ କରିଦିଅ ତାଙ୍କ ଦଳକୁ । ନଚେତ୍ ଇସ୍ରାଏଲୀ ଆକ୍ରମଣରେ ଭୂଇଁରେ ଲୋଟିଯିବ ବିରୁଟ୍ ସହର ।"

ଅଧିକ ଶକ୍ତିଶାଳୀ ଇସ୍ରାଏଲ୍ ବିରୁଦ୍ଧରେ ମୁଣ୍ଡ ଟେକିବାକୁ ଶକ୍ତି ନାହିଁ ଲେବାନନ୍‌ର । ବାଧ୍ୟକରି ପି. ଏଲ୍. ଓ. ର ସଭ୍ୟମାନଙ୍କୁ ପଠାହୋଇଗଲା ଜୋର୍ଡ଼ାନ । ବାକି ଯେଉଁ କେତେଜଣ ଏବେ ମଧ୍ୟ ଲୁଚିରହିଛନ୍ତି, ସେମାନଙ୍କୁ ଖୋଜି ବୁଲୁଛନ୍ତି ଇସ୍ରାଏଲୀ ସୈନ୍ୟଗଣ । ଘର ଘର ବୁଲି ସେମାନଙ୍କର ଅନୁସନ୍ଧାନ—ପି. ଏଲ୍. ଓ.ର ସଭ୍ୟଙ୍କୁ କେହି ଶରଣ ଦେଉନାହିଁ ତ ? ସେପରି ପରିବାରର ସମସ୍ତ ସଦସ୍ୟଙ୍କୁ ଗୁଳିକରି ମାରିଦେଉଥିଲେ ସେମାନେ । ଏ ବର୍ବରତା, ନୀଚତାର ସାମ୍ନା କରିବ କିଏ ? କିଏ ବା ନିଜ ପରିବାରକୁ ଜଳାଞ୍ଜଳି ଦେଇଦେବ ମାଟି ଖୋଜୁଥିବା କେତେଗୁଡ଼ା ଲୋକଙ୍କ ପାଇଁ ? ପାରିବେ କ'ଣ ଇସ୍ମାଇଲ୍, ଜଣେ ସରକାରୀ ଡାକ୍ତର ?

"ଏ କ୍ଷତ…", ମନେପକାଇଦେଲେ ସଲ୍‌ମା ।

"ମୁଁ ପାରିବିନାହିଁ, ସଲ୍‌ମା", ସ୍ଥିର ନିଶ୍ଚିତ ହୋଇଯାଇଥିଲେ ଇସ୍‌ମାଇଲ, "ବାଧ୍ୟହୋଇ ମତେ ପୋଲିସ୍‌କୁ ଜଣାଇବାକୁ ପଡ଼ିବ । ଜେଣିକି ଯୁବକଟିର ଭାଗ୍ୟ…"

"ମାଲିକ, ଏମିତି ରକ୍ତକ୍ଷୟ ହେଲେ ଲୋକଟି ଯେ ଆଉ ବଞ୍ଚିବ ନାହିଁ ।"

"ଆଃ ସଲ୍‌ମା, ଇସ୍ରାଏଲ୍ସ ସୈନ୍ୟ ପୁଣି ଏହାର ଖବର୍ ପାଇଗଲେ ଆମେ କେହି ବଞ୍ଚିବା ନାହିଁ"—ଜୋର୍ ଦେଇ କହିଲେ ଇସ୍‌ମାଇଲ ।

ବଡ଼ ବଡ଼ ପାଦ ପକାଇ କବାଟ ପାଖକୁ ଚାଲିଗଲେ ସେ । ସେଠି ନ ରହିବାର ସବୁ ନିଷ୍ପତ୍ତି ସତ୍ତ୍ୱେ କେଇ ମୁହୂର୍ତ୍ତ ପାଇଁ ଅଖି ଦିଓଟି ତାଙ୍କର ବୁଲିପଡ଼ିଲା ପଛକୁ । ଖଟ ସାଙ୍ଗରେ ଏକଦମ୍ ମିଶିଯାଇଛି କଙ୍କାଳସାର ଲୋକଟି । କ୍ଷତରୁ ଏବେ ମଧ୍ୟ ଭୀଷଣ ରକ୍ତକ୍ଷରଣ ହେଉଛି । ମନରେ ଅନିଶ୍ଚିତତା ତାଙ୍କର । ପୁଣି ଫେରିଆସିଲେ ସେ ଖଟପାଖକୁ । ହୃତ୍‌ପିଣ୍ଡର ଉଠିବା ପଡ଼ିବା କମି କମି ଯାଉଛି । ନାଡ଼ିର ଗତି କ୍ଷୀଣ । ବିଦ୍ରୋହ କରିଉଠିଲା ଇସ୍‌ମାଇଲଙ୍କର ଡାକ୍ତର ହୃଦୟ । ମେଡ଼ିକାଲ କଲେଜରେ ଆଡ୍‌ମିସନ୍ ନେବା ସମୟର ପ୍ରତିଜ୍ଞା, "ମନୁଷ୍ୟ ସେବା ମୋ ଜୀବନର ବ୍ରତ ହେଉ"—କେମିତି ଭୁଲିଯାଉଥିଲେ ସେ ?

"ସଲ୍‌ମା, ମୋ କିଟ୍ ।" ଡାହାଣ ହାତରେ ଗଜ୍‌କନା ଧରି କ୍ଷତଟିକୁ ପୋଛି ବସିଲେ ଡାକ୍ତର ଇସମାଇଲ । ତା'ପର ଦୁଇଘଣ୍ଟା ଯେ କେମିତି କଟିଗଲା, କିଛି ଜାଣିନାହାନ୍ତି । ସାହାନଓ୍ୱାଜ ଶରୀରର ପଚିଯାଇଥିବା ମାଂସ ସବୁ କାଢ଼ି ଫୋପାଡ଼ି ଦେଇ, ସମସ୍ତ କ୍ଷତରେ ବ୍ୟାଣ୍ଡେଜ୍ ବାନ୍ଧି ସାରିବା ବେଳକୁ ରାତି ଛଅଟା ବାଜିସାରିଥିଲା । ଖାଇବାର ଆଉ ଆଗ୍ରହ ନଥିଲା ତାଙ୍କର । ରକ୍ତଛିଟା ପଡ଼ିଥିବା ସାର୍ଟଟିକୁ ବଦଳାଇ ଦେଇ ଖଟ ଉପରେ ଆଉଜିବା-କ୍ଷଣି ନିଦ ହୋଇଗଲା ।

× × × ×

ଆଖିପତା ଉପରେ ଯେତେ କି ଶତାବ୍ଦୀର ବୋଝ । ଖୁବ୍ କଷ୍ଟରେ ଆଖି ଦିଓଟି ମେଲି-ହୋଇଗଲା । କାହିଁ ତା'ର ପ୍ରିୟ ଆକାଶ ? ଏ ଇଟା, ବାଲି, ସିମେଣ୍ଟର ଛାତ ତଳକୁ ସେ ଆସିଲା କିପରି ? କିଛି ବୁଝି ପାରୁ ନଥିଲା ସାହାନଓ୍ୱାଜ୍ । ଦେହଟାକୁ କିଏ ଯେମିତି ଖୁବ୍ ଜୋର୍‌ରେ ବାନ୍ଧିଦେଇଛି, ହଲାଇବାର ଉପାୟ ନାହିଁ । କବାଟ ସାମାନ୍ୟ ମେଲି-ହୋଇଗଲା । କୋଠରି ଭିତରେ ପାଦ ରଖିଲେ ପଇଁତିରିଶ ଛତିଶ ବର୍ଷ ବୟସ୍କ ଡାକ୍ତର ଇସ୍‌ମାଇଲ । ଏ କିଏ ? ତ୍ରାଣକର୍ତ୍ତା ନା ଘାତକ ??

"କେମିତି ଲାଗୁଛି ?" ବେଶ୍ କୋମଳ ଭାବରେ ପ୍ରଶ୍ନ କଲେ ଇସମାଇଲ୍ ।

ଏମିତି ଗୋଟାଏ ପ୍ରଶ୍ନ ବହୁ ଦିନ ପରେ ତ !

"ଭଲ…"

ସାମାନ୍ୟ ଅନ୍ୟମନସ୍କ ହୋଇପଡ଼ିଲେ ଡାକ୍ତର, "ଗତ ରାତିରେ ତୁମେ ଅଜ୍ଞାନ ହୋଇ ସମୁଦ୍ରକୂଳରେ ପଡ଼ିଥିଲ, ମୁଁ ଘରକୁ ନେଇ ଆସିଥିଲି । ତୁମର ଏମିତି ଅବସ୍ଥାରେ ତ

ତାହାର ଅନୁମତି ନେବା ସମ୍ଭବ ନଥିଲା, ବିନା ଅନୁମତିରେ ତେଣୁ ତୁମର ଶରୀରରେ ଅସ୍ତ୍ରୋପଚାର କରିଛୁ । କିଛି ଦିନ ତୁମକୁ ବିଶ୍ରାମ ନେବାକୁ ହେବ । ମଝିରେ ମଝିରେ ମୁଁ ତୁମକୁ ଦେଖିନେବି ।"

କିଛି ନକହି କୃତାର୍ଥ ହୋଇ ଡାକ୍ତରଙ୍କ ଯିବା ରାସ୍ତାକୁ ଚାହିଁରହିଥିଲା ସାହାନଓ୍ୱାଜ୍ । ବଞ୍ଚିବାର ଏ ଆନନ୍ଦ ପୁଣି ଦୁର୍ବଳ କରିଦେଲା ତାକୁ । ଆଖି ଦିଓଟି ବନ୍ଦହୋଇଗଲା । ବନ୍ଦ ଆଖିପତା ଭିତରେ ହସିଉଠିଲା ଗୋଟିଏ ମୁହଁଟିଏ ।

"ମୋ କସମ୍, ଜଲ୍‌ଦି ଆସିବ, ଏକଦମ୍ ଜଲ୍‌ଦି ।"

ରେଣମା ! ! !

ହାତ ଠାରି ଠାରି ମୁହଁଟି ପୁଣି ଘୁଞ୍ଚିଚାଲିଗଲା ବହୁ ଦୂରକୁ, ଯେଉଁଠି ହାତ ବଢ଼ାଇଲେ ଛୁଇଁପାରିବ ନାହିଁ ସାହାନଓ୍ୱାଜ୍ ।

ଅଃ—ସେଇ ଶେଷଥର ପାଇଁ ଦେଖା ।

ହଁ, ଶେଷଥର ପୁଣି ଗୋଟାଏ କ'ଣ ? କେଇଟା ଦିନର ତ ପରିଚୟ । ତା'ପରେ ହିଁ ସାହାନଓ୍ୱାଜ୍‌କୁ ଚାଲିଆସିବାକୁ ପଡ଼ିଛି ଏତେ ଦୂରକୁ ।

ପାଲେଷ୍ଟାଇନ୍ ବୋଲି ଗୋଟାଏ ଜାଗା ନାହିଁ, ସ୍ୱପ୍ନ ଅଛି । ସେ ମାଟିରେ ଭଲପାଇ ହୁଏ, କିନ୍ତୁ ନିଜର କରି ହୁଏ ନାହିଁ । କସମ୍ ଦେଇଛି, ସାହାନଓ୍ୱାଜ୍ କୁଆଡ଼େ ଶୀଘ୍ର ଫେରିଆସିବ, ଖୁବ୍ ଶୀଘ୍ର । ଆଖିର ପଲକ ପଡ଼ି ପୁଣି ଥରେ ଚାହିଁବା ଭିତରେ ଯେତିକି ସମୟ, ସେତିକିରେ ଯତେ ଫେରିଆସିବ ।

ଏତେ ଆନ୍ତରିକତା; ଅଥଚ ସାହାନଓ୍ୱାଜ୍ ଥରେ ମଧ୍ୟ ପଚାରିନାହିଁ ରେଶ୍‌ମାର ଘର କେଉଁଠି, ତାକୁ ଜନ୍ମ କିଏ ଦେଇଛି, କେଉଁ ମାଟିର ଫସଲ ସେ ? ଠିକ୍ ଯେମିତି ଶେଷ ପର୍ଯ୍ୟନ୍ତ ତାକୁ ରେଶ୍‌ମା ପଚାରିନାହିଁ, କେଉଁଠାରୁ ସାହାନଓ୍ୱାଜ୍‌ର ନଦୀ ବହିଛି, କେଉଁ ସାଗରରେ ମିଶିବ ? ମୁଠାଏ ମାଟିର ମଣିଷ ସେମାନେ, ତାଙ୍କର ପରିଚୟ ପୁଣି କ'ଣ ?

କ୍ଲାନ୍ତ ହୋଇପଡ଼ିଲା ସାହାନଓ୍ୱାଜ୍ ।

× × × ×

ସୁନା ସକାଳର ପୃଥିବୀ । ଏ ପର୍ଯ୍ୟନ୍ତ ସହରରେ ଆରମ୍ଭ ହୋଇନି ବଞ୍ଚିବାର ଦୌଡ଼ । ହଠାତ୍ ଗୋଟାଏ ଅତି ପରିଚିତ ଶବ୍ଦ ପଶିଆସିଲା କୋଠରି ଭିତରକୁ, ଯେଉଁଠି ଡାକ୍ତର ଇସମାଇଲ୍ ପ୍ରାତଃଭୋଜନ କରୁଥିଲେ । ଚାମଚଟା ପ୍ଲେଟ୍ ଉପରେ ରଖିଦେଇ ପତ୍ନୀଙ୍କ ମୁହଁକୁ ଚାହିଁଲେ ସେ । ଅନୁମାନ ତାଙ୍କର ଭୁଲ ନୁହେଁ । ରାସ୍ତା ଉପରେ ଜୋତା ଘୋଷାରି ଘୋଷାରି ହାତରେ ବନ୍ଧୁକ ଧରି ଚାଲି ଯାଉଛନ୍ତି ଦଳେ ଇସ୍ରାଏଲୀ ସୈନିକ ।

ଏଇ···ତାଙ୍କ ଫାଟକ ପାରିହୋଇଗଲେ ସେମାନେ । ସ୍ୱସ୍ତିର ନିଃଶ୍ୱାସ ନେଇ ନେଇ ଇସ୍‌ମାଇଲ୍‌ଙ୍କ ଦେହ ହାଲୁକା ଥିଲା ଯେମିତି । ଆଜି ସେମାନେ ଆସିଲେ ନାହିଁ, କାଲି

ମଧ୍ୟ ଆସିନପାରନ୍ତି । କିନ୍ତୁ ଯେବେହେଉ ତଲାସି ନେବାକୁ ସେମାନେ ଆସିବେ ନିଶ୍ଚୟ । ତା'ପରେ···

ଓଃ ! ଦୁଇ ହାତରେ ମୁଣ୍ଡ ଚିପି ଧରିଲେ ଇସ୍‌ମାଇଲ୍ ।

ସାହନୱାଜ୍ ପ୍ରାୟ ଭଲ ହୋଇଆସିଲାଣି । ଚାଲବୁଲ କରିପାରୁଛି, ଦେହ କିନ୍ତୁ ଖୁବ୍ ଦୁର୍ବଳ । ଏବେ ମଧ୍ୟ ତା' ଜୀବନ ଉପରୁ ବିପଦ କଟିନି । ଉତ୍ତେଜନାରେ ବା ପରିଶ୍ରମରେ କ୍ଷତରୁ ପୁଣି ରକ୍ତସ୍ରାବ ହେବାର ଭୟ ଅଛି । ଆଉ ପୁନର୍ବାର ରକ୍ତସ୍ରାବ ହେଲେ ତା'ର ଦୁର୍ବଳ ହୃତ୍‌ପିଣ୍ଡଟି ଚିରଦିନ ପାଇଁ ନିଥର ହୋଇଯିବ । ଏକଥା ଜାଣି ତାକୁ ଧକ୍କା ଦେଇ ଘରୁ କେମିତି ବାହାର କରିଦେବେ ଡାକ୍ତର ଇସ୍‌ମାଇଲ୍ ?

ପ୍ରତିଦିନ ସକାଳେ ସଲ୍‌ମା ସାହନୱାଜ୍ ପାଇଁ ଚା' ନେବା ଆଗରୁ ଗେଷ୍ଟରୁମ୍‌ର କବାଟ ଅଳ୍ପ ଖୋଲି ଧରି ଆଖି ବନ୍ଦ କରିଦିଅନ୍ତି ଇସ୍‌ମାଇଲ । ହୁଏତ, ଏଇ ମାତ୍ର ଆଖି ଖୋଲି ସେ ଦେଖିବେ କୋଠରୀରେ ମଣିଷଟିଏର ବାସ୍ନା ଅଛି, ମଣିଷଟି ନାହିଁ । କିନ୍ତୁ ଆଖିର ପଲକ ମେଲିବା ଆଗରୁ ଭାସିଆସେ, "ସଲାମ୍ ଆଲେକମ ଡାକ୍ତର ସାହେବ ।"

ଆଃ—କିଛି କ'ଣ ବୁଝେନା ଯୁବକଟି ? ଜଣେ ସରକାରୀ ଡାକ୍ତରଙ୍କ ଘରେ ଏମିତି ଲୁଚି ରହିବାର ପରିଣାମ କ'ଣ ସେ ଜାଣେନା ? ତା' ଉପସ୍ଥିତି ତାଙ୍କ ପରିବାର ଉପରେ ଭୟ, ଆଶଙ୍କା ଏବଂ ଅନିଶ୍ଚିତତାର ଗୋଟାଏ କଳା ଚାଦରଣି ଘୋଡ଼େଇ ଦେଇଛି । କେଉଁ ମୁହୂର୍ତ୍ତରେ ଘାତକର ନିଷ୍ଠୁର ଆଘାତରେ ବିଲୀନ ହୋଇଯିବ ସେଇଟା, ସେ କଥା କ'ଣ ଅନୁମାନ କରିପାରେନା ସାହନୱାଜ୍ ?

ମନର ବିରକ୍ତିକୁ କିନ୍ତୁ ପ୍ରକାଶ ନକରି ଓଠରେ ହସ ଖେଳାନ୍ତି ଡାକ୍ତର ଇସ୍‌ମାଇଲ୍ ।

× × × ×

ସେଦିନ ସକାଳୁ ପଲିକ୍ଲିନିକ ଆଡ଼େ ଯିବା ସମୟରେ ଡାକ୍ତର ସାମାନ୍ୟ ଅନ୍ୟମନସ୍କ ହୋଇପଡ଼ିଲେ । ଅନ୍ୟ ଆଡ଼େ ଗାଡ଼ି ଡ୍ରାଇଭରକୁ କହିଲେ, "ମିର୍ଜା ସାହେବଙ୍କ ଘରକୁ ଚାଲ ।"

ପୋଲିସ୍‌ର ସର୍ବୋଚ୍ଚ କର୍ତ୍ତା ମିର୍ଜା ସାହେବଙ୍କୁ ଦେଖାକରି ଫେରିବା ପରେ କିନ୍ତୁ ଖୁବ୍ ହାଲ୍‌କା ଲାଗୁଥିଲା ତାଙ୍କୁ । ଯା'ହେଉ, ମନ ଭିତରେ ଗୋଳେଇ ହେଉଥିବା ସମସ୍ୟାର ତ ଖୁବ୍ ଶୀଘ୍ର ସମାଧାନ ହୋଇଯିବ । ମିର୍ଜା ସାହେବଙ୍କ କଥା ମନେପଡ଼ୁଥିଲା ତାଙ୍କର, "ତୁମେ ବ୍ୟସ୍ତ ହୁଅନାହିଁ ଡାକ୍ତର । ତୁମ କର୍ତ୍ତବ୍ୟ ତୁମେ କରିଛ—ଏଣିକି ଆମ କର୍ତ୍ତବ୍ୟ ଆମକୁ କରିବାକୁ ଦିଅ । ବିବ୍ରତ ହୁଅ ନାହିଁ, ଖୁବ୍ ଶୀଘ୍ର ଯୁବକଟିର ଇନ୍ତଜାମ୍ କରିଯିବ ।"

ଇସ୍‌ମାଇଲ୍ ବ୍ୟସ୍ତ ହୋଇ କହିଥିଲେ, "କିନ୍ତୁ ମିର୍ଜା, ମୋ ଘରେ···?"

"ତୁମ ଘରେ ଆଦୌ ନୁହଁ । ଦୁଷ୍ଟ ଲୋକଙ୍କ ମତେ ଦେଇଦିଅ ଇସ୍‌ମାଇଲ୍ । ସେ କଥା ମୁଁ ବୁଝିବି ।"

× × × ×

ଟ୍ରେରେ ସକାଳର ଚା' ନେଇ ଯାଉଥିଲେ ସଲ୍ମା ।

"ସଲ୍ମା, ରୁହ," ଖବରକାଗଜଟା ଫୋପାଡ଼ି ଦେଇ ଆଗେଇ ଆସିଲେ ଇସ୍ମାଇଲ, "ଏ କ'ଣ ସାହନଓ୍ବାଜ୍‌ର ଚା' ?"

ସଲ୍ମାଙ୍କର ମୁଣ୍ଡ ସାମାନ୍ୟ ଝୁଙ୍କିଗଲା ସମ୍ମତିରେ ।

"ମତେ ଦିଅ, ମୁଁ ନେଇଯିବି ।" ସଲ୍ମାଙ୍କ ହାତରୁ ଏକରକମ ଟ୍ରେ ଛଡ଼ାଇନେଲେ ଡାକ୍ତର । କପ୍‌ରୁ ଚା' କେଇ ଟୋପା ଚହଲି ପଡ଼ିଲା ପ୍ଲେଟ୍‌ରେ । କ୍ଷିପ୍ର ଗତିରେ ସେ ଚାଲିଗଲେ ଗେଷ୍ଟରୁମ୍ ଆଡ଼କୁ । ନ ବୁଝିବା ଦୃଷ୍ଟି ନେଇ ସେଇଆଡ଼େ ଚାହିଁରହିଥିଲେ ସଲ୍ମା ।

ହାତ ଦେଉ ଦେଉ ସାମାନ୍ୟ ମେଲିଗଲା କବାଟ । ଅନ୍ୟଦିନ ପରି ଡାକ୍ତରଙ୍କ ଆଖି ବନ୍ଦ । ଆଜି କିନ୍ତୁ ବନ୍ଦ ଆଖିପତା ଖୋଲିବାକୁ ଚାହୁଁ ନଥିଲେ ସେ । ସେ କ'ଣ ଦେଖି ପାରିବେ କୋଠରିର ଶୂନ୍ୟତା ? ମୌତ୍ ସାଙ୍ଗରେ ଲଢ଼େଇ କରି ଯେ ଯେଉଁ ଜୀବନ ଫେରାଇ ଆଣିଥିଲେ, ସେ ଜୀବନର ଶେଷ ଘଟିଯାଇଥିବ କାଲି ରାତିରେ । ନହେଉ ପଛକେ ତାଙ୍କ ଘରର ପରିସୀମାରେ, ଆଲ୍ଲାଙ୍କ ଦରବାରରେ କେଉଁଠି ହେଲେ ତ ! ଏ ପାପ କ'ଣ ତାଙ୍କର ନୁହେଁ ? ଜୀବନାନ୍ତ ପର୍ଯ୍ୟନ୍ତ ସେ କ'ଣ ସହିପାରିବେ ସେଇ ଦଂଶନ ? ସେଦିନ ରକ୍ତରଞ୍ଜିତ ହୋଇଯାଇଥିଲା ସଲ୍ମାଙ୍କ ପରିଷ୍କାର ଧଳା ଚଦର; କାଲି ରାତିରେ ମଧ୍ୟ ଲାଲ୍ ଛୁପା ପଡ଼ିଯାଇଥିବ ପୃଥିବୀ ମାଟିରେ । ସେଦିନ ମଣିଷଟିର ମୁହଁରେ ଥିଲା ଜୀବନ ଯୁଦ୍ଧରେ ହାରିଯାଇ ମୃତ୍ୟୁ ସମ୍ମୁଖରେ ଆତ୍ମସମର୍ପଣ କରିବାର ବେଦନା, କାଲି କିନ୍ତୁ ସ୍ଥାନାନ୍ତରିତ ହେବା ଆଗରୁ ଫେରାର୍ ମଣିଷଟିର ଓଠରେ ଥିବ ବଞ୍ଚିବାର ଗୌରବ ନେଇ ବିଶ୍ବାସର ହସ ଟିଏ, ଯାହା ଆଉ କୌଣସି ଦିନ ଖେଳିବ ନାହିଁ ଜଡ଼ ଓଠ ପାଖୁଡ଼ା ଦିଓଟିରେ ତା'ର ।

"ସଲାମ ଆଲେକମ୍ ଡାକ୍ତର ସାହେବ !"

ଇସ୍ମାଇଲ୍ ଚମକିପଡ଼ିଲେ । ଆଖି ଖୋଲି ମଧ୍ୟ ସତ୍ୟକୁ ଗ୍ରହଣ କରିପାରୁ ନଥିଲେ ସେ । ତାଙ୍କଆଡ଼କୁ ଅଭିନ୍ନ ଖୁବ୍ ଗୋଟାଏ ଚହଲା ଭଙ୍ଗୀରେ ବସିରହିଛି ସାହନଓ୍ବାଜ । କୃତଜ୍ଞତାର ହସ ତା'ର ନାହଡ଼ା ଲଙ୍କଚୁ ଓଠରେ ।

× × × ×

ଚା' କପ୍ ଧରି ଡାକ୍ତର କେତେବେଳୁ ସେଇମିତି ବସିରହିଛନ୍ତି କେଜାଣି ! ସନ୍ତ୍ରାସବାଦୀ ଯୁବକଟିର ପ୍ରଗଲ୍ଭତା ମନେପଡ଼ୁଯାଉଛି । ସାହନଓ୍ବାଜ୍ ଶୁଣେଇଥିଲା ତା' ଜୀବନର କାହାଣୀ । ରାଜନୀତି, ହାଣକାଟ, ବିପ୍ଳବ, ସଂଗ୍ରାମ ଏ ସବୁ ବିଷୟ ପ୍ରତି ଇସ୍ମାଇଲ୍‌ଙ୍କର କୌଣସି ସ୍ପୃହା ନାହିଁ । ଏ ସବୁରେ ସାମିଲ୍ ହୋଇଯିବାର ସାର୍ଥକତା ଯେ କ'ଣ, ତା' ଭାବିବାକୁ କେବେ ଚେଷ୍ଟା ମଧ୍ୟ କରିନାହାନ୍ତି ସେ । ଆଜି କିନ୍ତୁ ମନ ଚହଲି ଯାଉଛି, ଗୋଡ଼ତଳ ପୃଥିବୀର ବି ଯେ ଜାନ୍ ଥାଏ, ସେ ବୋଧେ ଆଗରୁ କେବେ ଭାବି ନଥିଲେ !

"ଡାକ୍ତର ସା'ବ୍, ରେଶ୍ମାକୁ କଥାଦେଇ ମୁଁ ଚାଲିଆସିଲି ! ତା' ଘରର୍ ଅଳ୍ପ ଦୂରରେ

ଗୋଟାଏ ଇସ୍ରାଏଲୀ ଟ୍ୟାଙ୍କ ଠିଆହୋଇଥିଲା । ସେତେବେଳେ ମଧ୍ୟ ମୁଁ ଫେରିଯାଇ ପାରିଥାଆନ୍ତି । କିନ୍ତୁ ପାଖ ଗଳିରେ ମୋ ସାଥୀମାନେ ସବୁଦିନେଇଁ ଶୋଇଯାଇଥିଲେ । ସ୍ୱପ୍ନ ପାଇନାହାନ୍ତି, ଏତେ ଶୀଘ୍ର କାଫିର୍‌ର କଦମ୍ ଏ ଗଳିରେ ପଡ଼ିବ !" ଉତ୍ତେଜନାରେ ସାହନଓ୍ୱାଜ୍‌ର ନିଶ୍ୱାସର ଗତି ବଢ଼ୁଛି ।

ସନ୍ତ୍ରସ୍ତ ମନରେ ଶୁଣୁଛନ୍ତି ଇସ୍‌ମାଇଲ୍ ।

"ଆପଣ କହନ୍ତୁ ଡାକ୍ତର, ମୁଁ କ'ଣ କରିଥାଆନ୍ତି ? ସେପଟେ ସାଙ୍ଗଟା ଜୀବନ, ଏପଟେ ସାତଦିନର ପରିଚିତା ଗୋଟାଏ ଝିଅ । ଅବିଶ୍ୱାସୀ ହୋଇ ମୁଁ ଯେବେ ଦୌଡ଼ିଗଲି ମୋ କ୍ୟାମ୍ପ୍ ଆଡ଼କୁ, ସେମାନେ ସେଲିଂ ଆରମ୍ଭ କରିଦେଇଥିଲେ । ହତିଆର ନେଇ ସମସ୍ତେ ସେ ଜାଗା ଛାଡ଼ି ଚାଲିଯିବାକୁ ନିର୍ଦ୍ଦେଶ ମିଳିଥିଲା । ମନେପଡ଼ିଗଲା, ରେଶ୍ମା ଘରେ ଇସ୍ରାଏଲୀମାନେ ନିଶ୍ଚୟ ପଶିବେ । ଉପାୟ ନଥିଲା ଡାକ୍ତର । ମନ ଛଟପଟ କରିଉଠିଲା ସବୁ ଛାଡ଼ି ତା' ପାଖକୁ ଦୌଡ଼ିଯିବା ପାଇଁ । ମୋ ସାମ୍ନାରେ ମୋ ପୃଥିବୀ ଭାଙ୍ଗି ପଡ଼ୁଛି; କିନ୍ତୁ ଅସହାୟ ଦର୍ଶକ ପରି ମୁଁ କେବଳ ଚାହିଁରହିଥିଲି । ସାରା ଦୁନିଆର ଖୁନ୍ ନିକାଲି ଦେବାପାଇଁ ଇଚ୍ଛାହେଉଥିଲା ସେଇ ମୁହୂର୍ତ୍ତରେ । ଉପାୟଶୂନ୍ୟ ହୋଇ ମୁଁ ଅପେକ୍ଷା କରିଥିଲି ସନ୍ଧ୍ୟା କେତେବେଳେ ହେବ । ବନ୍ଦ ହୋଇଗଲା ଡାକ୍ତର ସାହେବ, ସାରାଜୀବନ ପାଇଁ ବନ୍ଦ ହୋଇଗଲା । ମୁଁ ଯାଇ ଦେଖିଲି ରେଶ୍ମାର ବେଆବ୍ରୁ ଦେହ, ଆଉ ତା' ଉପରେ ଅନେକ ଦଂଶନର ଦଲିଲ୍ । କବର ଖୋଳି ତା'ର ସେଇ ପରିତ୍ୟକ୍ତ ଦେହଟାକୁ କଫିନ୍ କରିବାର ମଧ୍ୟ ଉପାୟ ନଥିଲା । ମୋ କମିଜ୍ ଘୋଡ଼େଇ ଦେଇ ଚାଲିଆସିଲି । ଡାକ୍ତର, ସେଦିନ ଖୁଦା ବି ନାରାଜ୍ ଥିଲେ, ମୋ ଆଖିକୁ ଲୁହ ଟିକିଏ ଆସିଲାନି ।

ଫେରିବା ବାଟରେ କିନ୍ତୁ ଧରାପଡ଼ିଯାଇଥିଲି । ମତେ ସେମାନେ କହିଲେ, "ରୁ ଫେରାର୍ ହୋଇଯା' ।" ଅବିଶ୍ୱାସରେ ସେମାନଙ୍କ ମୁହଁକୁ ଥରେ ଚାହିଁ ଦୌଡ଼ିବା ଆରମ୍ଭକଲି । ହେଲେ ମାତ୍ର ଶହେ କଦମ୍ ପରେ ଦେହ ଭିତରେ ହଠାତ୍ ଗୋଟାଏ ନିଆଁ ହୁଲା ପଶି ସବୁଆଡ଼େ ଛୁଟି ହୋଇଗଲା । ଜ୍ଞାନ ହରେଇ ପଡ଼ିଯିବା ଆଗରୁ ମୁଁ ବୁଝିଲି, କାହିଁକି ସେମାନେ ମତେ ଛାଡ଼ିଦେବାର ବାହାନା କରୁଥିଲେ ।

× × × ×

ମିର୍ଜା ସାହେବଙ୍କ ଲୋକମାନେ ଆସିଗଲେଣି । କବାଟ ଖୋଲିଲେ ଇସ୍‌ମାଇଲ । ସାମ୍ନାରେ ସାଦା ପୋଷାକଧାରୀ ପୋଲିସ୍ ଦୁଇଜଣ ।

"କେଉଁ ରୁମ୍‌ରେ ଡାକ୍ତର ସାହେବ ?"

ଗୋଟାଏ ମୁହୂର୍ତ୍ତ ପାଇଁ ଚୁପ୍ ରହିଗଲେ ଡାକ୍ତର । ତା'ପରେ ଅସ୍ପଷ୍ଟ ସ୍ୱରରେ କହିଲେ, "ଆଉ କୌଣସି ଜରୁରତ୍ ନାହିଁ ।"

"ମାନେ ?"

"ସେ ଚାଲିଯାଇଛି"—ଗମ୍ଭୀର ଗଳାର ଉତ୍ତର ।

"କିନ୍ତୁ ଡାକ୍ତର ସାହେବ, ମିର୍ଜା ସା'ବ ତ..."

"ଓଃ—କହିଲି ତ ସେ ଚାଲିଯାଉଛୁ । କହିଦେବ ଏ କଥା ମିର୍ଜାଙ୍କୁ । ଖୁଦା ହାଫିଜ୍ ।" ସାମାନ୍ୟ ବିରକ୍ତ ନେଇ ଇସ୍ମାଇଲ୍ କହିଲେ । କବାଟ ବନ୍ଦ କଲାବେଳେ ସେହି ଦୁଇଜଣଙ୍କର ଆଖିର ବିସ୍ମୟ ସେ ଠିକ୍ ଅନୁଭବ କରିଥିଲେ ।

ଭୀଷଣ ଆଶ୍ଚର୍ଯ୍ୟ ମଧ୍ୟ ହୋଇଥିଲା ସାହନୱାଜ୍, ଯେତେବେଳେ ଗେଷ୍ଟରୁମ୍ କବାଟକୁ ଭରଦେଇ ଠିଆହୋଇଥିବା ଡାକ୍ତର ଇସ୍ମାଇଲ୍‌ଙ୍କ ଡାହାଣ ହାତରେ ଥିବା ଗ୍ଲବଟି ସାମାନ୍ୟ ହଲିଯାଇଥିଲା ।

ଡାକ୍ତରଙ୍କ କାର୍ ଓ ଏକ୍‌ଜିଟ୍ ପରମିଟ୍ ନେଇ ଯେତେବେଳେ ଚାଲିଯାଉଥିଲା ସାହନୱାଜ୍, ଘଡର ଅନ୍ଧାର ଭିତରେ ପୃଥିବୀର ବ୍ୟଗ୍ର ହତ୍ୟାକାରୀମାନେ ଫାଟକ ପରେ ଫାଟକ ଖୋଲିଦେଇଥିଲେ ।

"ଓଃ ଡକ୍ଟର ଇସ୍ମାଇଲ୍ ? ଲେବାନନ୍ ପଲିକ୍ଲିନିକ୍ ? ଯାଆନ୍ତୁ ସା'ବ ।" ସଲାମ୍ ଦେଇ ସେମାନେ ଘୁଞ୍ଚିଯାଇଥିଲେ ।

× × × ×

ସୂର୍ଯ୍ୟ ଉଦୟ ବେଳକୁ ଆଗରେ ଥିବ ଜୋର୍ଡ଼ାନ୍ । ସେଇଠାରୁ ପୁଣି ଆରମ୍ଭ ହୋଇଯିବ ସାହନୱାଜ୍ ଜୀବନର ଆଉ ଗୋଟାଏ ପର୍ଯ୍ୟାୟ, ଆରମ୍ଭ ହୋଇଯିବ ବିପ୍ଳବ ଓ ଆତ୍ମବଳର ଅନ୍ୟ ଏକ କାହାଣୀ । ଡାକ୍ତରଙ୍କ ଗାଡ଼ିକୁ ଗୋଟାଏ ମରୁଭୂମିରେ ନିଆଁ ଲଗେଇ ଲୁଚି ଲୁଚି ଆଗେଇଗଲା ବେଳେ ସେଇକଥା ଭାବୁଥିଲା ସେ । ପୁଣି ଥରେ ସାହନୱାଜ୍ ଜୋର୍ଡ଼ାନ୍ ମାଟିରେ ବଞ୍ଚିବ । ପୃଥିବୀର ରକ୍ତାକ୍ତ ଜରାୟୁରୁ ଝେଜଧରିବ ତା' ବନ୍ଧୁକର ନଳୀ । ଆଉ ତା' ଉପରୁ ଦେଖାଯିବ ପାଲେଷ୍ଟାଇନ୍‌ର ରେଶ୍ମାମାନେ ହାତରେ ଅଲିଭପତ୍ର ଧରି କହୁଛନ୍ତି, "ମୋ କଦମ୍, ଜଲଦି ଆସିବ । ଆଖିର ପଲକ ପଡ଼ି ପୁଣି ଥରେ ଖୋଲିବା ଭିତରେ ଯେତିକି ସମୟ, ସେତିକରେ ଫେରିଆସିବ ।"

□ □ □

# କ୍ରମଶଃ ଅସ୍ତରାଗ

ପୃଥିବୀ ସୃଷ୍ଟି ବେଳର କଥା । ବ୍ରହ୍ମା ସମସ୍ତ ଜୀବଜନ୍ତୁଙ୍କୁ ପଚିଶବର୍ଷ ଲେଖାଏଁ ଆୟୁଷ ଦେଲେ । ମଣିଷ ଆସି ପହଞ୍ଚିଲା ସବୁଠାରୁ ଶେଷରେ । ସୃଷ୍ଟିକର୍ତ୍ତାଙ୍କ ପାଖରେ ଯେତେବେଳେ ଅବଶିଷ୍ଟ ଥାଏ ମାତ୍ର ପଚିଶ ବର୍ଷ । ମଣିଷ ଅସନ୍ତୁଷ୍ଟ ହେଲା । କିନ୍ତୁ ବ୍ରହ୍ମାଙ୍କର କିଛି କରିବାର ନଥିଲା । ସେ କହିଲେ, "ମୁଁ ନାଚାର । ତୁମେ ଯାଇ ବରଂ ଅନ୍ୟମାନଙ୍କୁ ପଚାର । ହୁଏତ ସେମାନେ ତୁମକୁ କିଛି କିଛି ବର୍ଷ ଦେଇଦେବା ପାଇଁ ରାଜି ହୋଇପାରନ୍ତି ।" ମଣିଷ ଯାଇ ପ୍ରଥମେ ଭେଟିଲା ଘୋଡ଼ାକୁ । ତାକୁ କହିଲା, "ଦେଖ ଭାଇ, ବ୍ରହ୍ମା ମତେ ଛୋଟିଆ ଜୀବନଟିଏ ଦେଇଛନ୍ତି । ତୁମ ଜୀବନର କିଛି ବର୍ଷ ତୁମେ ମତେ ଦାନ କରିଦେବ କି ?" ଘୋଡ଼ା ରାଜି ହୋଇଗଲା, "ଠିକ୍ ଅଛି, ମୋର ପଚିଶ ବର୍ଷ ତୁମେ ନିଅ ।" ଲୋଭୀ ମଣିଷ—ସେଥିକରେ କି ସନ୍ତୁଷ୍ଟ ହୁଏ ? ପୁଣି ଗଲା କୁକୁର ଓ ମାଙ୍କଡ଼ ପାଖକୁ । ସେମାନେ ମଧ୍ୟ ତାଙ୍କ ଜୀବନରୁ ପଚିଶ ପଚିଶ ବର୍ଷ ମଣିଷକୁ ଦେଇଦେଲେ । ମଣିଷ ଯେତେବେଳେ ବ୍ରହ୍ମାଙ୍କ ପାଖରେ ଯାଇ ସବୁ ଜଣାଇଲା, ସୃଷ୍ଟିକର୍ତ୍ତା ସାମାନ୍ୟ ହସି କହିଲେ, "ଭଲହେଲା—ତୁମେ ଯାହା ଚାହୁଁଥିଲ ତା' ପାଇଲ । କିନ୍ତୁ ଗୋଟାଏ କଥା ମନେରଖ—ଜୀବନର ପ୍ରଥମ ପଚିଶ ବର୍ଷ ତୁମେ ମଣିଷ ଭଳି ବଞ୍ଚିବ । ତା'ପର ପଚିଶ ବର୍ଷ ଘୋଡ଼ା ଭଳି ଖଟିବ । ତା'ପର ପଚିଶ ବର୍ଷ ତୁମର କୁକୁର ଭଳି ଭୁକ ଭୁକ କଟିବ ଆଉ ଶେଷ ପଚିଶ ବର୍ଷ କାଳ ଅନ୍ୟମାନେ ତୁମକୁ ଦେଖି ହସିବେ, ଥଟ୍ଟାକରିବେ, ଠିକ୍ ଯେମିତି ସମସ୍ତେ ମାଙ୍କଡ଼ଙ୍କୁ କରନ୍ତି ।"

ଗପଟି କହିସାରି ଅନ୍ୟମାନଙ୍କ ମୁହଁ ଉପରେ ଥରେ ଆଖି ବୁଲେଇନେଲେ ଅନିରୁଦ୍ଧ । ସୁରେଶଟିଯାକ ମୁହଁରେ କୌଣସି ପରିବର୍ତ୍ତନ ନାହିଁ । ହୁଏତ ସେମାନେ ଗପଟିକୁ କେବଳ ଗପ ହିସାବରେ ହିଁ ଦେଖିଛନ୍ତି ବା ସତକଥାଟି ବୁଝି ମଧ୍ୟ ନବୁଝିବାର ଛଳନା କରୁଛନ୍ତି । ଅନିରୁଦ୍ଧଙ୍କ ଗୋରା ମୁହଁ ଲାଲ୍ ପଡ଼ିଗଲା । ଆଖି ଦୁଇଟି ଛୋଟ ଛୋଟ କରି ଭ୍ରୂକୁଞ୍ଚନ କଲେ ସେ । ପୁଣି ବଢ଼ିଗଲା ନିଃଶ୍ୱାସର ଗତି । ରାଗିଗଲେ ତାଙ୍କର ଏମିତି ହୁଏ ।

"ବୁଝିପାରିଲ ନାହିଁ ? ଆଉରି ଖୋଲି କହିବାକୁ ହେବ ନା ବୁଝିକରି ମଧ୍ୟ ଅବୁଝା ରହିଗଲ ? ଏଁ ?" ଫଁ ଫଁ ନିଃଶ୍ୱାସ ନେଇ ଏଥର ଚିତ୍କାର କଲେ ସେ, "ମୁଁ ମାଙ୍କଡ଼ । ତୁମେମାନେ ଗୋଟାଏ ଗୋଟାଏ ମାଙ୍କଡ଼ । ଆମେ ସମସ୍ତେ ମାଙ୍କଡ଼ । ଆଶା କରୁଛି, ଏଥର ବୁଝିଛ ।"

ଆଉ ନ ବୁଝିବାଭଳି କିଛି ନଥିଲା । ତଥାପି ସଦାନନ୍ଦ ତାଙ୍କୁ ଶାନ୍ତ କରାଇଦେଲେ, "ଆହା ହା, ଛାଡ଼ ଅନିରୁଦ୍ଧ । ସାମାନ୍ୟ ଗପଟିକୁ ନେଇ ଏତେ ଉତ୍ତେଜିତ ହେଲେ ଚଳିବ ? ବୟସ କଥା ଟିକିଏ ଭାବ । ତୁମର ହାର୍ଟ ଟ୍ରବଲ୍ ପୁଣି ବାହାରିପଡ଼ିବ ।"

"ହେ, ମତେ ଭୁଲେଇବାର ଚେଷ୍ଟା କରୁଛ ?" ସିଗାରେଟ୍ ପିଉ ପିଉ ତାଙ୍କୁ ଗାରଡ଼େଇ ଚାହିଁଲେ ଅନିରୁଦ୍ଧ, "ମୁଁ ଯାହା କହିଲି ସତ ନା ନୁହଁ ? ଘରୁ ଆରମ୍ଭ କରି ଦୋକାନ ପର୍ଯ୍ୟନ୍ତ ଯୁଆଡ଼େ ତୁମେ ଯାଅ, ଲୋକେ ଟାହିଟାପରା କରନ୍ତି ନା ନାହିଁ ? ହଁ, ମୋ କଥା ଭିନ୍ନ । ମୁଁ ତ ଆଉ ତୁମମାନଙ୍କ ଭଳି ଘରୁଆ ନୁହଁ । ମତେ ଯିଏ ଥଟ୍ଟା କରିବ, ସେ ବାହାର ଲୋକ । ତାଙ୍କ କଥାକୁ ପରବାଏ କରେ କିଏ ? କିନ୍ତୁ ତୁମକୁ···? ତୁମେମାନେ ଘର ଭିତରେ ଗୋଟାଏ ଗୋଟାଏ ମାଙ୍କଡ଼ । ତୁମକୁ ଦେଖି ହସନ୍ତି ତୁମରି ପୁଅବୋହୂ, ଝିଅ, ଜୋଇଁ, ପୁଣି ନାତିନାତୁଣୀମାନେ । କ'ଣ ମୁଁ କିଛି ଭୁଲ୍ କହିଲି କେଦାରଭାଇ ?"

କେଦାରନାଥଙ୍କ ମୁହଁ ବିବର୍ଣ୍ଣ ହୋଇଗଲା । ସମସ୍ତଙ୍କ ଭିତରୁ ତାଙ୍କରି ଜୀବନରେ ଦୁଃଖର ମାତ୍ରା ଯେମିତି ଖୁବ୍ ବେଶି । ସ୍ତ୍ରୀ ଗଲେଣି ଅନ୍ୟପୁରକୁ ବାରବର୍ଷ ହେଲା । ବୋହୂମାନଙ୍କ ସଂସାରରେ ତ ସେ କେବେଠାରୁ ଅଲୋଡ଼ା ହେଲେଣି । ଏଇଟା ଯେ ତାଙ୍କର ନିଜ ଘର ! ସୁବିଧାକୁ ସମସ୍ତେ ଭୁଲିଯାଆନ୍ତି କେମିତି ? ନାତି ତିନିଜଣ ସବୁବେଳେ ତାଙ୍କରି ସାଙ୍ଗରେ ଲାଗିଥାଆନ୍ତି । କିଏ ତାଙ୍କୁ ଖତେଇ ହୁଏ ତ କିଏ ତାଙ୍କର ଚଷମା ଛଡ଼େଇ ନେଇ ଖୁଲିଯାଏ । ସବୁଠାରୁ ବେଶି ଖରାପ ଲାଗେ କେହି ବି ସେମାନଙ୍କୁ ପଦେ ଆକଟି କଥା କହନ୍ତି ନାହିଁ । ବୋହୂମାନେ ତ ପରଘରର ଝିଅ । ନିଜ ପୁଅମାନେ ଯେଉଁଠି ଏତେ ଦୂରେଇ ରହନ୍ତି, ବୋହୂମାନଙ୍କୁ ବା ସେ କି ଦୋଷ ଦେବେ ? ଖାଲି ଦୀର୍ଘନିଃଶ୍ୱାସ ନେଲେ ସେ, କିଛି କହିଲେ ନାହିଁ । ଏତେ ବର୍ଷ ପରେ କହିବାକୁ ଆଉ କ'ଣ ବାକି ଅଛି ଯେ ?

କିନ୍ତୁ ଅନିରୁଦ୍ଧଙ୍କ କଥା ସରିନଥିଲା । ଖୁବ୍ ଭାବପ୍ରବଣ ହୋଇ ସେ କହିଲେ, "ମୋର ଯଦି ଥରେ ବ୍ରହ୍ମାଙ୍କ ସାଙ୍ଗରେ ଦେଖାହୁଅନ୍ତା, ତେବେ ମୁଁ ସଂସାରର ଲୋକମାନଙ୍କ ତରଫରୁ କ୍ଷମା ମାଗିନେଇ କହନ୍ତି—"ହେ ପ୍ରଭୁ, ଆମ ପୂର୍ବପୁରୁଷଙ୍କ ଲୋଭ ପାଇଁ ଅନ୍ତତଃ ଆମକୁ ଶାସ୍ତି ଦିଅ ନାହିଁ । ଅନ୍ୟଠାରୁ ବୟସ ଉଧାର ନେଇ ଆମେ ଅଉ ବଞ୍ଚିବାକୁ ଚାହୁଁନା । ଆମକୁ ମଣିଷ ହୋଇ ରହିବାକୁ ଦିଅ ।"

କିଛି ସମୟ ଚୁପ୍ ରହି ସେ ପୁଣି କହିଲେ, "ନା' ସତରେ ଠାକୁର ଦେଖାଦେବେ ନା ମୁଁ ଏକଥା ତାଙ୍କୁ କହିବି ? ବର୍ତ୍ତମାନର ଏଇ ମୂଲ୍ୟହୀନ, ସମ୍ମାନହୀନ ଜୀବନର ଅନ୍ତ କାହିଁ ? ସେଇ ମୃତ୍ୟୁ ! ଏକମାତ୍ର ମରଣ ହିଁ ସବୁ ଯନ୍ତ୍ରଣାର ପୂର୍ଣ୍ଣଚ୍ଛେଦ ପକେଇବ ।"

ଅନିରୁଦ୍ଧ ନିଜ ଭିତରେ ଏତେ ପଶିନଯାଇଥିଲେ ହୁଏତ ଲକ୍ଷ୍ୟ କରିପାରିଥାଆନ୍ତେ, ମୃତ୍ୟୁ କଥା ଶୁଣି ଅନ୍ୟମାନଙ୍କର ବୟସ ଯେମିତି ଦଶ ବାର ବର୍ଷ ବଢ଼ିଯାଇଛି ।

"ଛାଡ଼ ଅନିରୁଦ୍ଧ, ଛାଡ଼ । ଯାହା ଅବଶ୍ୟମ୍ଭାବୀ, ତା' ତ ହେବ । ଜୀବନର ଅବସାନ ଘଟିବ ଦିନେ ନା ଦିନେ । ଏବେଠାରୁ ଏତେ ଆଲୋଚନା, ତର୍କ-ବିତର୍କ କାହିଁକି ? କାହିଁକି

ଅଯଥା ଚିନ୍ତା ମୁଣ୍ଡରେ ପୂରଉଛ ?" ଲଳିତନାରାୟଣ ନିଜକୁ ବୁଝେଇବା ପରି ଖୁବ୍ ଆସ୍ତେ ଆସ୍ତେ କଥାଟା କହିଲେ ।

ଧଡ଼ କରି ମୁହଁ ଉଠେଇ ଅନିରୁଦ୍ଧ ତାଙ୍କ ଆଡ଼କୁ ଚାହିଁଲେ । ସବୁ ମାଂସପେଶୀ ଯେମିତି କଠିନ ହୋଇଗଲା । ଚ୍ୟାଲେଞ୍ଜ କଲାଭଳି ସେ ଲଳିତନାରାୟଣଙ୍କୁ ପଚାରିଲେ, "କାହିଁକି ନୁହେଁ ? ତମେ ଡରୁଛ ଲଳିତଭାଇ ?"

"ଏ ନା ନା, ମାନେ, ସେମିତି କିଛି ନୁହେଁ । ମାନେ, ଏଥିରେ ଡରିବାର କ'ଣ ଅଛି ?" ଲଳିତନାରାୟଣ ଅପ୍ରତିଭ ହୋଇପଡ଼ିଲେ ।

"ତୁମମାନଙ୍କୁ ଦେଖିଲେ ମୋର ଦୟା ହେଉଛି", ଅନିରୁଦ୍ଧଙ୍କ ସ୍ୱରରେ ଶ୍ଳେଷ ଥିଲା । ତୁମେ କେବେ ବେକମୋଡ଼ା ହେବାଲାଗି ରଖାଯାଇଥିବା କୁକୁଡ଼ାଙ୍କୁ ଦେଖିଛ ? ସେମାନେ ଏକାଠି ରହନ୍ତି । ଖାଦ୍ୟ ପାଇଁ ନିଜ ନିଜ ଭିତରେ ଝଗଡ଼ା କରନ୍ତି । ସବୁଠାରୁ ମଜାର କଥା, ସେମାନଙ୍କ ଭିତରୁ ଜଣେ ଦୁଇଜଣ ମରି ହେବା ପାଇଁ ଚାଲିଗଲେ ମଧ୍ୟ ଅନ୍ୟମାନେ ଚିଁ ଚିଁ ହୋଇ ସେମିତି କଳିକଜିଆ କରୁଥାଆନ୍ତି । ଆସନ୍ନ ମୃତ୍ୟୁ କଥା ଚିନ୍ତା କରିବାକୁ ଭୟ ପାଆନ୍ତି ସତେ ! ...ନିର୍ଲଜ୍ଜ ।"

ଏ ଆକ୍ଷେପଟି କୁକୁଡ଼ାମାନଙ୍କ ପ୍ରତି ଥିଲା ନା ବନ୍ଧୁମାନଙ୍କ ପ୍ରତି ଠିକ୍ ଜାଣି ହେଲା ନାହିଁ । ଅବଶ୍ୟ ସେତେବେଳକୁ ଜାଣିବା ଭଳି ମାନସିକ ସ୍ଥିତି କାହାର ଥିଲା ସେ ?

ସେଦିନ ଆଉର ଉଠିବାର ସମୟ ହୋଇନଥିଲେ ମଧ୍ୟ ଖୁବ୍ କ୍ଷୀଣ କାରଣ ସବୁ ଦେଇ ସେମାନେ ଘରଆଡ଼େ ମୁହାଁଇଲେ ।

ମେନ୍ ରୋଡ଼୍‌ରେ ମହିଳା କଲେଜରୁ ହସ୍‌ପିଟାଲ ଆଡ଼େ ଗଲାବେଳେ ବାଁପଟେ ଛୋଟ ଶିବମନ୍ଦିରଟିଏ ପଡ଼େ । ଶିବମନ୍ଦିର ପଛପଟେ ଯେଉଁ ଅଣଓସାରିଆ ରାସ୍ତା ସେଥିରେ ପ୍ରାୟ ଦୁଇ ଫର୍ଲଂ ଗଲେ ସେମାନଙ୍କର ପଡ଼ା ଆରମ୍ଭ ହୁଏ । ସହରର ଗହଳଚହଳଠାରୁ ଦୂର । ଏଠି ଟ୍ରାଫିକର ଭିଡ଼ ନାହିଁ । ମୁଣ୍ଡ ଉପରେ ଆକାଶରେ ବି ଧୂଆଁ ଓ ଧୂଳିର ଗୋଟାଏ ଆସ୍ତରଣ ଜମେ ନାହିଁ । ଟିକିଏ ନିଃଶ୍ୱାସ ନେଲେ ପ୍ରକୃତିର ସତେଜତା ଉପଭୋଗ କରିହୁଏ ।

ସମସ୍ତଙ୍କର ଘର ଯେ ଖୁବ୍ ପାଖାପାଖି ତା' ନୁହେଁ; କିନ୍ତୁ ଯେବେଠାରୁ ଆଳାପ ପରିଚୟ ହୋଇ ମନ ମିଳିଯାଇଛି, ଏକାଠି ହେବାକୁ ତ ପଡ଼ିବ ! ସେଇଥିପାଇଁ ସେମାନେ ଜାଗାଟିଏ ମଧ୍ୟ ଖୋଜିନେଇଛନ୍ତି । ଦୁଇଟା ଗଳି ଟପିବା ପରେ, ତୃତୀୟ ଗଳିର ଆରମ୍ଭରେ ପିଲାଙ୍କର ଖେଳିବା ପାଇଁ ଛୋଟ ପାର୍କଟିଏ ଅଛି । ପାର୍କର ଭିତର ପାଟେରି କଡ଼େ କଡ଼େ ପଡ଼ିଛି ପାଞ୍ଚ-ଛଅଟି କାଠ ବେଞ୍ଚ । ଯେଉଁ ଲମ୍ବା ବେଞ୍ଚଟି ଝଙ୍କାଳିଆ କୃଷ୍ଣଚୂଡ଼ା ଗଛ ମୂଳେ, ସେଇଠି ବସନ୍ତି ସେମାନେ । ପୂର୍ବ ଆକାଶ ନାଲି କରି ସୂର୍ଯ୍ୟ ଉଠିବାର ବେଶ୍ ଆଗରୁ ସେମାନେ ଏକାଠି ହୋଇଯାଇଥାଆନ୍ତି ।

ସେମାନେ ? ସେମାନେ ପାଞ୍ଚଜଣ । ପାଞ୍ଚବନ୍ଧୁ—ବନବିହାରୀ, କେଦାରନାଥ, ସଦାନନ୍ଦ, ଲଳିତନାରାୟଣ ଓ ଅନିରୁଦ୍ଧ । ସେମାନଙ୍କର ଏଇ କ୍ଲବ୍‌ର ସେମିତି କିଛି ନାଆଁ ନାହିଁ । କିନ୍ତୁ

ସେଠିକା ବାସିନ୍ଦା ହସାହସି ହୋଇ କହନ୍ତି 'ଅଣୀଆ ଦଳ' । ଅନିରୁଦ୍ଧଙ୍କୁ ଛାଡ଼ିଦେଲେ ଦଳେ ଅଣୀ ଡେଇଁ ସାରିଲେଣି । ଏକା ଅନିରୁଦ୍ଧଙ୍କ ବୟସ ଛଅସ୍ତରି । କିନ୍ତୁ ତାଙ୍କ ଭିତରେ ନେତୃତ୍ୱ ନେବା ଭଳି କେତୋଟି ଗୁଣ ରହିଛି, ଯାହା କେହି ସହଜରେ ଅସ୍ୱୀକାର କରିପାରନ୍ତି ନାହିଁ । ସେଇଥିପାଇଁ ସେ କେବଳ ମେମ୍ବର ନୁହଁନ୍ତି, ଅନ୍ୟମାନଙ୍କର ନୀରବ ସମର୍ଥନରେ କ୍ଲବର ପ୍ରେସିଡେଣ୍ଟ୍ ।

ଆସରଟି ଜମେ ପ୍ରାୟ ସବୁଦିନ ଦୁଇଘଣ୍ଟା ଧରି । କେବଳ ଯେଉଁଦିନ ବର୍ଷା ହୁଏ ସେଦିନଗୁଡ଼ିକୁ ବାଦ୍ ଦେବାକୁ ହୁଏ । ନିଜନିଜର ଘରେ ବସି ଭୀଷଣ ଅସ୍ୱସ୍ତି ଅନୁଭବ କରନ୍ତି ସେମାନେ । ଆଉ ଯଦି କେବେ କେହି ଅସୁସ୍ଥ ହୋଇଯାଏ ( ଯଦିଓ ଅସୁସ୍ଥତାର ମାତ୍ରା ଖୁବ୍ କମ୍, ତଥାପି ଦେହ କଥା ତ ) ତେବେ ତାଙ୍କ ଘରେ ଆଡ୍ଡା ଜମେ । ଗପ ସାଙ୍ଗକୁ ପହଞ୍ଚିଯାଏ ଗରମ ଗରମ ଚା' ଓ ବିସ୍କୁଟ୍ ।

ସବୁ ଦେଖିଲେ ଦୁଇ ଘଣ୍ଟା ସମୟ ଅନେକ ବେଶୀ । କିନ୍ତୁ ଏମାନଙ୍କର ମନେପକାଇବାକୁ ଏତେ ଘଟଣା ଥାଏ ଯେ ସମୟ ଅଣ୍ଟେ ନାହିଁ । ପାଖ ନିମ୍ନ ପ୍ରାଥମିକ ସ୍କୁଲର ପ୍ରାର୍ଥନା ଘଣ୍ଟି ଶୁଣିଲେ ସେମାନେ ବେଞ୍ଚରୁ ଉଠି ନିଜ ନିଜ ଘର ଆଡ଼େ ମୁହାଁନ୍ତି ପୁଣି ପରଦିନ ଗପ ଲମ୍ବାଇବାର ଅବୁଝା ପ୍ରତିଶ୍ରୁତି ଦେଇ ।

ସେମାନଙ୍କର କଥାବାର୍ତ୍ତା ନ ଶୁଣିଲେ ହୁଏତ ଜଣେ ବିଶ୍ୱାସ କରିପାରିବ ନାହିଁ ଯେ ସେମାନେ ଏତେ ପ୍ରଗଲ୍‌ଭ । ଏ ବୟସରେ ଗପିବା ଭଳି ଏତେ କଥା କ'ଣ ଅଛି ?

କାହିଁ, ପରିବାର ?

ସନ୍ତାନସନ୍ତତି ବା ପରିବାରର ଅନ୍ୟ ସଦସ୍ୟଙ୍କ ସମ୍ବନ୍ଧରେ ଆଲୋଚନା କରିବା ଆରମ୍ଭ କଲେ ସମୟ ଯେ କେମିତି କଟିଯାଏ କେହି ବୁଝିପାରନ୍ତି ନାହିଁ । ଅନିରୁଦ୍ଧଙ୍କୁ ଛାଡ଼ିଦେଲେ ଅନ୍ୟମାନଙ୍କର ଏ ବିଷୟରେ ଖୁବ୍ ଆଗ୍ରହ । ତାଙ୍କର ବୀତସ୍ପୃହ ହେବାର କାରଣ ସମସ୍ତେ ଜାଣନ୍ତି । ତାଙ୍କ ସିନିକ୍ କମେଣ୍ଟ ଶୁଣି ଦସ୍ୟୁରେ ମୁଣ୍ଡ ହଲାନ୍ତି, ବିରକ୍ତ ହୁଅନ୍ତି ନାହିଁ । ସେ ଆଜନ୍ମ ବ୍ରହ୍ମଚାରୀ, ସେ ବା କ'ଣ ଜାଣିବ ପରିବାରର ମହତ୍ତ୍ୱ ? ଭାଇଭଉଣୀ ମଧ୍ୟ ନାହାନ୍ତି । ସେ ଏକା, ଖୁବ୍ ଏକା । କିନ୍ତୁ ଅନିରୁଦ୍ଧ କଷ୍ଟ ପାଆନ୍ତି ନାହିଁ । ସେ ପସନ୍ଦ କରନ୍ତି ନିଜ ଭିତରେ ନିଜେ ବନ୍ଦୀରହିବାକୁ । ଅନ୍ୟ ବନ୍ଧୁମାନଙ୍କର ମୂଲ୍ୟହୀନ ପାରିବାରିକ ଆଲୋଚନାରେ ସେ ବୋର୍ ହୁଅନ୍ତି, ସେଇଥିପାଇଁ ଦବେଇ ଦେବାକୁ ସବଦା ଚେଷ୍ଟାକରନ୍ତି ।

ବନବିହାରୀ ଓ କେଦାରନାଥ ଉଭୟେ ବିପତ୍ନୀକ । ସଦାନନ୍ଦଙ୍କ ସ୍ତ୍ରୀ ପକ୍ଷାଘାତ ରୋଗରେ ବାରବର୍ଷ ହେଲଣି ପଡ଼ିଛନ୍ତି । ଆଉ ଲଳିତନାରାୟଣଙ୍କ ପତ୍ନୀ ବଡ଼ପୁଅ ପାଖରେ ବମ୍ବେରେ ଅଛନ୍ତି ଦେଇବର୍ଷ ହେଲ । ସେମାନଙ୍କର ଆଲୋଚନା କେନ୍ଦ୍ରୀଭୂତ ହୁଏ ପିଲମାନଙ୍କ ଉପରେ । ସବୁଠାରୁ ବେଶୀ ଆଗ୍ରହ ବନବିହାରୀଙ୍କର । ଚାରିପୁଅ, ଚାରିଟିଅର ବଡ଼ ସଂସାର ତାଙ୍କର । ସବୁ ପୁଅ ପୁଣି ବଡ଼ ଚାକିରି କରିଛନ୍ତି । ଝିଅ ଚାରିହେଁ ଭଲ ଘରେ ବାହା ହୋଇଛନ୍ତି ।

ସେମାନଙ୍କୁ ନେଇ ଗଳ୍ପ କରିବା ଭଳି ବସ୍ତୁ ଉପାଦାନ ଅଛି । ସେ ହିଁ ଅଧିକାଂଶ ଦିନ କଥା ଆରମ୍ଭ କରନ୍ତି ।

"ସାନ ମହିଆଁ ପୁଅ ଷ୍ଟୋକଓ୍ୱରୁ ଆସୁଛି ଆସନ୍ତା ମାସ । ମୁଁ ଲେଖିଥିଲି ବୋହୂ ଓ ନାତିକୁ ନେଇ ଆସିବାକୁ । କିନ୍ତୁ କାମରେ ଆସୁଛି ତ, ସମ୍ଭବ ହେବନାହିଁ ବୋଧହୁଏ ।" ନିଷ୍ପୃହ ସ୍ୱରରେ ସେ କହନ୍ତି । ପୁଅ ଫରେନ୍ ସର୍ଭିସରେ । କେତେଟା ପୁଅ ଏମିତି ଅଛନ୍ତି ।

"ପୁଅର ଶ୍ୱଶୁର ଘରଟା କୋଉଠି ବନ ସାଇନା ?" ଉତ୍ତର ଜାଣି ମଧ୍ୟ ନିହାତି ସରଳ ସ୍ୱରରେ ଏଇ ପ୍ରଶ୍ନ ପଚାରନ୍ତି ଅନିରୁଦ୍ଧ ।

ବେଲୁନ୍ ଭଳି ଫୁଲିଯାଇଥିବା ହୃଦସ୍ପୃହରେ କିଏ ଯେମିତି ପିନ୍ କଣ୍ଟାଟିଏ ଗେଞ୍ଜି ଦିଏ । କିଛି ସମୟ ଚୁପ୍ ରହିଯାଇ ଡଉଲେଇ ଡଉଲେଇ ବନବିହାରୀ କହନ୍ତି, "ଆଗରୁ ତ କହିଛି ସେ କଥା···ଜାପାନିଜ୍ ଝିଅଟିଏ ବାହା ହୋଇଛି ସେ ।" ପୁଣି ନିଜକୁ ବୁଝାଇବା ପରି କହନ୍ତି, "ହେଲେ ବୋହୂ··ଦେଖିବାକୁ କଣ୍ଢେଇଟିଏ ପରି । ଗ୍ରେଟ ଝିଅଟାଏ ମ ! କି ଭଦ୍ର, ଶାନ୍ତ, ଆମର ସ୍ୱାତ୍ତିକା ଝିଅ ତା' କାଣୀ ଆଙ୍ଗୁଠିକୁ ସରି ହେବେ ନା ?"

"ହଁ, ଗାଁ-କନିଆ ସିଦ୍ଧାଣୀନାଙ୍କୀ !" ଛାଡ଼ନ୍ତି ନାହିଁ ଅନିରୁଦ୍ଧ । କଥା ଫେରାନ୍ତି, "ତମେ ବୋହୂଙ୍କୁ ଦେଖିଛ କି ? ସେ'ତ ଏଠିକୁ କେବେ ଆସିବାପରି ମୋର ମନେହେଉନାହିଁ ।"

"ହେଃ—ସ୍ୱା'ଙ୍କ କଥା ଶୁଣ ! ତାଙ୍କ ବାହାଘର ଇ ତ ଏଇଠି ହୋଇଥିଲା···"

"ସେ ପନ୍ଦର ବର୍ଷ ତଳର କଥା—ନୁହେଁ କି ?"

ପରିବେଶ ଉଷ୍ମ ହୋଇଉଠେ । ସ୍ୱରପଟେ ଅସହ୍ୟ ଏକ ଅସ୍ୱସ୍ତି ଭାବ । କଥା ଭୁଲେଇବାର ଚେଷ୍ଟା କରନ୍ତି କେହି ଜଣେ ।

"ଯାହା କୁହନ୍ତୁ, ସିଭିଲ ସର୍ଭିସ୍‌ର ଷ୍ଟାଣ୍ଡାର୍ଡ ଖରାପ ହୋଇଗଲାଣି । ଆଜିକାଲି ଏତେଟା ମେଡିଓକ୍ରିଟି·· "

ଆଶ୍ରା ପାଇଗଲା ଭଳି ବନବିହାରୀ ମାତି ବସନ୍ତି, "ଠିକ୍ ଠିକ୍ । ପିଲାଙ୍କ ଭିତରେ ସେ ଧୈର୍ଯ୍ୟ କାହିଁ, ଆଗ୍ରହ କାହିଁ, ତପସ୍ୟା କାହିଁ ? 'ସବୁ ସହଜରେ ହୋଇଯାଉ'—ଏଇ ଆଟିଚ୍ୟୁଡ ନେଲେ କ'ଣ ଆଉ ହେବ ? ଆମେ କଲେଜରେ ପଢ଼ିବାବେଳେ ଇଂରାଜୀରେ ଜଣେ ପ୍ରଫେସର ଥିଲେ ଶ୍ରୀଯୁକ୍ତ ଅବନୀନ୍ଦ୍ର ମୁଖୋପାଧ୍ୟାୟ । ସେ କହୁଥିଲେ···"

ଆଲୋଚନା ସହଜ ହୋଇଉଠେ । ସରଗରମ ହୋଇଯାଏ ଆସର । କିଛି ସମୟ ପରେ ପାଖ ସ୍କୁଲରୁ ବେଲ୍ ବାଜିଉଠେ ସମସ୍ତଙ୍କୁ ସଚେତନ କରେଇଦେବା ଭଳି ।

ସେମାନଙ୍କର ଗପ ବେଳେବେଳେ ଟ୍ରାଜେଡି ଉପରକୁ ଆସେ । ଜୀବନର ଟ୍ରାଜେଡି । ଅଥଚ ଆପଣାର ସେ ଦୁଃଖ । ବନ୍ଧୁମାନଙ୍କୁ କହିହୁଏ ନାହିଁ ବା ନକହି ମଧ୍ୟ ନିଜ ଭିତରେ ଲୁଚେଇ ରଖି ହୁଏ ନାହିଁ । ରସିକତା ମିଶେଇ ଯଥାସମ୍ଭବ ହାଲୁକାକରି ଅନ୍ୟମାନଙ୍କୁ କହିବାକୁ ପଡ଼େ । ଏଇ ସେଦିନ ଯେମିତି କେଦାରନାଥ କହିଲେ, "ବୁଢ଼ା ହେଲେ ବୋଧହୁଏ ମଣିଷର ମତିଭ୍ରମ ହୁଏ । ପୁଅ ବୋହୂ ଯେତେ ଖବର ବୁଝିଲେ ବି ମନ ସନ୍ତୁଷ୍ଟ ହୁଏନାହିଁ ।

…ବଡ଼ବୋହୂ ମୋର ସ୍ୱାସ୍ଥ୍ୟ ଭଲ ରଖେଇବା ପାଇଁ ଏତେ ତତ୍ପର, କିନ୍ତୁ ମୁଁ ବେଳେବେଳେ ଅସନ୍ତୁଷ୍ଟ ହୁଏ । ପରେ ଦୋଷୀ ଦୋଷୀ ଲାଗେ । ଡାକ୍ତର ଡାଏବେଟିସ୍ ସନ୍ଦେହ କଲା ଦିନଠାରୁ ମୋର ମିଠାଖିଆ ବନ୍ଦ । ସ୍ୱ'ପୁଣି ବନା ଚିନରେ, ଏତେ ବର୍ଷର ଅଭ୍ୟାସ… ଭଣ୍ଡିରେ ଗଲେ ନାହିଁ । ହେଲେ ଡାକ୍ତରଙ୍କ ଡାଗିଦା…"

କେଦାରନାଥଙ୍କ ସ୍ପଷ୍ଟ ଉଦ୍‌ବେଗ ଶବ୍ଦର ଦେଖିଲେ, "ଡାକ୍ତରଙ୍କ ଡାଗିଦା" କଥା ଅଖାଡ଼ୁଆ ମନେହୁଏ ।

ଅନିରୁଦ୍ଧ ଶୁଣେଇଦିଅନ୍ତି, "ହଁ…ଇନ୍‌ଫ୍ଲେସନ୍ ଯୁଗରେ ଖର୍ଚ୍ଚ କାଟର ଏ ଏକ ଅଭିନବ ପନ୍ଥା ମଧ୍ୟ ହୋଇପାରେ ।"

କେଦାରନାଥ ଦବବା ଭଳି କହନ୍ତି, "ନା, ନା, ସେମିତି କିଛି ନୁହ । ବୋହୂ ଏତେ ଭଲ…" କିନ୍ତୁ ନିଜ କଥା କାନକୁ ଦୁର୍ବଳ ଶୁଣାଯାଏ । ଜୋର୍ ଦେଇ କିଛି କହି ହୁଏ ନାହିଁ ।

"ଖୁବ୍ ଭଲ, ଖୁବ ଭଲ—ମାନିବାକୁ ପଡ଼ିବ ।" ଅନିରୁଦ୍ଧ ହସୁଲନ୍ତି ।

ଏମିତି ଖୋଲା କଥା ଶୁଣିବାକୁ ଭିତରେ ବାଧେ । ଯାହା ହେଲେ ବି ଅପ୍ରିୟ ସତ ତ ! କ'ଣ ବା କରିବେ ଅନିରୁଦ୍ଧ ? ଏଇ ତ ତାଙ୍କର ସ୍ୱଭାବ । କଥା ଚାପି ରଖି ପାରନ୍ତି ନାହିଁ । ସବୁ କଥା କ'ଣ କହିବା ଉଚିତ ? ସେ ମୁହଁ କଥା ଯେମିତି ଆଲୋଚନା କରନ୍ତି, ଅନ୍ୟମାନେ ତାହା ପାରନ୍ତି ନାହିଁ । ତଥାପି ତାଙ୍କୁ ଦବେଇ ହୁଏ ନାହିଁ କି ତାଙ୍କ କଥାକୁ ବେଖାତିର କରି ହୁଏ ନାହିଁ । ପ୍ରେସିଡେଣ୍ଟଙ୍କ ସମ୍ମାନ ଦେବାଟା ତାଙ୍କ 'ଅଣୀଆ ସଭ୍ୟ'ର ଏକ ଅଲେଖା ଆଇନ୍ ପରି !

ରଜ ଓ ନନ୍ଦନ ଧର ପ୍ରଖର ବର୍ଷା । ଏ ଅଞ୍ଚଳରେ ପ୍ରାୟ ଏମିତି ବର୍ଷା ହୁଏନାହିଁ । ଏଥରକ କିନ୍ତୁ ଗୋଟାଏ ବ୍ୟତିକ୍ରମ । ସେଇ ଟିପ୍ ଟିପ୍ ହୋଇ ଲାଗିରହିଛି ଆରମ୍ଭ ଦିନରୁ । ମଝିରେ ହୁଏତ ଅଧଘଣ୍ଟାଏ-ଘଣ୍ଟାଏ ବନ୍ଦ ହୋଇଯାଉଛି । କିନ୍ତୁ ଆକାଶର କଳା କଳା ମେଘ କେବଳ ପାର୍କଟାକୁ ନୁହଁ, ମନକୁ ମଧ୍ୟ ଦବେଇ ଦେଉଛି । ପାଞ୍ଚ ବନ୍ଧୁଙ୍କ ଆସର ଜମିପାରୁନି, ଏକାଠି ହେବାର ସୁଯୋଗ ମଧ୍ୟ ହେଉନାହିଁ । ଗପିବା ପାଇଁ ଏଣେ କେତେ କଥା ଯେ ବାକି ରହିଗଲାଣି !

ପନ୍ଦର ତାରିଖ ଦିନ ଏଗାରଟା । ଅପ୍ରତ୍ୟାଶିତ ଭାବରେ ଖବର ମିଳିଲା । ଅନିରୁଦ୍ଧଙ୍କ ପୁରୁଣା ଚାକର ଦୀନା ବୁଲି ବୁଲି ସମସ୍ତଙ୍କ ଘରେ କହିଆସିଲା, "ଭେରୁ ଭେରୁ ବାବୁ ଚାଲିଗଲେ ଆଜ୍ଞା ! କିଛି ନାହିଁ—ଶୁଖିଲାଟାରେ । ଡାକ୍ତର ଆସି ଦେଖି କହିଲେ ହାର୍ଟ-ଫେଲ…" ଦୀନା କାନ୍ଦି ପକେଇଥିଲା ।

ଅନିରୁଦ୍ଧଙ୍କ ଘରେ ସହଜ ଦେଖିବା ଭଳି ଆଉ କିଛି ନଥିଲା । ସେଇ ସବୁଦିନିଆ ଚଷ୍ମା ସିନକ୍ ମୁହଁ ଉପରେ ଧଳା ଚାଦରଟି ଘୋଡ଼ାହୋଇଯାଇଥିଲା । ସିଗାରେଟ୍ ପିଇ ପିଇ କଳା ହୋଇଯାଇଥିବା ଓଠ ସମାଲୋଚନା କରୁନଥିଲା—ବରଂ ନୀରବ ହୋଇଯାଇଥିଲା ସବୁବେଳ

ପାର୍ଟି । ଅସହ୍ୟ···ଅସହ୍ୟ ଏ ପରିସ୍ଥିତି । ବେଶି ସମୟ ସେଠି ରହିହୋଇନଥିଲା । ଚୁଟ୍‌କିପଞ୍ଚ ଯେ ଯାହା ଘରକୁ ଚାଲିଯାଇଥିଲେ ଏକ ଅଜଣା କୋକୁଆ ଭୟକୁ ସଙ୍ଗକରି ।

ତା' ପରଦିନ ବର୍ଷା ନଥିଲା । ସୂର୍ଯ୍ୟ ଉଠିଥିଲେ ପୂର୍ବ ଦିଗରେ, କିନ୍ତୁ ତାଙ୍କର ତେଜ ମଳିନ । ପାର୍କର କୃଷ୍ଣଚୂଡ଼ା ଗଛମୂଳେ ପଡ଼ିଥିବା ବେଞ୍ଚରେ ଏକାଠି ହୋଇଥିଲେ ସେମାନେ । ପାଞ୍ଚଜଣ ନୁହନ୍ତି, ସେମାନେ ଚାରିଜଣ । କିନ୍ତୁ କ'ଣ କେଉଁଠି ହଜିଯାଇଥିଲା ଯେମିତି । ଜଣଙ୍କର ଅନୁପସ୍ଥିତିରେ ସବୁ ଯେମିତି ମୂଲ୍ୟହୀନ । ନିଜକଥା ଜାହିର୍ କରିବାକୁ ଆଜି କାହାର ଶକ୍ତି ନାହିଁ । ସମସ୍ତେ ଖାଲି ଚୁପ୍ ଚୁପ୍ ଚିନ୍ତା କରୁଛନ୍ତି । ଠିକ୍ ଏମିତି, ଏମିତି ଦିନେ ସମସ୍ତଙ୍କୁ ବେଞ୍ଚରେ ସେମାନଙ୍କର ବସିବା ଜାଗା ଶୂନ୍ୟ ହୋଇଯିବ । ଅନ୍ୟମାନେ ଦୁଃଖ କରିବେ । ଅଶ୍ରୁ ଝରାଇବେ । ପୁଣି ସ୍ୱାଭାବିକ ହୋଇଯିବ ସବୁ ।

ସ୍ୱାଭାବିକ ? ? ଜୀବନ ପୁଣି ସାଧାରଣ ହୋଇଯିବ ?

ଅନ୍ୟମାନଙ୍କ ମନରେ, ହୃଦୟରେ ସେମାନେ କେବଳ ସ୍ମୃତି ହୋଇ ରହିଯିବେ ?

ତେବେ ଆଜିର ଏ ନୀରବତା ? ଚମକିଉଠିଥିଲେ ସମସ୍ତେ । ଦୂରରେ କିଏ ହସିଲା ? ମନେହେଉଛି ଯେମିତି ଅନନ୍ତୁକ ସେମାନଙ୍କୁ ଦେଖି ବିଦ୍ରୂପ କଲାଭଳି ଅଟ୍ଟହାସ୍ୟ କରୁଛନ୍ତି ।

ଗଳାଖାଙ୍କି ଦିନବନ୍ଧୁବାବୁ ଆରମ୍ଭ କଲେ, "ଆଜିର ଷ୍ଟେଟ୍‌ସମ୍ୟାନ ଦେଖିଛ ? ଜାତିସଂଘରେ ଆଣବିକ ନିରସ୍ତ୍ରୀକରଣ ସମ୍ପର୍କରେ ଶର୍ମାଙ୍କ ବକ୍ତବ୍ୟ କଥା କହୁଛି ମ । ହ୍ୱାଇଟ୍ ହାଉସ୍ ଆଙ୍ଗୁଠି ଦେଖାଉଛି କ୍ରେମଲିନ୍‌କୁ ଆଉ କ୍ରେମଲିନ୍ ଦୋଷ ଦେଉଛି ହ୍ୱାଇଟ୍ ହାଉସ୍‌କୁ । ···ହେଃ, ସାଧାରଣ ଲୋକଙ୍କୁ ଖାଲି ଭୁଲାଇବାର ଚେଷ୍ଟା କରୁଛନ୍ତି ସବୁ !"

"ତା ନୁହଁ ତ ଆଉ କ'ଣ", ଯୋଡ଼ିଲେ ସଦାନନ୍ଦ ।

"ମୁଁ କିନ୍ତୁ ଏଥିରେ ରାଜି ହୋଇପାରୁନି"—ଗମ୍ଭୀର ହୋଇ ଲଳିତନାରାୟଣ ମୁଣ୍ଡ ହଲେଇଲେ, "ସବୁ ଦୋଷ ଖାଲି ସୁପର୍ ପାଓ୍ୱାର ଦୁଇଟିଙ୍କର—ଆମର···ମାନେ ଥାର୍ଡ଼ ଓ୍ୱାର୍ଲ୍ଡ଼ ଦେଶମାନଙ୍କର କ'ଣ କୌଣସି ଭୁଲ ନାହିଁ ?"

"କାହିଁ ଆକାଶ, କାହିଁ ପୃଥିବୀ ! ସୁପର୍ ପାଓ୍ୱାର ସାଙ୍ଗରେ ପୁଣି ଥାର୍ଡ଼ ଓ୍ୱାର୍ଲ୍ଡ଼ର ତୁଳନା !!"

"କିନ୍ତୁ···କିନ୍ତୁ···"

"ଦେଖନ୍ତୁ···"

ଖୁବ୍ ଅଳ୍ପ ସମୟ ମଧ୍ୟରେ ଆନ୍ତର୍ଜାତିକ ରାଜନୈତିକ ପରିସ୍ଥିତି ନେଇ ଚାରିବନ୍ଧୁଙ୍କ ଭିତରେ ଏକ ଘମାଘୋଟ ଯୁକ୍ତି ଲାଗିଯାଇଥିଲା ।



# ଗୋଟିଏ ଯନ୍ତ୍ରଣା ସପକ୍ଷରେ

ଖଟଉପରେ ଶୋଇ ସୁନନ୍ଦା ଲେଖୁଥିଲା । ଲେଖୁଥିଲା କହିଲେ ଭୁଲ ହେବ, ଲେଖିବାର ଚେଷ୍ଟା କରୁଥିଲା । ପେଟ ତଳେ ତକିଆ, ବାଁ ହାତ ଚିବୁକ ତଳେ, ଡାହାଣ ହାତରେ ପେନ୍‌ଟି ଅଧା ପାଟି ଭିତରେ । ଆଖି ଦୁଇଟି ଅସ୍ଥିର । ଏମିତି ଲେଖିହୁଏ ?

"ଧେତ୍ତେରି"—କଲମ ଫୋପାଡ଼ିଦେଇ ଖଟରେ ଗଡ଼ିଗଲା ସେ । ବହି ଉପରୁ ମୁଣ୍ଡ ଟେକିଲେ ପ୍ରଦୀପ । କଣ୍ଠରେ ସାମାନ୍ୟ ବିରକ୍ତି ନେଇ କହିଲେ, "ପୁଣି କ'ଣ ହେଲା ?"

"ହୁଁ ହୁଁ ମୁଡ୍ ଅସୁନି ।" ରେଗେଇ ହୋଇ କହିଲା ସୁନନ୍ଦା ।

ବହି ବନ୍ଦ କରି ଉଠିଲେ ପ୍ରଦୀପ, "ମୁଁ ବରଂ ଆର ରୁମ୍‌କୁ ଯାଉଛି । ଏକା ରହିଲେ ତୁମ ମୁଡ୍ ଆସିବ ଲେଖିବାକୁ ।"

ତାଙ୍କ ହାତ ଧରି ସୁନନ୍ଦା ଅଟକେଇ ଦେଲା । କହିଲା, "ନାହିଁ, ଯାଆନ ।"

"ଓଃ ସୁନନ୍ଦା !" ବାଧ୍ୟ ହୋଇ ବସିଲେ ପ୍ରଦୀପ । "କେତେ ମାସ ହେଲାଣି କହୁଛ, ଗୋଟାଏ କବିତା ଲେଖିପାରୁନ ?"

"କାଲି ନିଶ୍ଚୟ···ପ୍ରମିସ୍ ।"

ସ୍ତ୍ରୀକୁ ଆଦର କରୁ କରୁ ପ୍ରଦୀପ ବୁଝାଉଥିଲେ, "ଦେଖ ସୁନନ୍ଦା, ତୁମେ ଗୋଟିଏ ଈଶ୍ୱରଦତ୍ତ ଗୁଣ ପାଇଛ । ସବୁ ଏମିତି ଛାଡ଼ିଛୁଡ଼ି ଦେଇ ବସିଗଲେ ହୁଏ ? ମୋ ସ୍ତ୍ରୀ ଛଡ଼ା ତୁମର ଅନ୍ୟ ଏକ ପରିଚୟ ରହିବ—କବି ହିସାବରେ । ସେଇଟା ହିଁ ମୋ ଗୌରବ । ତୁମେ କେବେ ବୁଝିବ ?"

"ଓହୋ କହିଲି ତ କାଲି ଲେଖି ଦେଖେଇବି—ଏବେ ଉପଦେଶ ଦେବା ବନ୍ଦ କର । ପଢ଼ା ନକରି ସ୍କୁଲକୁ ଆସିବା ପରି ମନେ ଲାଗୁଛି । ତୁମେ କ'ଣ ମୋ ସଂସ୍କୃତ ପଣ୍ଡିତ ?"

ହସିଲେ ପ୍ରଦୀପ । ବହି ରଖି ଉଠିଯାଇ ଲାଇଟ୍ ବନ୍ଦ କଲେ ସେ ।

କେତେବେଳୁ ଶୋଇପଡ଼ିଲେଣି ପ୍ରଦୀପ । ସୁନନ୍ଦା ଆଖିରେ ନିଦନାହିଁ । ସବୁ ଆଜେବାଜେ ଚିନ୍ତା ଆସି ମୁଣ୍ଡ ଭିତରେ ଭିଡ଼ ଜମେଇଛନ୍ତି । କି ନିଦ୍ ପ୍ରଦୀପଙ୍କର ! ନା—ତାଙ୍କ ମନରେ କଷ୍ଟ ଦେବନି ସୁନନ୍ଦା—ସେ କବିତା ଲେଖିବ ।

ଏତେଦିନ ଯେଉଁ କବିତା ତା'ର ଜୀବନ ଥିଲା, ଥିଲା ତା' ବଞ୍ଚିବାର ଆଶା ବାଡ଼ି—ହଠାତ୍ ବର୍ଷକ ଭିତରେ କେମିତି ପରହୋଇଗଲା ? ଏତେ ବଡ଼ ପୃଥିବୀରେ ଏକା—ନିହାତି ଏକା

ଜୀବନରେ ସଂଗ୍ରାମ କରୁ କରୁ ଯେତେବେଳେ ସେ ଅବସାଦଗ୍ରସ୍ତ ହୋଇଯାଉଥିଲା, ସେତେବେଳେ କବିତାହିଁ ତାକୁ ବଞ୍ଚିବା ପାଇଁ ପ୍ରେରଣା ଦେଉଥିଲା । ନିଜର ସବୁ ଦୁଃଖ, ହତାଶାକୁ ନିଗିଡ଼ି ଲେଖୁଥିଲା ସୁନନ୍ଦା । କାହା ପାଖରେ ତ ଦୁଃଖର ବୋଝ ହାଲୁକା କରିବ—ସେ ଧଳା କାଗଜ ଖଣ୍ଡିଏ ହେଉ ପଛେ !

ଲେଖୁ ଲେଖୁ ସବୁ ଭୁଲିଯାଏ ସେ । ତା' ପ୍ରତି ହୋଇଥିବା ଅବିଚାରଗୁଡ଼ିକୁ ମନେକରି ସେ କାହାକୁ ଦୋଷ ଦିଏନାହିଁ । କେବେ ନ ଦେଖିଥିବା ମା ବାପାଙ୍କ ପ୍ରତି ଅଭିମାନ ହୁଏନାହିଁ କି ତାକୁ ଅନାଦର କରି ବୋଝ ମଣୁଥିବା ଆତ୍ମୀୟମାନଙ୍କ ପ୍ରତି ଆକ୍ରୋଶ ମଧ୍ୟ ଆସେ ନାହିଁ । ହଷ୍ଟେଲର ଏକଘେଣା ରୁଟିନ୍ ବନ୍ଧା ଜୀବନ ତାକୁ ଭୟ ଦେଖାଇ ପାରେନାହିଁ ।

ଧୀରେ ଧୀରେ ତା' କବିତା ସବୁ ବିଭିନ୍ନ ପତ୍ରିକାରେ ପ୍ରକାଶପାଇଲା । 'ସୁନନ୍ଦା ମିଶ୍ର' ନାଁଟିକୁ ଅନେକେ ଚିହ୍ନିଗଲେ । ସେ ବହୁ ଚିଠିପାଇବାକୁ ଲାଗିଲା—ପ୍ରକାଶକମାନଙ୍କଠାରୁ, ସମ୍ପାଦକମାନଙ୍କଠାରୁ, ଅନ୍ୟ କବି ଓ ଲେଖକମାନଙ୍କଠାରୁ । ଏବେ ବି ମନେଅଛି, ଯେଉଁଦିନ ତା'ର ପ୍ରଥମ କବିତା ବହି ପ୍ରକାଶିତ ହୋଇ ପୁରସ୍କୃତ ହେଲା, ସେଇଦିନ ବର୍ଷୀୟାନ୍ କବି ଉମାପଦ ସାମନ୍ତସିଂହାର ତା'କୁ ଛଳଛଳ ଆଖିରେ କହିଥିଲେ, "ମା'ରେ, ଏତେ କମ୍ ବୟସରେ ତୋର ଜୀବନରେ ଏମିତି କି ଦୁଃଖ ଯେ, ତୋର କବିତା ପଢ଼ିଲେ ଆଖିକୁ ଲୁହ ଆସିଯାଉଛି ! ମୁଁ ପଚିଶବର୍ଷ ଧରି ଲେଖୁଛି, କାହିଁ ଚେଷ୍ଟା କରି ତ ଏତେ ଦୁଃଖ ଯାଉଁଟି ପାରୁନି । ତୋ ଦୁଃଖରୁ ମତେ କିଛି ଦେଇଦଅନ୍ତୁନି ଲୋ ମା !"

ସେଦିନ ସୁନନ୍ଦା କିଛି କହିପାରିନଥିଲା । ପରେ ଅଭିମାନରେ ଖାଲି ହସିଥିଲା ଟିକିଏ । ବାହାରର ଲୋକ ବା କ'ଣ ଜାଣିବେ ? ଯାହା ଜୀବନରେ ସୂର୍ଯ୍ୟ କେବେ ଉଇଁନାହିଁ, ଫୁଲ କେବେ ଫୁଟି ନାହିଁ, କୋଇଲି କେବେ ଗାଇନାହିଁ, ତା' ଲେଖାରେ ଇନ୍ଦ୍ରଧନୁର ରଙ୍ଗ ଆସିବ କେଉଁଠୁ ?

ହଠାତ୍ କିନ୍ତୁ ସୁନନ୍ଦାର ପୃଥିବୀ ରଙ୍ଗୀନ୍ ହୋଇଗଲା । କବିତାର ପ୍ରଶଂସା କରିବାକୁ ଆସିଥିବା ପ୍ରଦୀପ ଆଚାର୍ଯ୍ୟ ସୁନନ୍ଦା ଜୀବନର ପ୍ରଦୀପ ହୋଇଗଲେ । ଏବେ ବି ତା'ର ମନେ-ଅଛି ଶାନ୍ତିନିକେତନରେ ହୋଇଥିବା ସର୍ବଭାରତୀୟ କବି ସମ୍ମିଳନୀ କଥା । କବିତା ପାଠୋତ୍ସବ ଦିନ କବିତା ପଢ଼ି ମଞ୍ଚରୁ ଓହ୍ଲାଇ ଆସିବା ବେଳକୁ ଜଣେ ଅଚିହ୍ନା ଓଡ଼ିଆ ଭଦ୍ରଲୋକ ତାକୁ ବହୁ ପ୍ରଶଂସା କଲେ । ଶ୍ୟାମଳ ରଙ୍ଗ, ପତଳା ଚେହେରା । ପରିଚୟ ହେଲା । ସୁନନ୍ଦା ମନେପକାଇବାକୁ ଚେଷ୍ଟା କରୁଥିଲା କେଉଁଠି ତାଙ୍କର ଲେଖା ପଢ଼ିଛି କି ନାହିଁ । ତା' ମନ ତଳର ଭାଷା ପଢ଼ିଲା ପରି ପ୍ରଦୀପ କହିଥିଲେ, "ମୁଁ କବି ନୁହେଁ ସୁନନ୍ଦା ଦେବୀ—କବିତା ଭଲପାଏ । ସେଇଥିପାଇଁ ଏଠିକି ଆସିଛି ।"

ଆଶ୍ଚର୍ଯ୍ୟ ହୋଇଥିଲା ସୁନନ୍ଦା । କବି, ଲେଖକ ନହୋଇ କିଏ ଏମିତି କବିତାକୁ ଭଲପାଇପାରେ ? କେବଳ କବିତା ଶୁଣିବା ଲୋଭରେ କିଏ ବା ପକେଟରୁ ଟଙ୍କା ଖର୍ଚ୍ଚ କରି,

ସ୍କୁଲରୁ ଛୁଟୀ ନେଇ ଶାନ୍ତିନିକେତନ ଦୌଡ଼ିଆସେ ?

ସ୍ମରଣାଗର ଉଦ୍ୟାନ ଭିତରେ ବହୁତ ଥର ଦେଖାହୋଇଛି ଦୁଇଜଣଙ୍କର । ଦୁହିଁଙ୍କ ଅଜାଣତରେ ଦୁହେଁ କେତେବେଳେ ପୁଣି ଏକ ହୋଇଗଲେ । ଶେଷ ଦିନ ଷ୍ଟେସନ୍‌କୁ ଯିବାର ଅଳ୍ପ ସମୟ ପୂର୍ବରୁ ବାହାଘର ପ୍ରସ୍ତାବ ଦେଇଥିଲେ ପ୍ରଦୀପ ଏବଂ ସୁନନ୍ଦାର ଅରାଜି ହେବାରେ କୌଣସି କାରଣ ନଥିଲା । ତା' ଜୀବନ ରଙ୍ଗମୟ ହୋଇଗଲା । ଏତେଦିନ ଯେମିତି ଆଖି ଉପରେ କଳା ପର୍ଦ୍ଦାଟିଏ ଥିଲା—ପାଉଁଶିଆ ଆକାଶ ନୀଳ ହୋଇଗଲା । ଅସ୍ତିତ୍ୱ ବିହୀନ ଗଛ ସବୁ କେମିତି ଜୀବନ୍ତ ହୋଇ ଉଠିଲେ । ଘାସ ଉପରର ମୁକ୍ତା ପରି ଶିଶିର ବିନ୍ଦୁ ତାକୁ ପାଗଳ କଲା । ନାଲି, ଗୋଲାପୀ, ଧଳା—ବହୁ ରଙ୍ଗର ଫୁଲର ସମାରୋହରେ ଆତ୍ମହରା ହେଲା ସେ ।

ଖୁବ୍ ଶୀଘ୍ର ପ୍ରଦୀପଙ୍କ ସାଙ୍ଗରେ ବାହାଘର ହୋଇଗଲା । ସେ ଚାଲିଆସିଲା ବାରିପଦା । ସେଇଠି ପ୍ରଦୀପଙ୍କ ଚାକିରି । ସ୍ଲେଟ କ୍ୱାଟରଟିଏ ପାଇଥିଲେ ସେ । ତା'କୁ ମନ ଭରି ସଜେଇଲା ସୁନନ୍ଦା । ସ୍ୱାମୀଙ୍କ ପାଇଁ ଭଲ ଭଲ ଜିନିଷ ରାନ୍ଧିବାରେ, ନୂଆ ନୂଆ ଡିଜାଇନର ସ୍ୱେଟର୍ ବୁଣିବାରେ ଆଉ ଟେବୁଲ୍ କ୍ଲଥ ଇତ୍ୟାଦିରେ ଏମ୍ବ୍ରଏଡରି କରିବାରେ ତା'ର ଦିନ କେମିତି କଟିଯାଏ କିଛି ଜଣାପଡ଼େନାହିଁ ।

ଏ ନୂଆ ପୃଥିବୀରେ ଦୁଃଖଭରା କବିତାର ସ୍ଥାନ ବି ନାହିଁ । ସମ୍ପାଦକମାନଙ୍କଠାରୁ ଆସିଥିବା ଚିଠିସବୁ ଚିରାହୋଇ ଡଷ୍ଟବିନ୍‌ରେ ପଡ଼େ । ପ୍ରଦୀପ ବହୁତ ବୁଝାନ୍ତି । କବିତା ଲେଖିବାକୁ କେତେ କହନ୍ତି । ସୁନନ୍ଦା ପାରେନାହିଁ । ହସି ଉଡ଼େଇ ଦିଏ । ତା' ପାଇଁ ଶ୍ରୀମତୀ ପ୍ରଦୀପ ଆଚାର୍ଯ୍ୟ ପରିଚୟ ହିଁ ଯଥେଷ୍ଟ । ନିଜର ସୁନାମ ପାଇଁ ସେ ଲାଳାୟିତ ହୁଏନାହିଁ । କିନ୍ତୁ ଏଇ କେତେ ଦିନ ହେଲାଣି ପ୍ରଦୀପଙ୍କର ଯେମିତି କିଛି ଲାଗିଛି । କଥା କହୁ କହୁ ହଠାତ୍ ଗମ୍ଭୀର ହୋଇଯାଉଛନ୍ତି । ତା'ର ପୁରୁଣା କବିତା ବହି ସବୁ ପଢ଼ିବାବେଳେ ସେ ଅନ୍ୟ-ମନସ୍କ ହୋଇପଡ଼ୁଛନ୍ତି । କିଛି ଜେଉଁଠାଇଲା ସୁନନ୍ଦା ।

ସ୍ୱାମୀଙ୍କୁ ସବୁ ପ୍ରକାରେ ସୁଖୀ କରିବ ବୋଲି ଚେଷ୍ଟା କରୁଛି ସେ—ଅଥଚ ସାମାନ୍ୟ କବିତା ପାଇଁ ତାଙ୍କ ମନରେ ଦୁଃଖ ଦେବ ? ନା—ସେ କବିତା ଲେଖିବ, ଲେଖିବ । ସୁନନ୍ଦା ଆଖି ବନ୍ଦକଲା ।

× × × ×

ଅଫିସରୁ ଫେରି ଘରେ ପାଦ ଦେଉ ଦେଉ ପାଣି ଗ୍ଲାସେ ବଦଳରେ ପ୍ରଦୀପଙ୍କ ହାତକୁ କବିତାଟିଏ ବଢ଼ାଇଦେଲା ସୁନନ୍ଦା । ଜୋତା ନ ଖୋଲି ଡାଇନିଂର ଚୌକି ଉପରେ ବସିପଡ଼ିଲେ ସେ । ଖୁବ୍ ଆଗ୍ରହରେ ଏକା ନିଶ୍ୱାସକେ କବିତାଟି ପଢ଼ିଗଲେ । ପୁରୁଣା ଡାଇରୀର ପୃଷ୍ଠା ଛିଣ୍ଡାଇ ସେଥିରେ ଲେଖିଛି ସୁନନ୍ଦା । ତା' ଅକ୍ଷର ସୁନ୍ଦର । ପଢ଼ିବାକୁ କଷ୍ଟ ହେଲାନାହିଁ ତାଙ୍କର । ତଥାପି ବସେଇ ବସେଇ ଦ୍ୱିତୀୟଥର ପଢ଼ିଲେ ସେ ।

"କେମିତି ହୋଇଛି ?" —ଦୁଇ କପ୍ ଗୁହା ଆଉ ବିସ୍କୁଟ୍ ନେଇ ଆସୁ ଆସୁ ସୁନନ୍ଦା ପଚାରିଲା ।

"ଭଲ", —ଆଖିରୁ ଚଷମା କାଢ଼ି ପରିଷ୍କାର କରୁ କରୁ ଖୁବ୍ ସଂକ୍ଷେପରେ କହିଲେ ପ୍ରଦୀପ ।

"ଏଥର ଖୁସି ତ ?···ତୁମେ ଏଇଟା ନେଇଯାଅ । ଯେଉଁ ପତ୍ରିକାକୁ ଇଚ୍ଛା ପଠେଇ ଦିଅ ।"

"ଆଚ୍ଛା···ଆଜି କିଛି ଚିଠି ଆସିନି ?" ଅନ୍ୟ କଥା ପକେଇଲେ ପ୍ରଦୀପ । ଭାବୁଥିଲେ ବୋଧହୁଏ ସୁନନ୍ଦାକୁ କେମିତି ବୁଝାଯାଇପାରେ ଏ ବିଷୟ ।

ପ୍ରଦୀପ ଲେଖକ ନୁହଁନ୍ତି, କବି ନୁହଁନ୍ତି, ସମାଲୋଚକ ନୁହଁନ୍ତି । କବିତା ପଢ଼ିବାକୁ ଭଲପାଆନ୍ତି ଏବଂ ପଢ଼ନ୍ତି । ଇଂରାଜୀ, ଓଡ଼ିଆ, ହିନ୍ଦୀ, ବଙ୍ଗଳା ସବୁ ଭାଷାର କବିତା ପଢ଼ି ପଢ଼ି ଏମିତି ହୋଇଛି କବିତା ଭିତରୁ ଭଲମନ୍ଦ ଠିକ୍ ବାଛିନେଇପାରିବେ । ହୁଏତ କୌଣସି ବିଶ୍ଳେଷଣ କରିପାରିବେ ନାହିଁ । କବିତାର କେଉଁ ଅଂଶଟି ଖରାପ ବା ଭଲ ଏବଂ ତା'ର କାରଣ କ'ଣ, ଏତେ ସବୁ ଗଭୀରତା ଭିତରକୁ ମଧ୍ୟ ସେ ଯାଇପାରିବେନାହିଁ । ତାଙ୍କ ହୃଦୟକୁ ଯେଉଁଟି ଛୁଇଁଯାଏ, ସେ ହିଁ ସୁନ୍ଦର । ଯେମିତି ସୁନନ୍ଦାର ବାହାଘର ଆଗର କବିତା ସବୁ—ସେଥିରେ କେମିତି ଗୋଟିଏ ଜୀବନୀ ଶକ୍ତି ଥିଲା । ସେଗୁଡ଼ିକ ପଢ଼ି ପଢ଼ି ସୁନନ୍ଦାର ଜଗତକୁ ଚାଲିଯାଉଥିଲେ ପ୍ରଦୀପ ।

ସେସବୁ କବିତା ଏବଂ ଆଜିର ଏ ଲେଖା—ପ୍ୟାଣ୍ଟ ସାର୍ଟ ବଦଳିଛି ବଦଳିଉ ସେଇକଥା ଖାଲି ଭାବୁଥିଲେ ସେ । କବିତାଟି ଯେ ଭଲ ହୋଇନି, ତା' ନୁହଁ । କିନ୍ତୁ ଏ ଯେମିତି କ୍ଲାସ୍‌ରେ ପ୍ରଥମ ହେଉଥିବା ପିଲାର ପ୍ରବନ୍ଧ । ଖୁବ୍ ଚେଷ୍ଟା କରି ନିଶ୍ଚୟ ଲେଖିଛି ସୁନନ୍ଦା । କିନ୍ତୁ ଏ କବିତାରେ ଆତ୍ମା ନାହିଁ । ତା' ଅନ୍ତରର ସ୍ୱୀକୃତି ମଧ୍ୟ ନାହିଁ । ଥରେ ପଢ଼ିଲେ ଏଥିରେ ମନ ଭରିଯାଏ । ବାରମ୍ବାର ପଢ଼ିବାକୁ ଇଚ୍ଛା ହୁଏନାହିଁ ବା ସାଇତି ରଖିବାକୁ ହାତ ଯାଏ ନାହିଁ । ଏଇଟି ପାଠକର କବିତା ନୁହଁ, ସମ୍ପାଦକଙ୍କର ମନୋନୀତ ହୋଇଥିବା କବିତାଟିଏ ।

କବିତାଟି ପଠେଇଦେଲେ ପତ୍ରିକାରେ ନିଶ୍ଚୟ ଛପା ହୋଇଯିବ । କିନ୍ତୁ କେବଳ ଛପା ଅକ୍ଷରରେ ସୁନନ୍ଦାର ନାଁ ଦେଖିବାକୁ କି ପ୍ରଦୀପ ଲେଖା ଉପରେ ଏତେ ଜୋର୍ ଦେଉ-ଥିଲେ ? ହାତରେ କାଗଜ ଖଣ୍ଡିକ ଧରି ସେ ଭାବୁଥିଲେ ଯେ କ'ଣ କରିଯାଇପାରେ ।

× × × ×

"ଚିଠି ଆସିଛି ?" —ଘରେ ପଶୁ ପଶୁ ସବୁଦିନିଆ ପ୍ରଶ୍ନଟି ପଚାରିଲେ ପ୍ରଦୀପ ।

ତାଙ୍କ ହାତରୁ ବ୍ରିଫ୍‌କେଶ୍‌ଟି ନେଇ ଯାଉ ଯାଉ ସୁନନ୍ଦା ହସିପକେଇଲା, "ଗୋଟାଏ ଭଲ ଖବର ଅଛି । ମୁଁ ଯେଉଁ କବିତା ଲେଖିଥିଲି···ସେଇଟି ସମ୍ପାଦକାଙ୍କର ମନୋନୀତ ହେଲାନାହିଁ ।"

ଗମ୍ଭୀର ହୋଇ ସ୍ତ୍ରୀକୁ ଦେଖିଲେ ପ୍ରଦୀପ । ତା'ର କୌଣସି ଦୁଃଖ ନାହିଁ, ଗ୍ଲାନି ନାହିଁ । ଯେମିତ ଏଇଟା ହିଁ ହେବା ଖୁବ୍ ସ୍ୱାଭାବିକ ।

"ହେଲା ମ ହେଲା, ତୁମ ମନ କାହିଁକି ଖରାପ କୁହ ତ ? ଆଉ ଦୁଇଟା କବିତା ଯା ଭିତରେ ଲେଖିଛୁ । କାଲି ପୋଷ୍ଟ କରିଦେବ ତ ।" ନିର୍ବିକାରଭାବରେ ଏତକ କହିଦେଇ ଭିତରକୁ ଚାଲିଗଲା ସେ ।

× × × ×

"ଚିଠି ନାହିଁ ?"

କୌଣସି ଉତ୍ତର ଦେଲାନାହିଁ ସୁନନ୍ଦା । ସେଷେଇ ଘରକୁ ଚାଲିଗଲା । ଚା' ଜଳଖିଆ ନେଇ ସେ ଦଶମିନଟ୍ ପରେ ଆସିଲା ।

ଖଟ ଉପରେ ଲମ୍ବାହୋଇ ଶୋଇ ଗୋଟିଏ ପତ୍ରିକା ଉପରେ ଆଖି ବୁଲାଉଥିଲେ ପ୍ରଦୀପ ।

"ଆଜି କିଛି ଚିଠି ଆସିନି ?" ଆଉ ଥରେ ପ୍ରଶ୍ନ ଦୋହରାଇଲେ ।

ପାଖ ଟେବୁଲ୍‌ରେ ଚା' କପ୍‌ଟି ରଖି ସୁନନ୍ଦା ପ୍ରଦୀପଙ୍କ ହାତକୁ ଜଳଖିଆ ପ୍ଲେଟଟି ବଢ଼େଇ ଦେଲା—"ଆସିଛି । ଦଇଟା । ଯେଉଁ କବିତା ଦୁଇଟି ପଠେଇ ଦେଇଥିଲି ସେଗୁଡ଼ା ମନୋନୀତ ହୋଇନି ।...ଭଲ ହୋଇ ନଥିଲା ନା ? ତୁମେ ତ ପଢ଼ି କିଛି କହିଲ ନାହିଁ ।" ହସିବାକୁ ଚେଷ୍ଟା କରୁ କରୁ ସୁନନ୍ଦା ଆଖିରୁ ଲୁହ ଝରିଆସିଲା । ସ୍ୱାମୀଙ୍କ ହାତ ଉପରେ ମୁହଁ ରଖି ନୀରବରେ କାନ୍ଦିବାକୁ ଲାଗିଲା ସେ । ପ୍ରଦୀପ କିଛି ନକହି ଖୁବ୍ ଆଦରରେ ତା' ମୁଣ୍ଡବାଳ ସାଉଁଳାଇଦେଲେ ।

× × × ×

ରାତିରେ ହଠାତ୍ ନିଦ ଭାଙ୍ଗିଗଲା ପ୍ରଦୀପଙ୍କର । ଓଃ—ଲାଇଟ୍ ଲିଭେଇବାକୁ ସୁନନ୍ଦା ଭୁଲିଯାଇଛି ବୋଧହୁଏ । ମଶାରୀ ଟେକି ବାହାରକୁ ବାହାରୁ ବାହାରୁ ଦେଖିଲେ ପାଖରେ ସୁନନ୍ଦା ନାହିଁ । ଧଡ଼୍‌କରି ଉଠିପଡ଼ିଲେ ସେ । ଯାହା ସେ ଦେଖିଲେ, ସେଥିରେ ମନ ତାଙ୍କର ସନ୍ତୋଷରେ ଭରିଗଲା । ତଳେ ବସି ପଡ଼ିଛି ଖୁବ୍ ମନ ଦେଇ ସୁନନ୍ଦା କ'ଣ ସବୁ ଲେଖୁଛି—ସତେ କି ଧ୍ୟାନସ୍ଥ ମୁନି ! କେଉଁଆଡ଼େ ଲକ୍ଷ୍ୟ ନାହିଁ ତା'ର । କିଛି ନକହି ମନକୁମନ ହସି ହସି ବିଛଣାରେ ଶୋଇ ପଡ଼ିଲେ ପ୍ରଦୀପ । ଏତେ ବଡ଼ ଟ୍ୟୁବ୍ ଲାଇଟ୍ ଜଳୁଥିବା ସତ୍ତ୍ୱେ ଖୁବ୍ ଶୀଘ୍ର ତାଙ୍କର ନିଦ ହୋଇଗଲା । ନିଦରେ ଚେତନା ହରେଇବା ଆଗରୁ ଖାଲି ଗୋଟିଏ କଥା ଭାବିଥିଲେ ସେ—ଆସନ୍ତା କାଲି ସକାଳେ ଅଫିସ୍ ଆଲମାରୀରୁ ସୁନନ୍ଦାର କବିତା ଉଣେଇଟିକୁ କାଢ଼ି ଚିରିଦେବାକୁ ହେବ ଏବଂ ଅଧ୍ୟାପକବନ୍ଧୁ ଅଶୋକକୁ ଜଣେଇଦେବାକୁ ହେବ ଯେ, ତା'ର ଆଉ "ସମ୍ପାଦକ"ଙ୍କ ପ୍ରକୃତି ଭାବରେ ଚିଠି ପକେଇବାର କୌଣସି ଆବଶ୍ୟକତା ନାହିଁ ।



# ଆବିଷ୍କାର

କେତେ ଛୋଟ ଘଟଣାଟାଏ, ସେଥିନେଇ ଏତେ ଅଶାନ୍ତିର ବା କି ଦରକାର ଥିଲା ? ରାଗରୁଷା, ମନ ଫଟାଫଟି ବସ୍ତୁତଃର ସୀମା ଅତିକ୍ରମ କରିସାରିବା ପରେ ମଧ୍ୟ ଏମିତି ଗୋଟାଏ ଅଦିନିଆ ଝଡ଼ କାହିଁକି ଅଡ଼ୁଆଧିଏ କରିଦେଲା ସିଦ୍ଧାର୍ଥଙ୍କୁ ? ଝଡ଼ଟା କମିଯିବା ପରେ ଜାଣିଲେ, ସେ ଯେ କେବଳ ଆଘାତ ପାଇଛନ୍ତି ତା' ନୁହେଁ, ମିତା ମଧ୍ୟ ଭୀଷଣ କ୍ଷତବିକ୍ଷତ ହୋଇଛନ୍ତି । କିବା କଥା, ବଡ଼ପୁଅ ଅଭିଷେକର ପାଠପଢ଼ା ନେଇ ତ ! ପୁଅ ସମ୍ବନ୍ଧରେ ଖୁବ୍ ବେଶୀ ପଜେସିଭ୍ ହେବା ମା' ପକ୍ଷରେ ସ୍ୱାଭାବିକ; କିନ୍ତୁ ଏ ବିଷୟରେ ସେ ନିଜେ କ'ଣ ହତରେ ଘାତମ୍ପୁହ ? ସିଦ୍ଧାର୍ଥଙ୍କର ମନେପଡ଼ିଗଲା ଯେ ଗୋଟାଏ ଏକାନ୍ତ ଗୋପନ ମୁହୂର୍ତ୍ତିରେ ସେ ନିଜ ପାଖରେ କନ୍‌ଫେସ୍ କରିଥିଲେ, ମିତାଙ୍କ ଭିତରେ ଥିବା ପତ୍ନୀ-ହୃଦୟଟି ବା ମାତୃ-ଚରିତଟି ଅନନ୍ୟ । ତଥାପି ମୁହୂର୍ତ୍ତିକର ଉତ୍ତେଜନାରେ ପତ୍ନୀଙ୍କୁ ଏତେଗୁଡ଼ାଏ ଅଯଥା ଦୋଷ ସେ ଦେଇପାରିଲେ କିପରି ? ଅଦୃଶ୍ୟ ଏକ ଦୋଷୀ ଭାବନାକୁ ଆଉଁଇ ଦେଉଥିଲା ତାଙ୍କୁ ।

ଶୋଇବା ଘରର ପର୍ଦ୍ଦା ଟେକି ସେ ବାହାରକୁ ଆସିଲେ । ଲନ୍‌ର ଗୋଟାଏ କଣରେ, ଯେଉଁଠି ସେ ନିଜେ ବାଛି ବାଛି ସିଜ୍‌ନାଲ ଫୁଲସବୁ ଲଗାଇଥିଲେ, ସେଇଠି ଚୌକି ପକେଇ ବସିଛନ୍ତି ମିତା । ଷ୍ଟ୍ରୀଟ୍ ଲାଇଟ୍‌ର ଆଲୁଅ ଏତେଦୂର ଆସିପାରେ ନାହିଁ । କୃଷ୍ଣପକ୍ଷର ଦ୍ୱିତୀୟା ଜହ୍ନ ଉଇଁବାକୁ ଆହୁରି ଅନେକ ଡେରି ଅଛି । ମିତାଙ୍କ ହାତର କାଚଚୁଡ଼ି ରୁଣୁଝୁଣୁ ହୋଇନଥିଲେ ବୋଧହୁଏ ପତ୍ନୀଙ୍କର ଉପସ୍ଥିତି ସିଦ୍ଧାର୍ଥ ଜାଣିପାରିନଥାଆନ୍ତେ ।

ଧୀର ପଦକ୍ଷେପରେ ସେ ଆଗେଇ ଗଲେ ସେଇଆଡ଼କୁ । ବିବାହର ଏଗାର ବର୍ଷ ମଧ୍ୟରେ ଥରେ ହେଲେ ସ୍ତ୍ରୀଙ୍କ ନିକଟରେ ମୁଣ୍ଡ ନୁଆଁଇ କ୍ଷମା ମାଗିବାକୁ ହୋଇନି ତାଙ୍କୁ । ସେମିତି କିଛି ଘଟଣା ହୋଇଥିଲେ ତ ? ସେଇଟା ଯେ ଖୁବ୍ ଗୋଟାଏ ଅପମାନର ବିଷୟ ଏକଥା ଆଦୌ ଭାବୁନଥିଲେ ସେ । ବରଂ କଷ୍ଟ ହେଉଥିଲା ତାଙ୍କୁ, ଏତେ ଛୋଟ କଥାରେ ହଠାତ୍ ରାଗିଯିବାର କ'ଣ ଦରକାର ଥିଲା ?

ଅଭିଷେକ ଯେତେବେଳେ ସ୍କୁଲର ପରୀକ୍ଷା ରିପୋର୍ଟ ଆଣି ଧରାଇଦେଲା ତାଙ୍କ ହାତରେ, ମନରେ କୌଣସି ଆଶଙ୍କା ନଥିଲା ସିଦ୍ଧାର୍ଥଙ୍କର । ଶ୍ରେଣୀ ପରୀକ୍ଷାରେ କ୍ରମାଗତ ଭାବରେ ଖୁବ୍ ଭଲ କରି ଆସୁଥିବା ପୁଅଟି ପାଇଁ ଚିନ୍ତା କରିବାର ବା କ'ଣ ଅଛି ? କିନ୍ତୁ ଭୁଲ୍ ହୋଇ-ଯାଇଥିଲା ତାଙ୍କର, ପାଠପଢ଼ାରେ ଅତି ବେଶୀ ମନୋଯୋଗୀ ପୁଅଟି ଠିକ୍ ତା' ମା'ଭଳି

ଶାନ୍ତକାନ୍ତ ହୋଇଯାଉନି ତ ? ଦଶବର୍ଷର ପିଲା, ସାଙ୍ଗମାନଙ୍କ ସାଙ୍ଗରେ ଖେଳନ୍ତା ନାହିଁ ? ସାନ ଭାଇ ଭଉଣୀଙ୍କ ସାଙ୍ଗରେ ଝଗଡ଼ା କରନ୍ତା ନାହିଁ ? ସନ୍ଧ୍ୟାବେଳେ ପାଠପଢ଼ା ସମୟରେ ଟେଲିଭିଜନ ଦେଖିବାକୁ ଜିଦ କରନ୍ତା ନାହିଁ ? ତା'ପାଇଁ ଅଣାହୋଇଥିବା କ୍ରିକେଟ୍ ବ୍ୟାଟ୍ ନେଇ ଆଠବର୍ଷର ସାନପୁଅ ଅଭିଯାନ ଖେଳିବାକୁ ଯାଏ । ଆଉ ତା' କ୍ୟାରମ୍ ବୋର୍ଡ଼ରେ ଛଅ ବର୍ଷର ଝିଅ ଅସୀମା ପଡ଼ୋଶୀ ଘର ପିଲାଙ୍କ ସାଙ୍ଗରେ କ୍ୟାରମ୍ ଖେଳେ । ଠିକ୍ ସେଇ କଥା ହିଁ କ୍ଲାସ୍‌ଟିଚର୍ ରିମାର୍କ ଦେଇଥିଲେ ରିପୋର୍ଟରେ ।

ପୃଥିବୀ ଅନେକ ଆଗେଇ ଯାଇଛି । କେବଳ ବହି ଭିତରେ ବୁଡ଼ିରହିଲେ ସେ ଯେ ଅନେକ ପଛରେ ପଡ଼ିଯିବ, ଏକଥା ଶ୍ରେଷ୍ଠ ପିଲାଟିକୁ କେମିତି ବୁଝାଇବେ ? ସମସ୍ତ ଯୋଗ୍ୟତା ଥାଇ ମଧ୍ୟ ମିତାଙ୍କର ଗୋଟାଏ କ୍ୟାରିଅର୍ ଗଢ଼ିବାରେ ଯେଉଁ ଚରମ ଅସଫଳତା, ସେକଥା ବୁଝିବାର ତ ବୟସ ହୋଇନି ଅଭିଷେକର । ଆଉ ସେ ବୟସ ଯେତେବେଳେ ଆସିବ, ଅନେକ ଡେରି ହୋଇଯାଇ ନଥିବ କି ? ତେବେ ମିତାଙ୍କ କଥା ଭିନ୍ନ । ସିଦ୍ଧାର୍ଥଙ୍କ ସହିତ ବିବାହ ପରେ ପରେ ଶ୍ରେଷ୍ଠ ସଂସାରର ନୌକା ଚଳାଇବାର ଦାୟିତ୍ୱ ମିଳିଯାଇଥିଲା ତାଙ୍କୁ । କିନ୍ତୁ ଅଭିଷେକ ? ଅଭିଷେକ କ'ଣ କରିବ ??

ସେଇଥିପାଇଁ ତ ଅନେକ ଚିନ୍ତାକରି ଅଭିଷେକକୁ ବୋର୍ଡ଼ିଂ ସ୍କୁଲକୁ ପଠାଇବାର ପ୍ରସ୍ତାବ ଦେଇଥିଲେ ସିଦ୍ଧାର୍ଥ, ଯେଉଁଠି ପାଠପଢ଼ା ସଙ୍ଗେ ସଙ୍ଗେ ସବୁଆଡ଼ୁ ପୁଅର ଉନ୍ନତି ହୋଇପାରିବ । ଘୋଡ଼ାଚଢ଼ା ଶିଖିବ, ପହଁରି ଶିଖିବ, ଦଶଜଣଙ୍କ ସାଙ୍ଗରେ ମିଶିବ । ସହେ କଥାରେ ଏକ୍‌ସଟ୍ରୋଭର୍ଟ ହେବ, ଯେଉଁଟା ଏବେକା ସଂସାରରେ ସାର୍ଥକ ହେବାପାଇଁ ଏତେ ବେଶୀ ଜରୁରି ହୋଇଯାଇଛି ।

"ବୋର୍ଡ଼ିଂ ସ୍କୁଲ !" ଆଶ୍ଚର୍ଯ୍ୟ ହୋଇଯାଇଥିଲେ ମିତା, "ନା ନା, ମୋ ପୁଅକୁ ମୁଁ ଏତେଦୂର ପଠେଇଦେଇପାରିବି ନାହିଁ । ତୁମକୁ କଷ୍ଟ ହେବ ନାହିଁ ? ପ୍ରସ୍ତାବଟି କେବଳ ଶୁଣି ମୋ' ଛାତି ଭିତରେ କ'ଣ ଯେମିତି ଅଟକିଯାଉଛି । ଆଉ ତୁମେ ବି ତ ତା'ର ବାପା ?"

"ସ୍ନେହ-ମମତାର ଡୋରିରେ ବାନ୍ଧିରଖି ତୁମେ କ'ଣ ପୁଅର ଭବିଷ୍ୟତ ନଷ୍ଟ କରି-ଦେବାକୁ ଚାହଁ ? ମୁଁ ଅନ୍ତତଃ ଏତେଟା ସ୍ୱାର୍ଥପର ହୋଇପାରିବି ନାହିଁ । ଦଶଜଣଙ୍କ ଆଗରେ ଗର୍ବକରି କହିବାକୁ ତ ମୁଁ ମୋ ପୁଅକୁ ପବ୍ଲିକ ସ୍କୁଲରେ ଛାଡ଼ୁନି, ଛାଡ଼ୁଛି ତା'ର ମଙ୍ଗଳ ପାଇଁ । ଅଭିଷେକ ନିଜ ଜୀବନରେ ଉନ୍ନତିର ଶୀର୍ଷ ସୋପାନରେ ପହଞ୍ଚୁ, ସେତିକି ତ ମୁଁ ଚାହେଁ ।"

ସ୍ୱାମୀଙ୍କ କଥାରେ ଆଖି ଦୁଇଟା ଛଳଛଳ ହୋଇଆସିଥିଲା ମିତାଙ୍କର ।

"ମିତା—ଛିଃ"—ପାଖକୁ ଆସି ଲୁହ ପୋଛି ଦେଇଥିଲେ ସିଦ୍ଧାର୍ଥ, "ଏଇ କଥାରେ ଏତେ ମନ କଷ୍ଟ କରୁଛ ? ଅଭିଷେକ ପାଇଁ ମୋର କ'ଣ କୌଣସି ଚିନ୍ତା ନାହିଁ ?"

ହାତ ପାପୁଲିରେ ଆଖି ଲୁହ ପୋଛିଦେଇଥିଲେ ମିତା, "କିନ୍ତୁ ତୁମେ ଯାହା ଯେମିତି ଭାବୁଛ, ଠିକ୍ ସେମିତି ଯଦି ନହୁଏ···"

"ଓଃ, ତୁମର ଖାଲି ସବୁ କଥାରେ ଅଯଥା ଭୟ, ଆଶଙ୍କା । କାହିଁ, ଅଜୟ ତ ପୁଣି ଭୁନ୍ ସ୍କୁଲରେ ପଢ଼ୁଛି—କ'ଣଟା ବା ନଷ୍ଟ ହୋଇଯାଇଛି ସେ ? ବରଂ ତାର ମାର୍ଜିତ କଥାବାର୍ତ୍ତା, ଭଦ୍ର ବ୍ୟବହାର ଦେଖିଲେ ମନ ଭରିଯାଏ ।" ଉଦାହରଣ ଦେଇଥିଲେ ସିଦ୍ଧାର୍ଥ ।

"ବାବା, ତୁମ ଅପାଙ୍କ ପୁଅ କଥା ଛାଡ଼ ।" କଥାଟା ଖୁବ୍ ହାଲୁକା ଭାବରେ କହିଲେ ମିନା ।

"ଛାଡ଼ କାହିଁକ ?" ଚାହିଁଯାଇଥିଲେ ସ୍ୱାମୀ ତାଙ୍କର ।

"ଆଃ, ସ୍ୱଗନ, ସବୁ ଦଗରୁ ତ ପୁଣି ଚନ୍ତା କର ପୁଅକୁ ପଠାଇବା । ପବ୍ଲିକ୍ ସ୍କୁଲ-ମାନଙ୍କରେ ପିଲା ପ୍ରତି ପ୍ରାୟ ହଜାରେ ଟଙ୍କା ଖର୍ଚ୍ଚ ଲାଗିଯିବ । ତୁମ ଅପାଙ୍କ ସ୍ୱାମୀ ଜଣେ ବ୍ୟବସାୟୀ ଲୋକ, ପଇସାର ଅଭାବ ନାହିଁ—ତୁମେ ଏତେ ଟଙ୍କା ଆଣିବ କେଉଁଠୁ ?"

କ୍ଷଣକ ପାଇଁ ଦବିଆସୁଥିବା ମନରେ ଜୋର୍ ଦେଇ ସିଦ୍ଧାର୍ଥ କହିଥିଲେ, "ତୁମେ ମିନା ସତରେ ବଡ଼ ନେଗେଟିଭ୍ ! ମନ ଟାଣ ଥିଲେ ଟଙ୍କାର ଅସୁବିଧା ହୁଏ ନାହିଁ । ଆଉ ଯେମିତି ଯଦି ଅସୁବିଧା ହୁଏ, ତେବେ ମୋର ସବୁ ଲକଜୁରି ବନ୍ଦ କରଦେବ ।"

ସିଦ୍ଧାର୍ଥଙ୍କ କଥା ନସରୁଣୁ ମାଡ଼ିବସିଲେ ମିନା, "ଆରେ ମୁଁ ଜଣା ଶାଗପଖାଳ ଖାଇ ରହିଯିବ, ହେଲେ ତୁମ ଅବସ୍ଥା କ'ଣ ହେବ ? ତୁମେ ବ ସେଥିପା ଖାଇବ ନା କ'ଣ ? ପୁଅର୍ ସୁ—ତୁମ ଆତ୍ମା କଳୁ ଖୁବ୍ ଛଟପଟ ହେବ । ମୋ' ହାତରନ୍ଧା ପଲଉ ପାଏସ୍‌କୁ ୱ୍‌ର ହେବ ଖାଲି ।"

ମୁଣ୍ଡ ଭିତରେ କେଉଁଠି କେମିତି ଗୋଟାଏ ବିସ୍ଫୋରଣ ଘଟିଗଲା ସିଦ୍ଧାର୍ଥଙ୍କର । କ୍ଷଣିକର ଉତ୍ତେଜନାରେ ବାହ୍ୟଜ୍ଞାନଶୂନ୍ୟ ହୋଇପଡ଼ିଲେ ସେ । "ଓଃ ଫର୍ ହେଭେନ୍ସ ସେକ୍ ବି ସିରିୟସ୍, ଏମିତି ହାଲୁକା ଭାବରେ କଥା କହି କଥା ଟାଳିବାକୁ ଦସନ । ଆଜି ଜାଣିଲି, ଅଭିଷେକର ଉନ୍ନତି ପାଇଁ ତୁମର ଟିକିଏ ବି ଆଗ୍ରହ ନାହିଁ ।"

ଗ୍ରେଷଣ ଆଘାତ ପାଇଲେ ମିନା । କିଛି ସମୟ ଚୁପ୍ ହୋଇ ବସିରହିଲେ ସେଇଠି ଖଟ ଉପରେ । ତା'ପରେ ଧୀରେ ଧୀରେ ବାହାର ଆସିଲେ ବାହାରକୁ ସ୍ୱାମୀଙ୍କୁ ଏକ ଅକୁହା ମନସ୍ତାପରେ ସନ୍ତୁଳିବା ପାଇଁ ଛାଡ଼ିଦେଇ ।

"ମିନା ଡିଅର୍, ରଗିଛ ? ମୋର ବହୁତ ଭୁଲ୍ ହୋଇ ଯାଇଛି ।" ପତ୍ନୀଙ୍କ କାନ୍ଧ ଉପରେ ହାତ ରଖିଲେ ସିଦ୍ଧାର୍ଥ ।

"ବସ ।" —ମୁଣ୍ଡ ଉପରକୁ ଟେକ ସାମ୍ନା ଚୌକି ଆଡ଼କୁ ମିନା ଇଙ୍ଗିତ କଲେ ।

"ଓଃ ମିନା, ମିନା ମୋ ଉପରେ ବିରକ୍ତ ହୁଅ, ଗାଳିଦିଅ, କିନ୍ତୁ ଏମିତି ଚୁପ୍ ରହିଯାଅନା ତୁମେ । ମତେ ଟିକିଏ ବୁଝିବାକୁ ଚେଷ୍ଟା କର, ମୋ'ଠାରୁ ଏମିତି ଦୂରେଇଯାଅନାହିଁ ।"

କିଛି କହିପାରୁନଥିଲେ ସିଦ୍ଧାର୍ଥ । କେବେ ରାଗୁ ନଥିବା ଏଇ ହସଖୁସିଆ ନାରୀଟିକୁ ସେ ଆଘାତ ଦେଇ ପାରିଲେ କିପରି ?

ଅସହ୍ୟ ଏକ ନୀରବତା । ଏତେ ପାଖରେ ଥାଇ ମଧ୍ୟ ପତ୍ନୀଙ୍କୁ ସେ ଛୁଇଁପାରୁନଥିଲେ । ଏ କଷ୍ଟର ଯେ ତୁଳନା ନାହିଁ ।

ପୁଣି ଥରେ ମୁହଁ ଖୋଲଲେ ସେ, "ମୋର ଭୁଲ୍ ହୋଇଯାଇଛି, ରାଣୀ ! ଅଉ ମୋ ଉପରେ ରାଗନ ।"

ଶୁଖିଲା ହସଟିଏ ଖେଳିଗଲା ମିନାଙ୍କ ଓଠରେ । "ତୁମର ତ କୌଣସି ଭୁଲ ନାହିଁ, କ୍ଷମା କାହିଁକି ମାଗୁଛ ?"

ଆଶ୍ଚର୍ଯ୍ୟ ! ତଥାପି ତାଙ୍କ ମନରେ ରାଗ ନାହିଁ ? ସ୍ତ୍ରୀଟି ତାଙ୍କର ଯେ କି ଉପାଦାନରେ ଗଢ଼ା ବୁଝିପାରୁନଥିଲେ ସିଦ୍ଧାର୍ଥ ।

"ତୁମେ ଅଭିଷେକକୁ ବୋର୍ଡିଂ ସ୍କୁଲକୁ ପଠାଇବାକୁ ଚାହଁ ତ ? ବେଶ୍, ତୁମର କଥା ରହିବ । ଯେକୌଣସି ସ୍କୁଲକୁ ପଠାଅ, ମୋର ସେ ବିଷୟରେ କିଛି କହିବାର ନାହିଁ । କିନ୍ତୁ ଗୋଟାଏ ସର୍ତ୍ତରେ···ସ୍କୁଲଟି ପ୍ରଥମେ ତୁମ ମନକୁ ପାଇବା ଦରକାର । ତା'ପରେ··· ତୁମେ ଯାହା ଚାହୁଁଛ ସେଇଆ ହେବ ।" ହସିଲେ ମିନା ।

ଅତି ଖୁସିରେ ପତ୍ନୀଙ୍କର ଦୁଇ ହାତକୁ ଜାବୁଡ଼ିଧରିଲେ ସିଦ୍ଧାର୍ଥ । ବିଜେତାର ଗର୍ବରେ ନୁହଁ, ସବୁ ଫେରପାଇବାର ପୂର୍ଣ୍ଣତାରେ ।

× × × ×

ପାଲମ ଏଆର୍‌ପୋର୍ଟରୁ ସକାଳ ସାତଟାବେଳେ ଯେତେବେଳେ ଦିଲ୍ଲୀ-ଗ୍ୱାଲିଅର ଫ୍ଲାଇଟ୍ ଟେକ୍ ଅପ୍ କଲା, ସେଇଦିନର ଘଟଣା ସବୁ ମନେପଡ଼ୁଥିଲା ସିଦ୍ଧାର୍ଥଙ୍କର । କାହିଁ ଦିନମାସ ତଳର ଘଟଣା, କାଲି ପରି ଲାଗୁଛି । ତାଙ୍କର ଏ ଯେଉଁ ଆଗ୍ରହ, ତା'ର ମାନେ ବୁଝନ୍ତି ନାହିଁ ମିନା । ଅବଶ୍ୟ ଫୁଲବାଣିର ଗୋଟାଏ ଅନାମଧେୟ ସରକାରୀ ବିଦ୍ୟାଳୟରେ ସମସ୍ତ ସ୍କୁଲ୍ ଜୀବନଟା କଟାଇବା ପରେ ମଧ୍ୟ ତାଙ୍କର କୌଣସି ଅସୁବିଧା ହୋଇ ନଥିଲା । ଜୀବନରେ ସେ ଆଜି ବେଶ୍ ସୁପ୍ରତିଷ୍ଠିତ, ଖଡ଼ଗପୁର ଆଇ. ଆଇ. ଟି.ରୁ ଇଞ୍ଜିନିୟରିଙ୍ଗ୍ ପାଶ୍ କରିବା ପରେ ପରେ ହିଁ ଗୋଟାଏ କମ୍ପାନୀର ଫାର୍ମରେ ଚାକିରି ମିଳିଯାଇଥିଲା ତାଙ୍କୁ । ବାର ବର୍ଷ ପରେ ସେ ଆଜି କମ୍ପାନୀର ରିଜିଓନାଲ ମ୍ୟାନେଜର । ଏ ଦୃଷ୍ଟାନ୍ତ ଦିଅନ୍ତି ମିନା । କିନ୍ତୁ ତାଙ୍କ ବେଳର ସମୟ ଥିଲା ଭିନ୍ନ । ତାଙ୍କ ଭଳି ଅଭିଷେକର ଜୀବନଟା ଯେ ଗଢ଼ିହୋଇଯିବ, ଏ କଥାର ଗ୍ୟାରେଣ୍ଟି ଦେବ କିଏ ?

ହସିଲେ ସିଦ୍ଧାର୍ଥ । ଏତେ ଦିନ ପରେ ଆଜି ସୁବିଧା ମିଳିଛି ଗୋଟାଏ ପବ୍ଲିକ୍ ସ୍କୁଲ ଦେଖିବାକୁ, ଯେଉଁଠି ହିଁ ମନ ସ୍ଥିର ହୋଇଯିବ । ମନେ ମନେ ଧନ୍ୟବାଦ ଦେଉଥିଲେ ମ୍ୟାନେଜିଙ୍ଗ୍ ଡାଇରେକ୍ଟରଙ୍କୁ ଏମିତି ଗୋଟାଏ ପ୍ରୋଜେକ୍ଟ୍‌ର ଦାୟିତ୍ୱ ତାଙ୍କୁ ଦେଇଥିବାରୁ ।

ଗ୍ୱାଲିଅର ରାଜପରିବାରଙ୍କ ଆଶୀର୍ବାଦ ନେଇ ଗ୍ୱାଲିଅର ଦୁର୍ଗରେ ପ୍ରତିଷ୍ଠିତ ପ୍ରସିଦ୍ଧ ସିନ୍ଧିଆ ସ୍କୁଲକୁ ତାଙ୍କର ଏଇ ଯାତ୍ରା । ପାଶ୍ଚାତ୍ୟ ଶିକ୍ଷାନୁଷ୍ଠାନମାନଙ୍କ ତୁଳନାରେ ଭାରତୀୟ

ଶିକ୍ଷାନୁଷ୍ଠାନମାନ ଅନେକ ପଛରେ । ସିନ୍ଧିଆ ସ୍କୁଲକୁ ବିଦେଶର ଶ୍ରେଷ୍ଠ ବିଦ୍ୟାଳୟମାନଙ୍କ ସହିତ ସମତୁଲ କରିବା ପାଇଁ ସ୍କୁଲର ମ୍ୟାନେଜିଂ କମିଟି ସ୍ଥିର କରିଛନ୍ତି । ବିବିଧ ନୂତନ ପାଠ୍ୟକ୍ରମର ଆରମ୍ଭ କରାହେବା ପାଇଁ ଯୋଜନା କରାହେଉଛି; ଯାହାକି ଭବିଷ୍ୟତରେ ବିଦ୍ୟାଳୟର ଛାତ୍ରମାନଙ୍କୁ ଉପଯୁକ୍ତ ଜୀବିକା ଗ୍ରହଣ କରିନେବାରେ ସାହାଯ୍ୟ କରିବ । ତନ୍ମଧ୍ୟରେ କଂପ୍ୟୁଟରର କାର୍ଯ୍ୟକ୍ରମ ଅନ୍ୟତମ । ସେଇଥିପାଇଁ ସିଦ୍ଧାର୍ଥଙ୍କ କମ୍ପାନୀ ଅନେକ ଆଗ୍ରହ ପ୍ରକାଶ କରିଥିଲା । ନିଜେ ସିଦ୍ଧାର୍ଥ ଏବଂ ତାଙ୍କ ଚେୟାରମ୍ୟାନ୍ ଏ ପ୍ରୋଜେକ୍ଟରେ ଉତ୍ସାହିତ ହୋଇ ଖୁବ୍ କମ୍ ଦାମ୍‌ରେ କଂପ୍ୟୁଟରଟିଏ ବିକ୍ରି କରିବା ପାଇଁ ରାଜି ହୋଇଯାଇଥିଲେ । ସେ ସମ୍ବନ୍ଧରେ ଶେଷ ଆଲୋଚନା କରିବାକୁ ଯାଉଥିଲେ ସିଦ୍ଧାର୍ଥ ।

ସ୍କୁଲରେ କଂପ୍ୟୁଟର ଲଗିଲେ ଅନେକ ସୁବିଧା ହେବ । କେବଳ ଯେ ଉତ୍ସାହୀ ଛାତ୍ରମାନେ କଂପ୍ୟୁଟର ବିଜ୍ଞାନ ସମ୍ପର୍କୀୟ ଜ୍ଞାନ ଆହରଣ କରିବେ, ତା' ନୁହଁ, କଂପ୍ୟୁଟର ବ୍ୟବହାର କରି ପିଲାଙ୍କୁ ନୂତନ ପ୍ରଣାଳୀରେ ପଢ଼ାଯାଇ ପାରିବ । ଛାତ୍ରମାନେ ତେଣୁ ନିଶ୍ଚିତ ଭାବରେ ଆଗ୍ରହୀ ହେବେ । କଂପ୍ୟୁଟରର ଉପଯୋଗ ପ୍ରଶାସନିକ କ୍ଷେତ୍ରରେ ମଧ୍ୟ କରାଯାଇ ପାରିବ । ସେଇଥିପାଇଁ ସ୍କୁଲର ମ୍ୟାନେଜିଂ ବୋର୍ଡ଼ ଏତେ ଆଗ୍ରହ ପ୍ରକାଶ କରିଥିଲେ ।

ଏଥର ସିଦ୍ଧାର୍ଥଙ୍କ ରହଣି ମାତ୍ର ଦୁଇଦିନ । ପ୍ରଥମ ଦିନ ବିଦ୍ୟାଳୟର ଅଧ୍ୟକ୍ଷ ଏବଂ ଅନ୍ୟ ଶିକ୍ଷକମାନଙ୍କ ସହିତ ଆଲୋଚନା କରିବାକୁ ହେବ । ତା'ପରଦିନ ସେ ଛାତ୍ରମାନଙ୍କୁ କଂପ୍ୟୁଟର ଉପରେ ଭାଷଣ ଦେବେ ବିଦ୍ୟାଳୟ ଅଡିଟୋରିୟମ୍‌ରେ ।

ଯା' ପୂର୍ବରୁ ଯେଉଁ ଦୁଇ-ତିନିଥର ସିନ୍ଧିଆ ସ୍କୁଲକୁ ଆସିଛନ୍ତି ସିଦ୍ଧାର୍ଥ, ସବୁ ତାଙ୍କୁ ଖୁବ୍ ଭଲ ଲାଗିଛି । ଛାତ୍ରମାନଙ୍କର ବ୍ୟବହାର, ସ୍କୁଲର ବାତାବରଣ, ସେଠାକାର ଶିକ୍ଷାର ମାନ ଏବଂ ଶିକ୍ଷା ବ୍ୟତୀତ ଛାତ୍ରମାନଙ୍କ ସର୍ବାଙ୍ଗୀନ ଉନ୍ନତି ପାଇଁ ମିଳୁଥିବା ବିଭିନ୍ନ ସୁବିଧା—ସବୁ କିଛି ଦେଖିବା ପରେ ସେ ଅନେକଟା ଠିକ୍ କରିନେଇଥିଲେ ଜଣେଇ ଦେବେ ମିତାଙ୍କୁ, ସ୍କୁଲଟି ତାଙ୍କ ମନକୁ ଖୁବ୍ ପାଇଛି—ଅଭିଷେକକୁ ସେ ଏଇଠି ହିଁ ଛାଡ଼ିବେ ।

ସିଦ୍ଧାର୍ଥଙ୍କ ଭାବନାରେ ବାଧା ସୃଷ୍ଟି କରି ମୁଣ୍ଡ ଉପରେ ଥିବା ଆଲୁଅଟି ଜଳିଉଠିଲା । ଏୟାର ହୋଷ୍ଟେସ୍‌ଙ୍କ ସ୍ୱର ଭାସିଆସିଲା, "ଆଉ ଅଳ୍ପ ସମୟ ପରେ ଆମେ ଗ୍ୱାଲିଅରରେ ଅବତରଣ କରିବୁ । ନିଜନିଜର ଅଣ୍ଟାର ବେଲ୍ଟ ବାନ୍ଧିଦିଅନ୍ତୁ । ଦୟାକରି ଧୂମପାନ କରନ୍ତୁ ନାହିଁ ।"

ଅଣ୍ଟାରେ ବେଲ୍ଟ ବାନ୍ଧି ଝର୍କା ଦେଇ ବାହାରକୁ ଚାହିଁଲେ ସିଦ୍ଧାର୍ଥ । ବାହାରେ ନୀଳ ଧଳା ବାଦଲର ଭିଡ଼ । ବାଦଲର ଫାଙ୍କରୁ ତଳେ ଧରଣୀର ସବୁଜ ବକ୍ଷ ଏ ପର୍ଯ୍ୟନ୍ତ ହସିନି । ବାସ୍, ଆଉ କେଇ ମିନିଟ୍‌ର କଥାମାତ୍ର—ତା'ପରେ ଗ୍ୱାଲିଅର ଏଆରପୋର୍ଟ । ତା'ର ଅଳ୍ପ ସମୟ ପରେ ପୁଣି ସିନ୍ଧିଆ ସ୍କୁଲ ।

× × × ×

ସୁନ୍ଦର କଟିଗଲା ଦୁଇଟି ଦିନ । ଶିକ୍ଷକ ତଥା ପ୍ରିନସିପାଲ୍‌ଙ୍କ ସହିତ ଆଲୋଚନାଟା ବେଶ୍

ସକ୍‌ସେସ୍‌ଫୁଲ୍ ହୋଇଛୁ । କମ୍ପାନୀର ଗୋଟାଏ କଂପ୍ୟୁଟର ବିକି ହୋଇଗଲା ବୋଲି ନୁହେଁ, ସ୍କୁଲ୍ କଂପ୍ୟୁଟରାଇଜେସନ୍ ଦିଗରେ ପ୍ରଥମ ପାଦ ରଖିଥିବାର ଗୌରବରେ ଉତ୍ଫୁଲ୍ଲ ହୋଇଯାଇଥିଲେ ସିଦ୍ଧାର୍ଥ । ବିଦ୍ୟାଳୟର ଇତିହାସ ଶିକ୍ଷକଙ୍କର ବ୍ୟଙ୍ଗୋକ୍ତି ମନେପଡ଼ି-ଯାଉଥିଲା ତାଙ୍କର, "କଂପ୍ୟୁଟର ଯଦି ଛାତ୍ରମାନଙ୍କୁ ଶିକ୍ଷା ଦେଇପାରିବ, ତେବେ ଆମ ଶିକ୍ଷକମାନଙ୍କର ଆଉ ପ୍ରୟୋଜନ କ'ଣ ?"

ହସି ଉତ୍ତର ଦେଇଥିଲେ ସିଦ୍ଧାର୍ଥ, "ବଜାରରେ ମିଳୁଥିବା ବିଭିନ୍ନ କମ୍ପାନୀର ବେବି ଫୁଡ଼୍ କ'ଣ ମା' କ୍ଷୀରର ଅଭାବ ପୂରଣ କରିପାରିବ ?"

ଅନ୍ୟମାନଙ୍କର "ହିଅର୍, ହିଅର୍" ଏବଂ କରତାଳିରେ ଲାଲ୍ ପଡ଼ିଯାଇଥିଲା ପ୍ରଶ୍ନକର୍ତ୍ତା ଶିକ୍ଷକଙ୍କର ମୁହଁ ।

ସ୍କୁଲର ଛାତ୍ରମାନଙ୍କୁ ଦେଇଥିବା ଭାଷଣ ମଧ୍ୟ ଖୁବ୍ ଭଲ ହେଲା । ଭାଷଣରେ ସମୟ ଥିଲା ଘଣ୍ଟାଏ; କିନ୍ତୁ ଛାତ୍ରମାନଙ୍କର କଂପ୍ୟୁଟର୍ ସମ୍ପର୍କରେ ବିଭିନ୍ନ କୌତୂହଳୀ ପ୍ରଶ୍ନ ମଧ୍ୟରେ ସମୟର ସୀମା ଯେ କେତେବେଳେ ଦୁଇଘଣ୍ଟା ଟପିଯାଇଥିଲା, ତା' ସିଦ୍ଧାର୍ଥ ଜାଣିପାରି ନଥିଲେ । ଏତେ ଶ୍ରେଷ୍ଠ ଶ୍ରେଷ୍ଠ ସ୍କୁଲପିଲାଙ୍କଠାରୁ ଅନ୍ତତଃ ସେ ଏମିତି ଇଣ୍ଟେଲିଜେଣ୍ଟ୍ ପ୍ରଶ୍ନ ଆଶା କରି ନଥିଲେ । ଠିକ୍ ବିସ୍ମିତ ନୁହେଁ, ଛାତ୍ରମାନଙ୍କର ବୌଦ୍ଧିକ ଚିନ୍ତାଧାରାର ମାନଦଣ୍ଡ ଦେଖି ଅଭିଭୂତ ହୋଇପଡ଼ିଥିଲେ ସେ । ସ୍କୁଲ ଅଡିଟୋରିୟମ୍‌ର ପେଣ୍ଡାଲ୍‌ରେ ଠିଆହୋଇ ଭାଷଣ ଶେଷ କଲାବେଳେ ସେ ସ୍ଥିର କରିନେଇଥିଲେ ଅଭିଷେକକୁ ଆସନ୍ତା ସେସନ୍‌ରେ ଏଇଠାକୁ ପଠେଇବେ ।

ପ୍ରିନ୍‌ସିପାଲ୍‌ଙ୍କ ସହିତ କରମର୍ଦ୍ଦନ କରି କାର୍ ଆଡ଼କୁ ଆଗେଇଗଲେ ସିଦ୍ଧାର୍ଥ । ସନ୍ଧ୍ୟା ସାତଟାରେ ଫ୍ଲାଇଟ୍ । ସମ୍ଭ୍ରମର ସହିତ କାର୍‌ର ପଛ କବାଟ ଖୋଲି ଧରିଛି ସ୍କୁଲର ଡ୍ରାଇଭର ସୁଖ୍‌ଲାଲ । ଅଥଚ ଆଶ୍ଚର୍ଯ୍ୟ, ସିଦ୍ଧାର୍ଥ ଆସି ସାମ୍‌ନାରେ ବସିଗଲେ । ଏଇଟା ତାଙ୍କର ପୁରୁଣା ଅଭ୍ୟାସ । ଫିଆଟ୍ କାର୍‌ର ପଛପଟରେ ଆଦୌ ବସିପାରନ୍ତି ନାହିଁ ସେ, କେମିତି ଜାକି ହୋଇଗଲା ପରି ଲାଗେ ତାଙ୍କୁ ।

"ଏକ୍‌ସକ୍ୟୁଜ୍ ମି ମିଷ୍ଟର ଦାସ, ଆମର ଜଣେ ଛାତ୍ର ଏକା ଫ୍ଲାଇଟ୍‌ରେ ଦିଲ୍ଲୀ ଯିବ, ତା' ଭଉଣୀ ବାହାଘର । ଆପଣଙ୍କର ଯଦି କୌଣସି ଅସୁବିଧା ନହୁଏ, ତେବେ ସେ ଏଇ ଗାଡ଼ିରେ ଏଆର୍‌ପୋର୍ଟ ଚାଲିଯାଆନ୍ତା—ସାମାନ୍ୟ କୁଣ୍ଠିତ ଭାବରେ କହିଲେ ପ୍ରିନ୍‌ସିପାଲ୍ ।

"ଆରେ ଏଥିରେ ଅସୁବିଧା କ'ଣ ? ମୁଁ ଯାଉଛି ଏଆର୍‌ପୋର୍ଟ, ସେ ମଧ୍ୟ ସେଇଠିକୁ ଯିବ । ଡାକି ଦିଅନ୍ତୁ ନା' ଆପଣଙ୍କ ଛାତ୍ରକୁ ।"

କାନ୍ଧରେ କିଟ୍‌ବ୍ୟାଗ୍‌ଟିଏ ପକାଇ କଡ଼କିଆ ହୋଇ ଠିଆ ହୋଇଥିଲା ଛାତ୍ରଜଣକ, ସମ୍ଭବତଃ ସିଦ୍ଧାର୍ଥଙ୍କ ଉତ୍ତର ପାଇଁ ଅପେକ୍ଷା କରି ରହିଥିଲା । ସିଦ୍ଧାର୍ଥଙ୍କ ପାଟିରୁ କଥା ସରୁ ସରୁ ଆଗେଇ ଆସି ନଇଁପଡ଼ି ପ୍ରିନ୍‌ସିପାଲଙ୍କ ପାଦଧୂଳି ନେଲା ସେ—"ସି ୟୁ ଅନ୍ ଟେନ୍‌ଥ ସାର୍ ।"

ଅବାକ୍ ହୋଇ ବାହାରର ଏ ଦୃଶ୍ୟ ଦେଖୁଥିଲେ ସିଦ୍ଧାର୍ଥ । ଆଶ୍ଚର୍ଯ୍ୟ ! ଏବେ ବ ଗୁରୁଭକ୍ତ ବଞ୍ଚିରହିଛୁ ଏ ଦେଶରେ ? ବାଃ ।

ପଛ କବାଟ ଖୋଲି କାର୍ ଭିତରେ ବସିଲି ପିଲାଟି । ନମସ୍କାର ଜଣେଇ କହିଲା ତା' ନାଁ ଶୋଭନ ।

ଗ୍ୱାଲିଅର ଦୁର୍ଗ ଭିତରୁ କାର୍ ବାହାରିଗଲା । ସହର ଭିତର ଦେଇ ଯିବା ସମୟରେ ସିଦ୍ଧାର୍ଥଙ୍କର ମନେପଡ଼ିଗଲା ଯେ ଝିଅ ଆସିବା ବେଳେ କହିଥିଲା ତା' ପାଇଁ ମିଠା ନେଇ ଯିବାକୁ ।

"ଗାଡ଼ି ରୋକ୍ ନା"

ଗାଡ଼ିରୁ ଓହ୍ଲାଇବା ସମୟରେ ସେ ଶୋଭନକୁ କହିଲେ, "ମୋର ସାମାନ୍ୟ କିଣାକିଣି ଅଛି । ତୁମେ ସବୁ ବୁଲିଁ, ଏଇଠି ଟିକଏ ବୁଲିବୁଲି କରିପାର ।"

"ଧନ୍ୟବାଦ ସାର୍"—କୃତଜ୍ଞତାପୂର୍ଣ୍ଣ ଚାହାଣୀ ଦେଇ ବାହାରକୁ ଚାଲିଆସିଲା ସେ ।

ମିଠା କିଣି ଫେରୁ ଫେରୁ ଗୋଟାଏ ଦୋକାନରେ ମିଲାଙ୍କ ପାଇଁ ଶାଢ଼ିଟିଏ ପସନ୍ଦ ହୋଇଗଲା । ସେଇଟା ପ୍ୟାକ୍ କରି ତରତର ହୋଇ ଫେରିବା ସମୟରେ ଗୋଟାଏ ଚହ୍ଲା ଚହ୍ଲା ସ୍ୱରରେ କ୍ଷଣେ ରହି ବାଁ ପାଖ ଦୋକାନକୁ ଚାହିଁଲେ ।

ସ୍ପଷ୍ଟ ହିନ୍ଦୀରେ ଦୋକାନୀକୁ ପଚାରୁଛି ଶୋଭନ, "ୟହାଁ ଏକ ଦୁକାନ୍ ମେଁ ଚଲେଞ୍ଜ୍ ବୟର୍ ମିଲ୍ତା ଥି—ସହି ହୈ ନା ?"

"ଜୀ" ମୁଣ୍ଡ ଟଙ୍ଗାରିଦେଲା ଦୋକାନୀଟି ।

"ଦୋ' ବଟଲ୍ ବୟର୍ ଦୋ ୟାର୍—ବିଲ୍କୁଲ ଥଣ୍ଡା ।"

ଫ୍ରିଜର ଭିତରୁ ବାହାର କରି କାଉଣ୍ଟର ଉପରେ ଦୁଇ ବୋତଲ ରଖିଲା ଦୋକାନୀ । କିଟ୍ବ୍ୟାଗ୍ ଖୋଲି ବୋତଲ ଭିତରେ ରଖିବାର ଆୟୋଜନ କଲା ଶୋଭନ ।

ସବୁ ଦେଖି ନଦେଖିବା ଭଳି କାର୍ ପାଖକୁ ଫେରିଆସିଲେ ସିଦ୍ଧାର୍ଥ । ମୁହୂର୍ତ୍ତିକ ଆଗର ସେ ଅନାକାଂକ୍ଷିତ ଘଟଣାକୁ ମନ ଭିତରକୁ ଠେଲି ଲୁଚେଇ ଦେଉଥିଲେ ଯେମିତି ।

ଖୁବ୍ ବଡ଼ ବଡ଼ ପାଦ ପକାଇ ଶୋଭନ ଆସି ପହଞ୍ଚିଗଲା । "ମୁଁ ଖୁବ୍ ଦୁଃଖିତ ସାର୍—ବହୁ ଦୋକାନରେ ବହୁ ଦେଖୁ ଦେଖୁ ମୋର ସାମାନ୍ୟ ଡେରିହୋଇଗଲା ।" ହାତରେ ଧରିଥିବା କ'ଣ ଗୋଟାଏ ପଲିକା ଆଡ଼କୁ ଇଙ୍ଗିତ କଲା ସେ ।

କିଛି ନକହି ସାମାନ୍ୟ ହସିଲେ ସିଦ୍ଧାର୍ଥ ।

× × × ×

ଏଆର୍ପୋର୍ଟରେ ଆସି ପହଞ୍ଚିବା ବେଳକୁ ଛଅଟା ପନ୍ଦର । ତରତର ହୋଇ କାଉଣ୍ଟର ଆଡ଼କୁ ଆଗେଇଗଲେ ସିଦ୍ଧାର୍ଥ । କାଉଣ୍ଟରରେ ପଚାରି ଜାଣିଲେ ଯେ ଫ୍ଲାଇଟ ଆହୁରି ଦୁଇ ଘଣ୍ଟା ଡେରିରେ ଆସିବ । ଓଃ—ଫ୍ଲାଇଟ ପାଇଁ ଅପେକ୍ଷା କରି ବସିବାଟା ଯେ କି ବିରକ୍ତିକର ! ଛୋଟ ଏଆର ପୋର୍ଟ, ଏଠି କରିବାର ବା ଦେଖିବାର କିଛି ନାହିଁ । ଲାଉଞ୍ଜରେ ପଡ଼ିଥିବା

ଚୌକିରେ ଗୋଡ଼ ଲମ୍ବାଇ ବସି ଲୋକମାନଙ୍କର ଗତିବିଧି ପର୍ଯ୍ୟବେକ୍ଷଣ କରିବା ଆରମ୍ଭ କଲେ ସେ । କିନ୍ତୁ ଖୁବ୍ ଶୀଘ୍ର ବିରକ୍ତ ହୋଇପଡ଼ିଲେ । କେତେ ଜଣ ବା ଲୋକ ? ସେଇ ଦିଲ୍ଲୀ ଫ୍ଲାଇଟ୍‌କୁ ଅପେକ୍ଷା କରିଥିବା ଦଶ-ବାରଜଣ ଲୋକ କେବଳ ଏପାଖ ସେପାଖ ହେଉଛନ୍ତି ।

ପକେଟ୍‌ରେ ହାତ ମାରିଲେ ସିଦ୍ଧାର୍ଥ । ସିଗାରେଟ୍ ପ୍ୟାକେଟ୍ ଖାଲି । ଏଆରପୋର୍ଟ ପାଖରେ ଗ୍ରେଟ ପାନ ସିଗାରେଟ୍ ଦୋକାନଟିଏ ଦେଖିଥିବା ଭଳି ତାଙ୍କର ମନେପଡ଼ିଲା । ସିଗାରେଟ୍ କିଣିବାରେ ତ କିଛି ସମୟ ନଷ୍ଟ କରାଯାଇପାରେ ।

ମୁହଁରେ ସିଗାରେଟ ଲଗେଇ ଫେରୁ ଫେରୁ ସେ ଭାବୁଥିଲେ ବିଚରା ଡ୍ରାଇଭର୍ କଥା । ତାଙ୍କରି ପାଇଁ ଅପେକ୍ଷା କରି ସେ ବସି ରହିବ ଗୁଡ଼ାଏ ସମୟ । ଆସିବା ସମୟରେ ପ୍ରିନ୍‌ସିପାଲଙ୍କ ବାରମ୍ବାର ତାଗିଦା, "ସାହେବଙ୍କ ଉଡ଼ାଜାହାଜ ଯାଇସାରିବା ପରେ ଆସିବ, ସୁଖଲାଲ୍ ।"

ସିଦ୍ଧାର୍ଥଙ୍କ ବାରଣ ପ୍ରତି କର୍ଣ୍ଣପାତ କରିନଥିଲେ ସେ, "ଆପଣଙ୍କୁ ବୋଧହୁଏ ଜଣାନାହିଁ ମିଷ୍ଟର ଦାସ, ଗ୍ୱାଲିଅର୍ ଏଆର୍‌ପୋର୍ଟ ଖୁବ୍ ଗ୍ରେଟ ତ, ହଠାତ୍ ବିନା କିଛି କାରଣରେ ଏଠାରୁ ସମସ୍ତ ଫ୍ଲାଇଟ୍ ବାତିଲ ହୋଇଯାଏ । ଏଆର୍‌ପୋର୍ଟ ପୁଣି ଏମିତି ଜାଗାରେ ଯେ ଆପଣ ଫେରିବାକୁ ଚାହିଁଲେ ମଧ୍ୟ ଟ୍ୟାକ୍‌ସି ବା ଅଟୋ-ରିକ୍‌ସା କିଛି ମିଳେନାହିଁ । ବରଂ ସୁଖଲାଲ କିଛି ସମୟ ରହିଯିବ ।"

ଆଜି ତ ଫ୍ଲାଇଟ୍ ବାତିଲ୍ ହେବାର କୌଣସି କାରଣ ନାହିଁ । କାଉଣ୍ଟରରେ ଥିବା ଅଫିସର୍ ଜଣକ ଜୋର୍‌ଦେଇ କହିଛନ୍ତି ବିମାନ ଆସିବ ନିଶ୍ଚୟ; ତେବେ ଡେରି ହୋଇ-ଯାଇପାରେ । ତା'ହେଲେ ସୁଖଲାଲ ରହିବ କାହିଁକି ? ତା'ର ବି ଘର ପରିବାର ଅଛି, ବିଚରା କେତେ ସମୟ ବା ପାଏ ସେମାନଙ୍କ ସାଙ୍ଗରେ କଟାଇବାକୁ !

ଥରେ ନିଷ୍ପତ୍ତି ନେଇସିବା ପରେ ଆଗେଇଗଲେ ସିଦ୍ଧାର୍ଥ ଯେଉଁଠାରେ ପ୍ରାଇଭେଟ୍ କାର୍‌ଟି ରହିଥିଲା । ଗୋଟାଏ ଉଚ୍ଚ କଣ୍ଠର ସମ୍ମିଳିତ ହାସ୍ୟସ୍ୱର ଶୁଣି ରହିଗଲେ ସେ । "ଶଳା ବୁଲ୍‌ଡଗ୍, ମତେ ପୁଣି କହିଲା ସେସନ୍ ମଝିରୁ ଛୁଟିନେଇ ଭଉଣୀ ବାହାଘରକୁ ଯାଇପାରିବିନି । ନିଜେ ଯେମିତି ରବିବାରଟାରେ ବାହାହୋଇଥିବ । ଡ୍ୟାଡ଼ି ବାଧ୍ୟ କରି ନଥିଲେ ମତେ ଆଦୌ ଛାଡ଼ିନଥାଆନ୍ତା ।"

ଏଇଟା ତ ଶୋଭନ୍‌ର ସ୍ୱର !

ହସ ହସ କରି ଶୁଣାଗଲା ଡ୍ରାଇଭର୍ ସୁଖଲାଲ୍‌ର, "ଯୋଶୀ ସାହେବଙ୍କର ବଢ଼ିଆ ନାଁଟାଏ ଦେଇଛନ୍ତି ।"

"ମୁଁ କ'ଣ ନାଁ ଦେଇଛି ? ସ୍କୁଲ୍‌ସାକର ସମସ୍ତେ ତ ତାକୁ ସେୟା ଡାକନ୍ତି, ଅବଶ୍ୟ ମୁହଁ ଉପରେ ନୁହଁ । କାହିଁକି ଡାକିବେନି, ମୁହଁଟା ତ ଠିକ୍ ବୁଲ୍‌ଡଗ୍ ପରି, ଖୁବ୍‌ଜୋର୍‌ରେ ଯେମିତି କେଉଁ କାନ୍ଥରେ ପିଚିହୋଇଯାଇଛି ।" ଫାଟିପଡ଼ି ହସିବାକୁ ଲାଗିଲା ଶୋଭନ ।

"ତୋ ପାଖରେ ଦିଆସିଲି ଅଛି ? କଣ୍ଟ୍ରୋଲ ସମସ୍ତେ ହେଲା ସିଗାରେଟ୍ ନପିଇ ପାଟିଟା କେମିତି ଲାଗୁଛି।"

ମନେ ମନେ ପ୍ରିନ୍‌ସିପାଲ୍ ଯୋଶୀଙ୍କ ମୁହଁ ମନେପକାଉଥିଲେ ସିଦ୍ଧାର୍ଥ । କେଉଁ ଯୁଗ ତଳେ ଦେଖି ଆସିଥିବା ଗୁରୁଭକ୍ତି କେମିତି ମେକାନିକାଲ୍ ଲାଗୁଥିଲା ତାଙ୍କୁ। ଶିକ୍ଷକଙ୍କ ପାଦ ଛୁଇଁ ପ୍ରଣାମ କରିବାଟା କିଣ୍ଡରଗାର୍ଟେନ୍ ସ୍କୁଲର ଗୋଟାଏ ଆଦର୍ଶ ପ୍ରଥା ।

ଏୟାର୍‌ପୋର୍ଟ ବାହାରେ ଜଳୁଥିବା ଶକ୍ତିଶାଳୀ ମର୍କ୍ୟୁରି ବଲ୍‌ବର ଆଲୋକରେ ସିଦ୍ଧାର୍ଥ କାର୍ ଭିତରଟା ବେଶ୍ ପରିଷ୍କାର ଭାବରେ ଦେଖିପାରୁଥିଲେ । ମନେ ମନେ ସେ ଚିନ୍ତା କରୁଥିଲେ—ଏପରି ପରିସ୍ଥିତିରେ ଡ୍ରାଇଭର୍ ସାଙ୍ଗରେ କଥାବାର୍ତ୍ତା କରିବାକୁ ଯିବାଟା ଉଚିତ ହେବ କି ନାହିଁ । ହଠାତ୍ ସାମ୍ନାରେ କ'ଣଟାଏ ଆସି ପଡ଼ିଲା । ସାମାନ୍ୟ ନଇଁପଡ଼ିଲେ ସେ । ବିୟର୍ ବୋତଲର ଠିପିଟା ଖୁବ୍ ଅସହାୟ ଭାବରେ ଗଡ଼ୁଛି ପାଦ ପାଖରେ ତାଙ୍କର । ନା—ସ୍ୱା'ପରେ ଲାଉଞ୍ଜକୁ ଫେରିଯିବା ଭଲ । ବୁଲିପଡ଼ିଲେ ସିଦ୍ଧାର୍ଥ ।

"ୟା ର୍, ତୁନେ କଭି ବିୟର୍ ପି ହେ ?" ଅନ୍ଧକାରରେ ଭାସିଆସିଲା ଶୋଭନ୍‌ର ସ୍ୱର । ଡ୍ରାଇଭରକୁ ଏ ପ୍ରଶ୍ନ ତା'ର ।"

"ନେହିଁ, ମୁଝେ ପସନ୍ଦ ନେହିଁ, ଆପ୍ ଲିଜିଏ"—ଭଦ୍ରାମି ଦୃଷ୍ଟିରୁ ବୋଧହୁଏ କହିଲା ସୁଖଲାଲ୍ ।

"ଆବେ କ୍ୟା ବକ୍‌ତା ହୈ, ଲେ ଥୋଡ଼ା ପିଲେ" କ୍ଷଣକର ନୀରବତା । ପୁଣି ଶୋଭନର ସ୍ୱର, "ୟେ ବିୟର୍ ହୈ ତୋ କମାଲ୍ କେ ଚିଜ୍, ପର୍ ଶାଲି ତୋଁଦ ନିକାଲ୍ ଦେତି ହୈ ।"

ବାଃ—କି ସୁନ୍ଦର ଦର୍ଶନ । ଚଉଦ-ପନ୍ଦର ବର୍ଷର ବାଳକ ମୁହଁରୁ ବିୟର୍ ସମ୍ପର୍କରେ ଏମିତି ଗୋଟାଏ ବଡ଼ ମଣିଷଙ୍କ ପରି ଉକ୍ତି କେମିତି ଅପ୍ରାସଙ୍ଗିକ ଲାଗୁଥିଲା ସିଦ୍ଧାର୍ଥଙ୍କୁ । ଲାଉଞ୍ଜ ଆଡ଼କୁ ଆଗେଇ ଯାଉ ଯାଉ ଆଉ ଥରେ ମନେପଡ଼ିଲା ଶୋଭନର ବସ୍ତୁବାଦୀ ଶେଷକଥା ଧାଡ଼ିକ, "ବିୟର୍ ଭଲ ଅପୂର୍ବ ଜିନିଷ ନାହିଁ, କିନ୍ତୁ ଏଥିରେ ପେଟ ବାହାରି ପଡ଼େ ।"

ଗୋଟାଏ ମୁହୂର୍ତ୍ତ ପାଇଁ ସିଦ୍ଧାର୍ଥ କ୍ଳାନ୍ତିରେ ଆଖି ବନ୍ଦ କଲେ । ବନ୍ଦ ଆଖିପତା ତଳୁ ସିନେମାର ପର୍ଦ୍ଦାପରି ଭାସିଆସୁଥିଲା ଅଭିଜ୍ଞେକର ଉନ୍ନତିର ସ୍ୱପ୍ନ । କି ବେଗରେ ହୋଇ ଯାଇ ନଥିଲେ ସେ ଏଇ ରଙ୍ଗୀନ୍ ସ୍ୱପ୍ନରେ । ସ୍ୱପ୍ନଭଙ୍ଗର ଯନ୍ତ୍ରଣାକୁ ମନରୁ ଦୂରେଇ ଦେବାର ଚେଷ୍ଟାକରି ଆଗେଇ ଗଲାବେଳେ ମାଇକ୍ରୋଫୋନ୍‌ରେ ଶୁଣାଗଲା, "ଆଉ ଅଧଘଣ୍ଟାଏ ମଧ୍ୟରେ ଗ୍ୱାଲିୟର୍-ଦିଲ୍ଲୀ ଫ୍ଲାଇଟ୍ ଆସି ପହଞ୍ଚିବ । ଯାତ୍ରୀମାନେ ସୁରକ୍ଷା ଯାଞ୍ଚ ପାଇଁ ଆସିବାକୁ ଅନୁରୋଧ ।"

× × × ×

ଟ୍ୟାକ୍‌ସି ଗେଟ୍ ସାମ୍ନାରେ ରହିବା ଆଗରୁ ଦୂରରୁ ମିନାଙ୍କର ଚହଲା ଯୋରଜେଟ୍ ଫୁଲଆ ପିଲ୍‌କି ଶାଢ଼ି ଦେଖିନେଇଥିଲେ ସିଦ୍ଧାର୍ଥ । ସବୁଥର ଟୁର୍‌ରୁ ଫେରିବାବେଳେ ଏମିତି ଗେଟ୍

ପାଖରେ ପତ୍ନୀ ତାଙ୍କର ଅପେକ୍ଷା କରିରହିଥାଆନ୍ତି । ଟ୍ୟାକ୍‌ସି ରହିବାର ଶବ୍ଦରେ ବୁଲିପଡ଼ିଲେ ମିନତି ।

"ହ୍ୟାଲୋ ଡିଅର୍"—ଡ୍ରାଇଭର୍‌ର ଭଡ଼ା ଗଣୁଗଣୁ ପାଟିକରି ଉଠିଲେ ସିଦ୍ଧାର୍ଥ ।

ଖୁସିରେ ଚକ୍ ଚକ୍ କରିଉଠିଲା ମିନତିଙ୍କ ଆଖି ଦୁଇଟି, "ଏତେ ଡେରି ?"

"ଫ୍ଲାଇଟ୍ ଦୁଇଘଣ୍ଟା ଲେଟ୍ ଥିଲା, କ'ଣ କରିଥାଆନ୍ତି କୁହ ?"

ପତ୍ନୀଙ୍କ କାନ୍ଧରେ ହାତ ପକାଇ ଘର ଭିତରକୁ ଆସିଲେ । ସବୁ ସଜଡ଼ା, ସୁନ୍ଦରଭାବରେ ସାଇତା, ଡାଇନିଂ ଟେବୁଲ୍‌ରେ କାହାର ଅଇଁଠା ପ୍ଲେଟ୍ ପଡ଼ିନି । ଡାଏିଂରୁମ କାର୍ପେଟ୍ ଉପରେ ପିଲାଙ୍କ କମିକ୍ ବା ଖେଳ ଜିନିଷ ଗଡ଼ୁନି । ଖଟଉପରେ ଓଦା ତଉଲିଆ ନାହିଁ ।

ସିଦ୍ଧାର୍ଥ ଜାଣନ୍ତି, ତାଙ୍କର ଟୁର୍‌ରୁ ଫେରିବାର ଥିଲେ ସବୁ କାମ ଛାଡ଼ି ଘର ସଜାଡ଼ି ବସନ୍ତି ମିନତି । ଅନ୍ୟଦିନମାନଙ୍କରେ ଫିଙ୍ଗା ଫୋପାଡ଼ା କରି ଘର ଅପରିଷ୍କାର କରୁଥିବା ପିଲାମାନେ ମଧ୍ୟ ହଠାତ୍ ମା'ଙ୍କର ବାଧ୍ୟ ହୋଇପଡ଼ନ୍ତି । ତାଙ୍କୁ ଆଦର ନେବାର ସମସ୍ତଙ୍କର ଏ ଯେଉଁ ଅକୃତ୍ରିମ ଆଗ୍ରହ, ତା'ର ତୁଳନା କାହିଁ ? ସତରେ, ସଂସାରରେ ଖୋଜିଆସିଲେ ଘର ଭଳି ଜାଗାଟିଏ ମିଳିବ ନାହିଁ ।

"ପିଲାଏ ଶୋଇପଡ଼ିଲେଣି ?"

ହସିଲେ ମିନତି, "ତୁମେ ଟୁର୍‌ରୁ ଫେରିବାର ଥିଲେ କେବେ ଶୁଅନ୍ତି ସେମାନେ ? ଅସୀମ ଏଇ ଟିକିଏ ଆଗରୁ ମୋ ସାଙ୍ଗରେ ଲଢେଇଥିଲା—ବାପା କାହିଁକି ଆସୁନାହାନ୍ତି"—ଢୁଳେଇ ପଡ଼ିଛି ବୋଧହୁଏ ।

କିଛି ନକହି ବଡ଼ପୁଅ ଅଭିଷେକର କୋଠରି ଭିତରକୁ ପଶିଗଲେ ସିଦ୍ଧାର୍ଥ । ଖଟବାଡ଼ରେ ତକିଆ ଦେଇ ଆଉଜି ବସି ଗପ ବହି ପଢ଼ୁଥିଲା ସେ ।

"ହାଏ ୟଙ୍ଗ୍ ମ୍ୟାନ୍ !"

"ବାପା ! କେତେବେଳେ ଆସିଲ ?" ହସିପକେଇଲା ଅଭିଷେକ ।

"ଏଇ ମାତ୍ର । ଆଉ···ପଢ଼ାପଢ଼ି ଠିକ୍ ଚାଲିଛି ତ ? ପରୀକ୍ଷା ଆସିଗଲାଣି ।"

"ହଁ ବାପା ।"

ପର୍ଦ୍ଦା ଟେକି କୋଠରିରୁ ବାହାରି ଯାଉ ଯାଉ କ'ଣ ମନେପଡ଼ିଗଲା ଭଳି ରହିଗଲେ ସିଦ୍ଧାର୍ଥ, "ଆରେ ହଁ, ତୋର ତ ଆସନ୍ତା ମାସରେ ବୋଧହୁଏ ଛୁଟି ?"

"ହଁ, ପରୀକ୍ଷା ପରେ ସମର୍ ବ୍ରେକ୍ ।"

"ଆରମାସ ପାଞ୍ଚ-ଛଅ ତାରିଖ ବେଳକୁ ଆମ କମ୍ପାନୀର ରିଜିଓନାଲ୍ ମ୍ୟାନେଜର୍‌ମାନଙ୍କ କନ୍‌ଫରେନ୍‌ସ ହେବ ଉଦୟପୁରରେ । ଏଥରକ ମୁଁ ତତେ ସାଙ୍ଗରେ ନେଇଯିବି; ଅବଶ୍ୟ ମା'ଙ୍କର ଯଦି କୌଣସି ଆପତ୍ତି ନଥାଏ ।" ମିନତିଙ୍କ ଆଡ଼େ ଚାହିଁଲେ ସିଦ୍ଧାର୍ଥ ।

ମା'ଙ୍କୁ କିଛି କହିବାକୁ ନଦେଇ ଖଟଉପରୁ ଡିଆଁଟେ ମାରି ବାପାଙ୍କୁ ଦୁଇ ହାତରେ ଜାବୁଡ଼ି ଧରିଲା ଅଭିଷେକ, "ବାପା, ବାପା, ସତ କହୁଚ ? ସତରେ ନେଇଯିବ ମୋତେ ?

ମୁଁ ରାଜସ୍ଥାନର କୌଣସି ଜାଗା ଦେଖିନାହିଁ । ଉଦୟପୁରରେ କୁଆଡ଼େ ସୁନ୍ଦର ହ୍ରଦ ଅଛି ? ସତ ବାପା ? ଆଉ ରାଣୀମାନଙ୍କର ଖରାଦିନିଆ ପ୍ରାସାଦଟିଏ ପାଣି ଭିତରେ ତୋଳା ହୋଇଥିଲା, ସେଇଟା ନା ଏବେ ହୋଟେଲ୍ ହୋଇଛି ! ମତେ ସେଠିକି ନେଇଯିବ ? ହଁ, ଆମେ ଫେରିବାବେଳେ ଜୟପୁର ହୋଇ ଆସିବା । ପିଙ୍କ୍ ସିଟି ଦେଖିବାକୁ ମୋର ବହୁତ ଇଚ୍ଛା···ମା, ପ୍ଲିଜ୍ ମନାକରନା ।"

ଆଶ୍ଚର୍ଯ୍ୟ ହୋଇ ମିତା ଦେଖୁଥିଲେ ପୁଅର ପ୍ରଗଳ୍ଭତାକୁ ।

"ନିଶ୍ଚିତ ବାପାଙ୍କ ପାଖରେ, ମନା କାହିଁକି କରିବ ? କିନ୍ତୁ ହଁ···" ସିଦ୍ଧାର୍ଥଙ୍କ ମୁହଁକୁ ଚାହିଁଲେ ମିତା, "ଯିବାର ଅନ୍ତତଃ ଦୁଇ-ତିନଦିନ ଆଗରୁ ଜଣାଇବ ମୋତେ, ଏଥରକ ତ ପୁଣି ଦୁଇଜଣଙ୍କର ଜିନିଷ ପ୍ୟାକ୍ କରିବାକୁ ହେବ ।"

□□□

# ଦ୍ୱନ୍ଦ୍ୱିତ ଆବର୍ତ୍ତ

ପିଲମାନେ ଦାଣ୍ଡରୁ ଯେଉଁ ଗ୍ରେଟ ସଜନା ଡାଳଟି ଗୋଟେଇ ଆଣି ଉତ୍ସାହରେ ପୋତିଥିଲେ, ସେଇଟା ବିରାଟ ଗୋଟାଏ ଗଛ ହୋଇ ବାଉପଟ ଅଗଣାରେ ବହୁବର୍ଷ ଫଳିବା ପରେ ଜୀର୍ଣ୍ଣ ହୋଇ ଆସିଲଣି । ଯାହା ମୂଳରେ ମାଛଧୁଆ ପାଣି ଆଉ ପାଉଁଶ ଢଳା ହେଉଥିଲା, ସେଠି ବଣଲେଠା ହୋଇ ଜାଗାଟା ଅପବିତ୍ର ଦେଖାଯାଉଛି । ବଡ଼ ଜଙ୍ଗଲି ଲତାଟିଏ ଲଟେଇ ଯାଇଛି ଗଛଡାଳରେ । ଯାହାର ଛନ୍‌ଛନ୍ କଅଁଳ ପତ୍ର ଭିତରୁ ଶୀତ ସକାଳର ସୁନା ଖରା ଅଗଣାରେ ସୌଭାଗ୍ୟ ବିଛେଇ ଦେଉଥିଲା, ତା'ର ଜରାଗ୍ରସ୍ତ ପଞ୍ଜରା ଦେଇ ରାତି ଓହ୍ଲାଇ ଆସିଛି । ଏଇ ସୁନା ଖରାର ସକାଳ ରାତି ହେବା ଭିତରେ ମନେହୁଏ ଗୋଟାଏ ଜୀବନର ବହୁ ଅଧ୍ୟାୟ ଅତିବାହିତ ହୋଇଯାଇଛି, ଶୂନ୍ୟ ରଙ୍ଗମଞ୍ଚର ଅଲକ୍ଷ୍ୟ-ଅନ୍ଧକାର ଭିତରୁ ସବୁ ଚରିତ୍ର ଅପସରିଯାଇଛନ୍ତି । ଏଥର କେବଳ ମୁଖ୍ୟ ଚରିତ୍ର ଅପେକ୍ଷମାଣ, ନୀରବ ସଭାପର ଆଶ୍ରୟ ନେଇ, ନିଜେ ନିଜଠାରୁ ବିଦାୟ ମାଗିବେ । ଏକ ଦ୍ୱନ୍ଦ୍ୱିତ ଆବର୍ତ୍ତର କେନ୍ଦ୍ରରେ ବୃଦ୍ଧ ଅନନ୍ତ ପ୍ରତାପ ଦେଖୁଛନ୍ତି ପରିଧିଟା କେମିତି ଘୂର୍ଣ୍ଣି ଘୂର୍ଣ୍ଣି ଦୂରକୁ ଖସିଯାଉଛି—ଠିକ୍ ଯେମିତି ସୁଲତା, ରମା, ସୁର, ଅନି ଦିନେ ଖସିଯାଇଥିଲେ । ସେଇ ଦିନଠାରୁ ସେ ସେଇମିତି ନିଶ୍ଚଳ ହୋଇ ବସିଛନ୍ତି, ଉଠିବାର କୌଣସି ଲକ୍ଷଣ ନାହିଁ ।

ଠାକୁର ଏ ପର୍ଯ୍ୟନ୍ତ ଅପୂଜା ପଡ଼ିଛନ୍ତି । ସେଇ ଯେ ବାରଟା ବେଳେ ପୂଜା କରୁକରୁ ଉଠିଆସିଥିଲେ ସେ ଆଉ ଖଞ୍ଜା ଭିତରେ ପାଦ ପକାଇ ନାହାନ୍ତି । ଠାଏ ଠାଏ ପୋକ କାଟି ଦେଇଥିବା ପୁରୁଣା ମଠାଟି ଆଦୁର ଖୋଲା ହୋଇନାହିଁ ଦେହରୁ । ଶରୀରର ଉପରାର୍ଦ୍ଧରେ ପତଳା ଚଦରଟିଏ ସେଇ । ପୌଷର ଶୀତ ବେଶ୍ ମାଡ଼ିଆସିଲଣି; କିନ୍ତୁ ଆଶ୍ଚର୍ଯ୍ୟ, କିଛି ବି ଛୁଇଁପାରୁନାହିଁ ଅନନ୍ତ ପ୍ରତାପଙ୍କୁ । ଛାତି ପାଖରେ ତଥାପି ଜାକି ଧରିଛନ୍ତି ଲଫାପା ଦୁଇଟି । ଚିଠି ତ ନୁହଁ, ଜଳନ୍ତା ଅଗ୍ନିପିଣ୍ଡ ଅବା । ନିଜେ ନିଜେ ଆଶ୍ଚର୍ଯ୍ୟ ହେଉଥିଲେ, ସେ କେମିତି ଜଳିଯାଉନାହାନ୍ତି ଏ ତେଜରେ ! ଓଠ ବଙ୍କେଇ ହସିଲେ । ଜଳିଯିବେ ବା କେମିତି ? ଜଳିଗଲେ ତ ସବୁ କଷ୍ଟର ଶେଷ ହୋଇଯିବ ମୁହୂର୍ତ୍ତକେ । ଯନ୍ତ୍ରଣାର ସୂଚୀ ଯାହା ଜୀବନରେ ଖୁବ୍ ଲମ୍ବା, ସେ ଏତେ ଶୀଘ୍ର ମୁକ୍ତି ପାଇଯିବ କିପରି ?

ସବୁ ଭାବନାକୁ ପଛେଇ ଦେଉଳରୁ ସନ୍ଧ୍ୟା ଆରତିର ଘଣ୍ଟ ବାଜି ଉଠିଲା । କ୍ଷଣକେ ପାଇଁ

ଅନନ୍ତ ପ୍ରତାପ ଅନ୍ୟମନା ହୋଇଗଲେ । ଆଜ ଭଳି ସେଦିନ ମଧ୍ୟ ସନ୍ଧ୍ୟା ହୋଇଥିଲା । ଆଜିଭଳି ସେଦିନ ସନ୍ଧ୍ୟାରେ ଗୋଟାଏ ଅଘଟଣ ଘଟିବାର ଥିଲା । ଏମିତି ଜାଲିଜାଲିଆ ଅନ୍ଧାରରେ ପୋଖରୀରେ ଗାଧୋଇ କଅଁଉ ଠକ୍ ଠକ୍ କରି ସେ ଫେରିଆସୁଥିଲେ ସବୁଦିନ ପରି । ଗାଧୋଇସାରି ଭିତର ଖଞ୍ଜାରେ ପାଦ ଦେବା ଆଗରୁ ଦାଣ୍ଡ ବାରଣ୍ଡାରେ ଯେଉଁଠି ପିଲାଏ ଲଣ୍ଠନ ଜାଳି ପାଠପଢ଼ିବା ଆରମ୍ଭ କରିଦେଇଥାଆନ୍ତି, ସେଇଠି ସେ ରହିଯାଆନ୍ତି ମୁହୂର୍ତ୍ତିକ ପାଇଁ । ପୁଣି କଅଁଉର ସେଇ ଏକା ଛନ୍ଦ, ଏକା ତାଳ । ଖଞ୍ଜା ଭିତର ଦେଇ ପୂଜା ଘରେ ପଶିବା ପୂର୍ବରୁ ଗୁରୁଗମ୍ଭୀର ଗଳାରେ ସେ ଡାକ ପକାନ୍ତି, "ରମାବୋଉ..."

ବାସ୍ ସେତିକି—ଆଉ ଅଧିକ କିଛି କହିବାକୁ ହୁଏ ନାହିଁ ତାଙ୍କୁ । ହାଣ୍ଡିଶାଳରୁ ମୁଣ୍ଡରେ ଲମ୍ବା ଓଢ଼ଣା ଦେଇ ସୁଲତା ଆସେଇଯାଆନ୍ତି ପୂଜା ଘରକୁ । ଶାଢ଼ିର ଆବେଷ୍ଟନୀ ଭିତରୁ ସୁନାକାଚ ଚୂଡ଼ିର ରୁଣୁଝୁଣୁ ଶବ୍ଦ କରି ହଳଦୀ ଗୁରୁଗୁରୁ ହାତଟିଏ ବାହାରିଆସି ଠାକୁରଙ୍କର ସବୁ ଜିନିଷ ସଜାଡ଼ି, ସାଇତି ଦେଇଯାଏ । ସେ ଦିଗକୁ କେବେ ଦୃଷ୍ଟି ଦିଅନ୍ତି ନାହିଁ ଅନନ୍ତପ୍ରତାପ । ତଥାପି ସୁଲତାଙ୍କର ରାଗ ନଥାଏ, ନଥାଏ ଅଭିମାନ । ବିଦ୍ରୋହ କରିବା ସେ ଶିଖିନାହାନ୍ତି । ବାହାଘର ବେଳେ ମା' ଯେଉଁ 'ପତି ପରମ ଗୁରୁ' ମନ୍ତ୍ର ଧରେଇ ଦେଇଥିଲେ, ତାକୁ ମୁଠେଇ ଧରି ଚାଲିଥିଲେ ସୁଲତା । ବଞ୍ଚିଥିବା ଭିତରେ ଥରେ ହେଲେ ସେ ମୁଠି ହୁଗୁଳା ହୋଇନଥିଲା ।

ସେଦିନ ସନ୍ଧ୍ୟାରେ କିନ୍ତୁ ନିୟମ ବନ୍ଧା ଜୀବନରେ ଗୋଟାଏ ବ୍ୟତିକ୍ରମ ହୋଇଗଲା । ପୋଖରୀ ହୁଡ଼ାରୁ କଅଁଉ ଶବ୍ଦ ଠିକ୍ ଶୁଣାଯାଇଥିଲା । କଅଁଉ ଶବ୍ଦରେ ବଡ଼ପୁଅ ସ୍ୱର ଜୋର୍ ଦେଇ ସ୍ୱର ଲମ୍ବେଇ ଆବୃତ୍ତି ଆରମ୍ଭ କଲା, "O Captain, my Captain..." ସାନଭାଇର ଗଳା ସାଙ୍ଗରେ ତାଳଦେଇ ଅନ୍ୟ ପଣିକିଆ ଘୋଷୁଛି, 'ନଅ କେ ନଅ ପଣ, ନଅ ଦୁ'ଣେ ଅଠର ପଣ ।' ଦାଣ୍ଡ ବାରଣ୍ଡାରେ କଅଁଉର ଶବ୍ଦ ସବୁଦିନ ପରି ରହିଲା । କିନ୍ତୁ ସେଇ ଯେ ଥମିଥିଲା, ପାଦ ଯୋଡ଼ିକ ଆଉ ଭିତର ଖଞ୍ଜାକୁ ଯାଇ ନଥିଲା ସେଦିନ । ଅନନ୍ତପ୍ରତାପ ଦେଖିଲେ ସେଇଠି ପାହାଚ ତଳକୁ ବସି ଧକୋଉଛି ଜମିଦାର ତ୍ରୈଲୋକ୍ୟନାଥ ମିଶ୍ରଙ୍କ ଘର ବାରିକ ।

କି ଏକ ଅସଙ୍ଗତ ଆଶଙ୍କାରେ ତାଙ୍କ ଭିତରଟା ଚହଲି ଗଲା, "କିରେ ସନିଆ, ସବୁ ଭଲ ତ ?"

ସନିଆ କିଛି ନକହି ମଇଳା ଚଦର କାନିରୁ ଗଣ୍ଠି ଖୋଲି ଚିଠି ଖଣ୍ଡିଏ ବଢ଼େଇ ଦେଲା । ଥର ଥର ହାତରେ ଚିଠି ପଢ଼ିଲେ ଅନନ୍ତପ୍ରତାପ ।

'ଓଃ', କୋହ ଭର୍ତ୍ତି ଚାପା ଦୀର୍ଘଶ୍ୱାସଟିଏ ବାହାରିଆସିଲା ତାଙ୍କ ଛାତିତଳୁ । ଗୋଡ଼ ହାତ ଥରୁଛି, ପାଦତଳ ମାଟି ମଧ୍ୟ ଅସ୍ଥିର; ଆକାଶ, ଗଛ, ଘର, ଅନ୍ୟ ସମସ୍ତେ ଘୂରୁଛନ୍ତି । ହାତୀଦାନ୍ତ କାମ ହୋଇଥିବା ପୁରୁଣା ଚୌକି ଉପରେ ନିଜର ସବୁ ଭାର ଲଦିଦେଲେ ସେ । ଆଖିରେ ଲୁଗା କାନି ମାଡ଼ିଦେଇ ସକସକ ହୋଇ କହିପକାଇଲା ସନିଆ, "ଆଜ୍ଞା, ବେଗ

ନାଇଁ କ ବଇଗଗ ନାଇଁ—ଭଲ ମଣିଷଟା, ରାତରୁ ଖାଇପିଇ ଶୋଇଲେ; ଅଥଚ ସକାଳୁ ସକାଳୁ ସବୁ ଶେଷ । ବୋହୂରାଣୀଙ୍କ କାନ୍ଦଣା କିଏ ସହିବ ? ଆମର ସବୁ ସରିଗଲା, ସାଆନ୍ତେ ।"

କଠଉ ଶବର ବ୍ୟତକ୍ରମରେ ବୋଧହୁଏ ଦାଣ୍ଡଖଣ୍ଡା ଆଡ଼କୁ ଆଗେଇ ଆସିଥିଲେ ସୁଲତା । କବାଟରେ କାନ ଥାପି ବାହାରର ଚୁପା କଥାବାର୍ତ୍ତା ଶୁଣିବାର ପ୍ରୟାସ କରୁଥିଲେ ।

ବୋହୂରାଣୀ ?

ରମା ??

ଜମିଦାର ଘରଣୀର ସବୁ ସମ୍ଭ୍ରମ କେଉଁଠି ହଜିଗଲା ସୁଲତାଙ୍କର । ମୁଣ୍ଡର ଓଢ଼ଣା ଖସି କାନ୍ଧ ପାଖରେ । କେଉଁଠିକି ଦୃଷ୍ଟି ନାହିଁ । ପାଗଳୀଙ୍କ ପରି ଧାଇଁଆସିଲେ ବାହାରକୁ ।

"କ'ଣ ହେଲା ? କ'ଣ ହେଲା ମୋ ଗଳାମାଣିକର ?"

ତରଳ ନରମ ହୋଇଯାଇଥିବା ଅନନ୍ତପ୍ରତାପଙ୍କର ମନ ଭିତରୁ ଜମିଦାରର କଠୋର ହୃଦସ୍ପନ୍ଦି ଚେଇଁଗଲା ଯେମିତ !

"ରମାବୋଉ, ଖଣ୍ଡା ଭିତରକୁ ଯାଅ ।"

ଖଣ୍ଡା ଭିତରେ ବାଡ଼େଇପିଟି ହେଉଥିବାବେଳେ ସୁଲତା ଶେଷଥର ପାଇଁ ଶୁଣିଥିଲେ ସ୍ୱାମୀଙ୍କର ସେଇ ଚହ୍ଲା ଗମ୍ଭୀର ସ୍ୱର, "ସୁର, ବୋଉକୁ କହିଦେ, କୋଇଁବାବୁ ଚାଲିଗଲେ ।"

ସୁଲତାଙ୍କ ଆଖିରେ ସେଇ ଯେ କଳାପରଦା ପଡ଼ିଥିଲା, ସବୁଦିନ ପାଇଁ ଅନ୍ଧାର ହୋଇ ଜମାଟ ବାନ୍ଧି ରହିଗଲା । ଦଶଦିନ ଅଜ୍ଞାନ ଜ୍ୱରରେ ବାଉଳା ଚାଉଳା ହେବା ପରେ ସେ ସଂସାର ଛାଡ଼ି ଚାଲିଯାଇଥିଲେ । ନିଜର ସବୁ ମୂଲ୍ୟବୋଧକୁ ପଛେଇଦେଇ ଅନନ୍ତପ୍ରତାପ ଧାଇଁଯାଇଥିଲେ ସହର, ଏଲୋପ୍ୟାଥି ଡାକ୍ତର ଡାକି ଆଣିବାକୁ । କିନ୍ତୁ ସବୁ ମୂଲ୍ୟହୀନ । ଟୋକା ଡାକ୍ତର ଜଣକ ଷ୍ଟେଥୋସ୍କୋପ୍ କାନରୁ ଓହ୍ଲାଇଦେଇ ମୁଣ୍ଡହଲେଇ କହିଥିଲେ, "ମୁଁ ଖୁବ୍ ଦୁଃଖିତ—ମୋର ଆଉ କିଛି କରିବାର ନାହିଁ ।"

ଆକସ୍ମିକ ସ୍ତ୍ରୀ-ଶୋକରେ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଥିଲେ ଅନନ୍ତପ୍ରତାପ । ପିଲାଙ୍କ ଭଳି ସୁଲତାଙ୍କ ଦୁଇ ଜଙ୍ଘାତ ଜାବୁଡ଼ିଧରି ବସିରହିଥିଲେ ଅନେକ କ୍ଷଣ । ହଠାତ୍ ଲୁହର ଆବରଣ ଦେଇ ତାଙ୍କ ଆଖି ସାମନାରେ ଭାସିଉଠିଥିଲା ହାଡ଼ୁଆ, ଶୁଖିଲା, ଆଭରଣହୀନା ନିଷ୍ପ୍ରଭ ମୁହଁଟିଏ । ଲୁହରେ ଲାଲ୍ ହୋଇଯାଇଥିବା ଅନନ୍ତପ୍ରତାପଙ୍କର ଆଖି ଦିଓଟି ଏଥର କ୍ରୋଧରେ ଆହୁରି ଲାଲ୍ ହୋଇଗଲା ।

"ବାହାରି ଯା, ବାହାରି ଯା ମୋ ଘରୁ ହତଭାଗୀ । ବଞ୍ଚିଥିବା ପର୍ଯ୍ୟନ୍ତ ତୋ ମୁହଁ ଯେମିତ ଦେଖିବାକୁ ନପାଏ । ଶାଶୁଘର ବଂଶ ଖାଇଲୁ, ପୁଣି ବାପଘର ଉପରେ ଅହିଲ୍ୟା ?" କାଳସର୍ପ ଲାଗିଲା ପରି ହାତ ଗୋଡ଼ ଛାଟି ଚେଇଁଥିଲେ ଅନନ୍ତପ୍ରତାପ ।

ବିକଳ ହୋଇ ଥରଥର ଗଳାରେ ରମା ପାଟିରୁ ବାହାରିପଡ଼ିଲା, "ନନା !" କିଏ ଯେମିତ ଚପୁଡ଼ା ଦେଉଛି ସମସ୍ତ ସତ୍ତାକୁ । ଦୁଃଖରେ, କୋହରେ ଛଟପଟ ହୋଇଗଲା

ଷୋହଳ-ସତର ବର୍ଷର ନବଭରଣ ଶରୀରଟି ତା'ର ।

ଝିଅର ଯନ୍ତ୍ରଣା, ହାହାକାର କିଛି ଛୁଇଁ ପାରିଲା ନାହିଁ ଅନନ୍ତପ୍ରତାପଙ୍କୁ । "ଖବରଦାର୍, ମୋତେ ନନା ଡାକିବୁ ନାହିଁ । ମୋର ରମା ବୋଲି ଯେଉଁ ଝିଅ ଥିଲା ସେ ମରିଯାଇଛି । ତୁ ଚଣ୍ଡାଳୁଣୀ ବାହାରିଯା—ଏ ଗାଁ ଛାଡ଼ି ଚାଲି ଯା' ।"

ଚିତ୍କାରରେ ଦୋହଲି ଉଠିଲା ପୁରୁଣା ଜମିଦାର କୋଠି । ସେଠାରେ ଉପସ୍ଥିତ ସମସ୍ତଙ୍କର ହୃଦୟ କମ୍ପିଗଲା । କିନ୍ତୁ ରମା ବିଚଳିତ ହେଲା ନାହିଁ । ତା' ଭିତରେ କ'ଣ ଯେମିତି ପଥର ହୋଇଯାଇଥିଲା । ବୃନ୍ତଚ୍ୟୁତ ପତ୍ର ଯେମିତି ଶାନ୍ତ ଭାବରେ ପାହାଚରୁ ଓହ୍ଲାଇ ଗାଁର ସରୁ ରାସ୍ତା ଦେଇ ଚାଲିଗଲା ।

ଏ ଘଟଣାର ମାସେ ପରେ ରମାର ଛୋଟ ଚିଠିଟିଏ ପାଇଥିଲେ ଅନନ୍ତପ୍ରତାପ । "ନନା, ପ୍ରଣାମ ନେବ । ତୁମେ ଆଶ୍ରାହୀନ କରିଦେବା ପରେ ଆଶ୍ରା ଖୋଜି ଖୋଜି ଚାଲିଆସିଥିଲି ଶ୍ରୀକ୍ଷେତ୍ର । ବଡ଼ଠାକୁରଙ୍କର ତ ଆଉ ଚଉଡ଼ିଦେବେ ନାହିଁ ! ଧର୍ମଶାଳାରେ କିଛି ଦିନ ରହିବା ପରେ ମୁଁ ଚାକିରି ଖଣ୍ଡିଏ ଯୋଗାଡ଼ କରିନେଇଛି । ଏଠିକାର ବାଳିକା ବିଦ୍ୟାଳୟରେ ସିଲେଇ ଶିକ୍ଷୟିତ୍ରୀ ହୋଇଛି । ସ୍କୁଲ ତରଫରୁ ବଖୁରିକିଆ ଘରଟିଏ ମିଳିଛି । ମନ୍ଦିର ଓ ସ୍କୁଲ ହୋଇ ବେଶ୍ ଚଳିଯାଉଛି ମୁଁ ।"

ଅନନ୍ତପ୍ରତାପ ସେଦିନ ବହୁତ ସମୟ ଠାକୁରଙ୍କ ପାଖରେ ବସି ବିକଳବିକଳିଆ ହେଉଥିଲେ । "ପ୍ରଭୁ ହେ, ରାଜା ଝିଅ, ରାଜାଘର ବୋହୂ, ଶେଷରେ ଯାଇ ମାଷ୍ଟ୍ରାଣୀ ହେଲା ! ଝିଅଟାକୁ ଏତେ ଦମ୍ଭ, ଦୃଢ଼ତା କାହିଁକି ଦେଲ ଠାକୁର ? ବାପର ପଦେ ଦୁଇପଦ କଥା ସହି ନପାରି ଘର ଛାଡ଼ି ଚାଲିଗଲା !"

ପ୍ରଥମ ସନ୍ତାନ ପ୍ରତି ଥିବା ତାଙ୍କର ଅନାବିଳ ସ୍ନେହ ଜମିଦାରର ଅହମିକା ସାମ୍ନାରେ କିନ୍ତୁ ହାର ମାନିଯାଏ । ଅଭିମାନ ଜୁଡ଼ୁବୁଡ଼ୁ ମନଟି ତାଙ୍କର ଅଟଳ ଜିଦ ପାଖରେ କେଉଁଠି ଲୀନ ହୋଇଯାଏ । ଝିଅକୁ ଫେରାଇ ଆଣିବାକୁ ତଥାପି ଯାଆନ୍ତିନାହିଁ ଅନନ୍ତପ୍ରତାପ ।

ଆକସ୍ମିକ ବଜ୍ରପାତ ପରି ପୁଣି ଦୁଇବର୍ଷ ପରେ ରମାର ଦ୍ୱିତୀୟ ଚିଠି ଆସି ପହଞ୍ଚିଲା । "ନନା, ଏ ଚିଠି ତୁମକୁ କଷ୍ଟ ଦେବ ଜାଣି ମଧ୍ୟ ଲେଖୁଛି । ଗତ ଚଉଦ ତାରିଖ ଦିନ ଜଗନ୍ନାଥଙ୍କୁ ସାକ୍ଷୀ ରଖି ମୁଁ ପୁରୀ କଲେଜର ଅଧ୍ୟାପକ ଅରୁଣାଭଙ୍କୁ ବିବାହ କରିଛି । ତୁମେ ଏ ବିବାହକୁ କେବେହେଁ ସ୍ୱୀକୃତି ଦେଇ ନ ଥାଆନ୍ତ । ତେଣୁ ବିବାହ ପୂର୍ବରୁ ଜଣେଇବାକୁ ଉଚିତ ମନେକରିନି ।"

ଚିଠି ପାଇବା ପରେ ଦିନସାରା କିଛି ଖାଇ ନଥିଲେ ଅନନ୍ତପ୍ରତାପ । ଏ ଯେଉଁ ଅଘଟଣ ଘଟିଗଲା ସେଥିପାଇଁ ସେ ନିଶ୍ଚିତ ଭାବରେ ଦାୟୀ କରୁଥିଲେ ନିଜକୁ । ହୁଏତ ରମାକୁ ବୁଝେଇ ଘରକୁ ଫେରାଇ ଆଣିଥିଲେ ଏମିତି ଗୋଟାଏ ସମାଜରୁ ବାହାର ପଦକ୍ଷେପ ସେ ନେଇ ନଥାଆନ୍ତା । ବ୍ରାହ୍ମଣ ଘରର ବିଧବା କନ୍ୟା ! କେତେ ନୀତି ନିୟମ, କେତେ ବାରଣ, ସବୁ ପାଦରେ ଏଡ଼ାଇଦେଇ ଆଗେଇଗଲା । ତା' ପରଦିନ ହିଁ ଗାଁର ମୁଖିଆମାନଙ୍କ

ଅଗରେ ରମାକୁ ତ୍ୟାଜ୍ୟ କରିଦେଇଥିଲେ ଅନନ୍ତପ୍ରତାପ । ଆଦରଣୀୟା ପ୍ରଥମ ସନ୍ତାନର ସମସ୍ତ ସ୍ମୃତିକୁ ମନରୁ ପୋଛି ପରିଷ୍କାର କରିଦେଇ ସୁର ଓ ଅନିକୁ ଜାବୁଡ଼ି ଧରିଥିଲେ ସେ ।

ହାତର ଚିଠି ଦୁଇଟିକୁ ଆଉଥରେ ମେଲାଇ ମେଲାଇ ଦେଖିଲେ । କ'ଣ ବା ପାଇଲେ ଏ ବୁଢ଼ା ଦିନେ ? ସୁର, ଅନି ଉପରେ ସବୁ ମମତା ଗଙ୍ଗର କରେନେଇ ଶାନ୍ତି ପାଇପାରିଲେ କି ? ଜମିଦାରୀ ତ ଗଲା—ଫମ୍ପା ଐଶ୍ୱର୍ଯ୍ୟ ନେଇ ସେ ଆଜି ପର୍ଯ୍ୟନ୍ତ ବଞ୍ଚିରହିଛନ୍ତି ଯାହା । ସେଇ ପିଲାଙ୍କ ମୁହଁକୁ ଚାହିଁକରି ତ ? କିନ୍ତୁ କିଏ ବା ମୂଲ୍ୟ ଦେଲା ତାଙ୍କ ସ୍ନେହର ? ଅନିକୁ ଏତେ ଗେଲବସରରେ, ଆଦରରେ ବଢ଼େଇଲେ । ଉଚ୍ଚ ଶିକ୍ଷା ପାଇଁ ଆଖିରୁ ଅନ୍ତର କରି ହଷ୍ଟେଲ୍‌ରେ ରଖାଇ କଲେଜରେ ପଢ଼ାଇଲେ । ଏତେ ପରେ ତାଙ୍କ ସମ୍ମାନକୁ ତଳେ ପକାଇ ସେ ଜିଦ୍ କଲା ଗୋଟାଏ ଅବ୍ରାହ୍ମଣ ପିଲାକୁ ବାହା ହେବ । ହେଲା, ତା' ମଧ୍ୟ ରାଜିହେଲେ ସେ ଝିଅର ମୁହଁକୁ ଚାହିଁ । ତଥାପି ଗେହ୍ଲା ଝିଅ ତାଙ୍କର ହଜିଗଲା କାହିଁକି ? ସ୍ୱାମୀ ସହିତ ଅନି ବମ୍ବେ ଚାଲିଗଲା । ବଡ଼ ଚାକିରି ଜୋଇଁର । ସେଇଠି ସେମାନେ ଥଇଥାନ ହୋଇଗଲେ । କେବେ କେମିତି ଛଅ ମାସରେ ଆଠ ମାସରେ ମନହେଲେ ଅନି ପୋଷ୍ଟକାର୍ଡ଼ଟିଏ ପଠେଇ-ଦିଏ । ସେଥିରେ ଖାଲି ଶାଶୁଘରର ଗୁଣକୀର୍ତ୍ତନ । ଶେଷଆଡ଼କୁ ପଦଟିଏ ଲେଖାଥାଏ 'ତୁମେ ତ ଭଲରେ ଥିବ ।' ଥରେ ଆସି ବୁଝିଗଲା କି ନନା ଭଲରେ ଅଛନ୍ତି ନା ମନ୍ଦରେ ? ଏତେଦିନ ଏ କଥାକୁ ଛଳ କରି ନଥିଲେ ଅନନ୍ତପ୍ରତାପ, ତାଙ୍କର ଦୃଢ଼ ଆଶା ଥିଲା ଯେତେ ଯାହା ହେଲେ ବି ଝିଅ ତାଙ୍କର । ସେଇଥିପାଇଁ କେତେ ଭରସା ନେଇ ଅନି ପାଖକୁ ଖବର ପଠାଇଥିଲେ ପନ୍ଦରଦିନ ତଳେ । କିନ୍ତୁ ଆଜି ଏ ଚିଠି···

ଚିଠି—ସୁରର ମଧ୍ୟ ।

ଯନ୍ତ୍ରଣାରେ ପେଟ ଭିତର ମନ୍ଥି ହୋଇଯାଉଛି । ତଳପେଟର ଏ କଷ୍ଟ ଅସହ୍ୟ । କଟକ ବଡ଼ଡାକ୍ତରଖାନାର ଡାକ୍ତର କହୁଛନ୍ତି କ୍ୟାନ୍‌ସର । ଏ ବେମାରୀର କୁଆଡ଼େ ଔଷଧ ନାହିଁ । ଦେହ ପଚିବ, ପିମ୍ପୁଡ଼ି ଲାଗିବେ, ଯନ୍ତ୍ରଣାରେ ତଳିତଳାନ୍ତ ହୋଇ ମଣିଷ ମରିବ । ଓହୋ, କି ପାପର ଶାସ୍ତି କେଜାଣି, ଜୀବନର ଶେଷ ପର୍ଯ୍ୟାୟରେ ଏତେ ଭୋଗିବାକୁ ଥିଲା ! ଆଉ କେତେ ଦିନ ? ବିକଳ ହୋଇ ରାଧାମାଧବଙ୍କୁ ଡାକପକାନ୍ତି । କିନ୍ତୁ ଅନନ୍ତପ୍ରତାପଙ୍କ ଡାକ କେହି ଶୁଣନ୍ତି ନାହିଁ—ନା ରାଧାମାଧବ ନା ପିଲାଏ ।

ଅନି ତ ଦୂରେଇ ଗଲା । ସୁର ମଧ୍ୟ କୋଳଛଡ଼ା ହେଲା । କେତେ ଆଶା ଥିଲା, ଡାକ୍ତରୀ ପାଶ୍‌କରି ସେ ଗାଁରେ ଡିସ୍‌ପେନ୍‌ସରି ଖୋଲିବ । କିନ୍ତୁ ସବୁ ଉଜାଡ଼ି ଦେଇ ସୁର ଚାଲିଗଲା ଇରାକ୍ । ସେଠି ଡାକ୍ତରମାନଙ୍କର କୁଆଡ଼େ ଖୁବ୍ ଆଦର, ଦରମାର ମାତ୍ରାଟା ମଧ୍ୟ ବହୁତ ବେଶୀ । ମାତ୍ର ତିନିବର୍ଷ ପରେ ଘର ଗାଡ଼ି ସବୁ ହୋଇଯିବ ।

ମୁଖ ବିକୃତ କଲେ ଅନନ୍ତପ୍ରତାପ । ପୋଡ଼ି ଜଳିଯାଉ ସେ ପଇସା ! ଡାକ୍ତର ପୁଅ ଘର ବାପର ରୋଗ ବୈରାଗରେ ଦମ୍ଭ ନଦେଇ ପାରିଲା, ସେ ପାପର, ସେ ପଇସାର ମୂଲ୍ୟ କ'ଣ ? ସବୁ ସ୍ନେହ ବନ୍ଧନର ରଜ୍ଜୁ ଛିନ୍ନ କରି ସୁର କେବଳ ପଠେଇଦେଲା ଚିଠି ଖଣ୍ଡିଏ !

ଚିଠି ଦୁଇଟି ଉପରେ ଶେଷଥର ପାଇଁ ଆଖି ବୁଲେଇ ଆଣିଲେ ଅନନ୍ତପ୍ରତାପ ।

ବମ୍ବେରୁ ଅନ ଲେଖିଛି, "ନନା, ତୁମ ଚିଠି ପାଇ ମନ ଖରାପ । କିନ୍ତୁ କ'ଣ କରିବ କୁହ, ଯାଇପାରୁନି । ଜନି, ଡମିଙ୍କୁ ଏଠି ଛାଡ଼ିଯିବାର ସୁବିଧା ନାହିଁ । ସାଙ୍ଗରେ ନେଇ ଯାଆନ୍ତି, କିନ୍ତୁ ଗାଁରେ ସେମାନେ ଜମା ଚଳିପାରିବେ ନାହିଁ । ତୁମ ଜୋଇଁଙ୍କ କଥା ତ ଜାଣ । ଏମିତି ଅଡ଼ାବାଜା ଲୋକ ଯେ ପାନରୁ ଚୂନ ଟିକିଏ ଖସିବ ନାହିଁ । ଘରେ ଏତେ ଚାକର-ବାକର, କିନ୍ତୁ ତାଙ୍କର ସବୁ କାମ ମୋତେ ହିଁ କରିବାକୁ ହେବ । ସେ ମତେ ଗାଁକୁ ଛାଡ଼ିବାକୁ ଏକଦମ୍ ନାରାଜ । କଟକ ଡାକ୍ତରଖାନାର ତ ବେଶ୍ ନାଁ, ସେଇଠି ଦେଖାଅ । ଯଦି ଟଙ୍କାର ଦରକାର, ମତେ ପଦେ ଲେଖିବ । ରାଧାମାଧବଙ୍କୁ ମୁଁ ଡାକୁଛି, ସବୁ ଠିକ୍ ହୋଇଯିବ ।"

ସୁରର ଚିଠି ଆସିଛି ବାଗଦାଦ୍‌ରୁ, "ନନା, ଲର୍ଜ ଇଣ୍ଟେଷ୍ଟାଇନ୍‌ରେ କ୍ୟାନ୍‌ସର ତ ! ଏଥିରେ ଡରିବାର କିଛି ନାହିଁ । କ୍ୟାନସର୍‌ରେ ଆକ୍ରାନ୍ତ ହୋଇଥିବା ଅଂଶଟି ଅପରେସନ କରି କାଟିଦେଲେ ଅନ୍ତତଃ କେତେ ବର୍ଷ ପାଇଁ ଆଉ ଭୟ ନାହିଁ । ତେବେ ଅପରେସନ୍‌ଟିରେ ଟଙ୍କା ଲାଗିବ । ମୁଁ ପାଞ୍ଚହଜାର ଟଙ୍କା ପଠାଇଲି । କାହା ସାଙ୍ଗରେ ଯଦି ଭେଲୋର୍ ଯାଇପାରନ୍ତି, ଖୁବ୍ ଭଲହୁଅନ୍ତା । ମତେ ଭାରତ ଫେରି ଆସିବାକୁ ଲେଖିଛ—କେମିତି ଯିବ ? ସାତବର୍ଷର କଣ୍ଟ୍ରାକ୍ଟ ପୂର୍ବ ନକରି ଫେରିଗଲେ ମୋ ବିରୁଦ୍ଧରେ କେଶ୍ ହୋଇଯିବ । ଦମ୍ଭ ଧର ନନା, ସବୁ ଠିକ୍ ହୋଇଯିବ ।"

ସବୁ ଠିକ୍ ହୋଇଯିବ···ସବୁ ଠିକ୍ ହୋଇଯିବ !

ସନ୍ତାନଙ୍କର ଖାଲି ଏ ଆଶ୍ୱାସନା । କେହି ଜଣେ ଆଉ ହାତ ବଢ଼େଇ ଦେଲା କି ? ଆହା ପଦେ କହି କଏ ଟିକିଏ ମୁଣ୍ଡ ଆଉଁଷି ଦେଲା କି ? ଦୁର୍ବଳ, ରୋଗଗ୍ରସ୍ତ ହାତରୁ ତାଙ୍କର ଖଣ୍ଡିକା, କରେଇ ଛଡ଼େଇ ନେଲା କି ?

ଖାଲି ଟଙ୍କା···ଟଙ୍କା···

ଅନ ଲେଖିଲା ଟଙ୍କା କଥା, ସୁର ବି ପଠେଇଦେଲା ଟଙ୍କା । ଓଃ, ସ୍ନେହ ମମତାର ଋଣ କ'ଣ ଟଙ୍କାରେ ଶୁଝାଯାଏ ? ତାଙ୍କ ରକ୍ତର ଦାୟାଦମାନେ ଏଇ ଛୋଟ କଥାଟି ଯାହା ବୁଝି ପାରିଲେ ନାହିଁ !

ଚିଠି ଦୁଇଟାକୁ ଚିକି ଚିକି କରି ଚିରି ପବନରେ ଉଡ଼େଇଦେଲେ ଅନନ୍ତପ୍ରତାପ । ଅଶକ୍ତ ଶରୀର ନେଇ ଆଣ୍ଠୁ ସନ୍ଧିରେ ମୁହଁ ଗୁଞ୍ଜି ସେମିତି କେତେବେଳ ବସିଗଲେ କେଜାଣି ? ଆଖି ଦୁଇଟା ଲାଗିଆସିଥିଲା ତାଙ୍କର ।

"ନନା, ନନା ମ !" —କିଏ ହଲେଇ ହଲେଇ ଉଠେଇ ଦେଉଛି ତାଙ୍କୁ ? କାହାର ଏ କୋମଳ, ନରମ ସ୍ପର୍ଶ ? କାହାର ଏ ଦରଦଭରା ଭଳା ଗଳା ? କଳ୍ପନା ନୁହଁ ତ ?

"ନନା ମ, ଏ ହାଡ଼ଥରା ଶୀତରେ ଏମିତି ଖାଲି ଦେହରେ ବାହାରଟାରେ କାହିଁକି ବସିଛ ? ଥଣ୍ଡା ଲାଗିଯିବଟି !"

ଧୀରେ ଧୀରେ ମୁଣ୍ଡ ଟେକିଲେ ଅନନ୍ତପ୍ରତାପ । ଧମ୍ବଳଧୂସ୍ର ପାଟ ପିନ୍ଧି ଏଏ କିଏ ? ସୁନ୍ଦାରେ, କପାଳରେ ନାଲି ସିନ୍ଦୂର ଦାଉ ଦାଉ ଜଳୁଛି । ହାତରେ ବୋଟେ ବୋଟେ ଚୂଡ଼ି ।

ଏ କିଏ ? ସୁଲତା…

"ଏମିତି ନ ଚହ୍ନି ବା ପରି କ'ଣ ଦେଖୁଛ ମ ନନା ? ଏଇ କେତୋଟା ବର୍ଷରେ କ'ଣ ହେଲଣି ତୁମ ଚେହେରା ? ଭାଗ୍ୟକୁ ନିଏ ବଡ଼ବାପାଙ୍କ ସାଙ୍ଗରେ ମନ୍ଦିରରେ ଦେଖା ହୋଇଗଲା, ନହେଲେ ମତେ କିଏ ଦେଇଥାଆନ୍ତା ତୁମ ଖବର…?" ଗଳା ଲଗିଆସିଲା । ଶାଢ଼ୀଟାକୁ ଜୋର୍‌ରେ ଗଣ୍ଠେଇ ଧରିଛି ସେ ।

ସେ କିଏ ?

ରମା—ମୋ ମା' ! ଫେରିଆସିଛୁ ତୋ ନନାପାଖକୁ ! ଏତେ ଦିନକେ ତୋ ଦମ୍ଭ ତୁଟିଲା ? ବାପଠି ଅଭିମାନ ଭାଙ୍ଗିଲା ? ଥରେ ହେଲେ ତ ଦେଖି ଗଲୁ ନାହିଁ ନନା ମଲା କି ଗଲା ? ବାପର ପଦେ କଡ଼ାକଥାରେ ସବୁ ଆଦର, ସ୍ନେହ ମନରୁ ଉଡାଇଦେଲୁ ? ସବୁ ଗୁଡ଼େଇଗୁଡ଼େଇ ହୋଇଯାଉଛି, ଅନନ୍ତପ୍ରତାପଙ୍କର ପାଟି ଖୋଲୁନାହିଁ ।

ନନାଙ୍କର ଲୁହଜରଜର ବୃଦ୍ଧାଣି ସାମ୍ନାରେ ଭାଙ୍ଗିପଡ଼ିଲା ରମା, "ନନା, ଆଉ ମତେ ପରକରନାହିଁ । ଏତେ ବର୍ଷ ପରେ କେତେ ଆଶା ନେଇ ଆସିଛି, ମୁହଁ ପୂରେଇ ନିଅନ୍ତ ।"

ନିଠେଇ ନିଠେଇ ଅନନ୍ତପ୍ରତାପ ଦେଖୁଥିଲେ ତାଙ୍କର ଅଲଅଲି ପ୍ରଥମାକୁ । କଳମରେ ସିନା ତ୍ୟାଜ୍ୟ କରିଦେଇଥିଲେ, ମନର ସ୍ୱୀକୃତି ଥିଲା କି ସେଥିରେ ? ହୃଦୟରେ ରମା ପାଇଁ ଥିବା ସ୍ଥାନଟିକୁ ପଥରକରିଦେଇଥିଲେ ସିନା, କିନ୍ତୁ ତା' ତଳେ ଯେଉଁ କୋମଳ ଝରଣାଟି ଝରୁଥିଲା—ସେଇଟାକୁ କ'ଣ ଶୁଖେଇଦେଇପାରିଥିଲେ ?

"ମୋ ମାଆ ଲୋ"—ତାଙ୍କର ଧୈର୍ଯ୍ୟର ବନ୍ଧ ତୁଟିଗଲା । ପିଲାଙ୍କ ଭଳି ରମା କୋଳରେ ମୁହଁ ରଖି ଘକ ଘକ ହୋଇ କାନ୍ଦିପକେଇଲେ । ସମୟ ଅଟକିଗଲା ସେଇ ମୁହୂର୍ତ୍ତଟି ଟିକକରେ । ଏତେଦିନକେ ଆଶ୍ରା ମିଳିଗଲା ଯେମିତି !

ପରମ ସ୍ନେହରେ ନନାଙ୍କ ମୁଣ୍ଡରେ ହାତ ବୁଲେଇନେଲା ରମା, "ତୁମେ ଉଠିଲ—ସାତଟା ବାଜିବାକୁ ବସିଲଣି । ସଅଳ ସଅଳ ବାହାରିଗଲେ ସାଢ଼େ ଦଶଟା ସୁଦ୍ଧା ପହଞ୍ଚିଯିବା । ବେଶି ଡେରି ହେଲେ ପୁଣି ଟ୍ୟାକ୍ସିବାଲା ପାଟିତୁଣ୍ଡ କରିବ ।"

ହାତ ପାପୁଲିରେ ଆଖି ପୋଛିନେଇ ଅନନ୍ତପ୍ରତାପ ବିସ୍ମୟରେ ପଚାରିଲେ, "ଯିବା କୁଆଡ଼େ ?"

"କାହିଁକି, ସୁଆ—ମୋ ଘରକୁ । ତୁମ ଜୋ୍ଇଁ ଆଉ ନାତି ତୁମକୁ ଅପେକ୍ଷା କରି ରହିଛନ୍ତି ଯେ ।" ଖୁବ୍ ନିର୍ଲିପ୍ତଭାବରେ କଥାଟା କହିଦେଇ ଖଞ୍ଜା ଭିତରକୁ ପଶିଗଲା ରମା ନନାଙ୍କର ଲୁଗାପଟା ସଜାଡ଼ିବାକୁ ।

ଋଋଋ

# ପ୍ରଥମ ସନ୍ଧାନ

ଜୀବନ ନେଇ ସଂଗ୍ରାମ କରିଯାଇପାରେ, କିନ୍ତୁ ସାଲିସ୍… ? ହସିଲ ପ୍ରଜ୍ଞା । ଜୀବନକୁ ଗ୍ରହଣ କରିନେଇଛୁ ଯେତେବେଳେ, ସାଲିସ୍ କରିବାକୁ ଇ ତ ହେବ । କିନ୍ତୁ ତା' କ୍ଷେତ୍ରରେ ଏଇଟା ଯେମିତି ମାତ୍ରାଧିକ ହୋଇଯାଉଛି । ଗୋଟାଏ ସୀମା—ସେ ସୀମା ଭିତରେ ସାଧାରଣ ଜଣେ ନାରୀ କିଛି କରିପାରେ । କିନ୍ତୁ ସେ ରେଖା ପାର ହେବାକୁ ପଡ଼ିଲେ… ? ବାରମ୍ବାର । ସବୁ ଚେଷ୍ଟା କେମିତି ବ୍ୟର୍ଥ ହୋଇଯାଏ । ଆଉ ବଞ୍ଚିବାଟା ହୁଏ ଚକ୍ର, ମୂଲ୍ୟହୀନ—ଠିକ୍ ତା' ଜୀବନରେ ଯେମିତି ।

ତକିଆରେ ମୁହଁ ମାଡ଼ି ସେମିତି ପଡ଼ିରହିଲା ପ୍ରଜ୍ଞା । ଏଗାର ବର୍ଷ କାଳ ଅନିମେଷଙ୍କ ଜୀବନ ସାଙ୍ଗରେ ନିଜର ସୁଖ-ଦୁଃଖ, ଇଚ୍ଛା-ଅନିଚ୍ଛା ସେ ବାନ୍ଧିଦେଇ ଆସିଛି । ଅନ୍ୟ ସମସ୍ତଙ୍କଠାରୁ ପୃଥକ୍ ତା'ର ଏଇ ସ୍ୱାମୀ ସହିତ ସର୍ବାନ୍ତଃକରଣରେ ସୁଖୀ ହେବାପାଇଁ କେବଳ ଚେଷ୍ଟା—ବହୁ ଚେଷ୍ଟା ସେ କରିଆସିଛି । ହୁଏତ, ହୁଏତ ତାଙ୍କ ସାଙ୍ଗରେ ତାଳଦେଇ ସେ ଅନନ୍ୟା ହୋଇପାରିନାହିଁ । ଶେଷ ପର୍ଯ୍ୟନ୍ତ ସେ ରହିଯାଇଛି ସାଧାରଣ… ସଂସାରର ଆଉ ପାଞ୍ଚଜଣଙ୍କ ପରି । ସେଇଥିପାଇଁ ବୋଧହୁଏ ଏ ଘରେ, ଅନିମେଷଙ୍କ ସଂସାରରେ ସେ ଅଦରକାରୀ, ଅଲୋଡ଼ା ହୋଇପଡ଼ିଛି । ପ୍ରଜ୍ଞା ପାହାଚ ପରେ ପାହାଚ ଉଠିବାର ପଦକ୍ଷେପ ଯେ ନେଇ ନଥିଲା ତା ନୁହଁ, କିନ୍ତୁ ନିଜ ଚେଷ୍ଟାରେ ଜିନିୟସ୍ ସ୍ୱାମୀଙ୍କ ସମାନସ୍କନ୍ଧ ହେବା ସମ୍ଭବ ହେଲାନାହିଁ । ଯଦି ଅନିମେଷ ହାତ ବଢ଼େଇ ଦେଇଥାଆନ୍ତେ ? ଯଦି…ଜୀବନ ଆଉ ଟିକିଏ ସୁନ୍ଦର, ଲୋଭନୀୟ ହୋଇଯାଇ ନଥାଆନ୍ତା କି ? ହେଲେ ସବୁ କେବଳ "ଯଦି"ରେ ରହିଯାଏ । କେତେଦିନ ଏମିତି ପ୍ରଜ୍ଞା ଏକତରଫା ସାଲିସ୍ କରି ଚାଲିଥିବ ? କେତେଦିନ ଆଉ ? ସେ ଯେ ଥକିଗଲାଣି ?

ବ୍ୟସ୍ତ ହୋଇ ସେ କଡ଼ ଲେଉଟାଇଲା । ଦାଣ୍ଡ କବାଟରେ କିଏ ଡାକୁଛି । ଅନିମେଷ ଇ ତ ! ତରବର ହୋଇ ଉଠି ଯାଉ ଯାଉ ପ୍ରଜ୍ଞା ରହିଗଲା । ନା—ଆଜି ସେ କବାଟ ଖୋଲିବ ନାହିଁ । ସେଇଠି ଶୋଇରହି ଚାକର ଉଦ୍ଦେଶ୍ୟରେ ପାଟିକଲା ସେ, "କବାଟ ଖୋଲ ମଦନ—ବାବୁ ଆସିଛନ୍ତି ।"

ନିଦୁଆ ଆଖି ନେଇ ମଦନ କବାଟ ଖୋଲିଲା । ଆଶ୍ଚର୍ଯ୍ୟରେ ତା' ଆଡ଼େ କିଛି ସମୟ ଚାହିଁ ରହି ଘର ଭିତରେ ପାଦ ରଖିଲେ ଅନିମେଷ । ଶୋଇବା ଘରର କବାଟ ଦ୍ୱାର

ଆଉଜା । ଶୋଇବାର ଛଳନା କରୁଥିଲେ ମଧ୍ୟ ସେ ଠିକ୍ ଜାଣନ୍ତି ପ୍ରଜ୍ଞା ଏ ପର୍ଯ୍ୟନ୍ତ ଶୋଇନି । ସେ ଘରେ ପାଦ ନଦେବା ପର୍ଯ୍ୟନ୍ତ ସେ ସେଇମିତି ଚାହିଁ ବସିଥିବ, ରାତି ଯେତେ ଡେରି ହେଉ ପଛକେ । ଏଗାର ବର୍ଷର ଅଭ୍ୟାସ କ'ଣ ଦିନକରେ ଛାଡ଼ିହୁଏ ? ତେବେ ରାଗର ମାତ୍ରା ଟିକିଏ ବେଶି ହୋଇଯାଇଛି । ଚବିଶ ଘଣ୍ଟା ହୋଇଗଲା । ହଉ—ବଳେ ମୁଣ୍ଡ ଥଣ୍ଡା ହେବନି କି ? ଆଣ୍ଠୁ ମାଡ଼ି ତଳେଇ ଯାଇ ସ୍ତ୍ରୀର ମାନଭଞ୍ଜନ କରିବା ଅନିମେଷଙ୍କ ଦେଇ ହୁଏନାହିଁ ।

କିଛି ନକହି ସେ ସାର୍ଟ ପ୍ୟାଣ୍ଟ ବଦଳାଇ ଲୁଙ୍ଗି ପିନ୍ଧିଲେ । ପୁଣି ଯାଇ ବାଥରୁମ୍‌ରେ ଧୂଆଧୋଇ ହୋଇ ଆସିଲେ । ତଥାପି ପ୍ରଜ୍ଞା ବାହାରକୁ ବାହାରି ନାହିଁ । ଡାଇନିଂ ଟେବୁଲରେ ରାତି ଖାଇବା ଘୋଡ଼ା ହୋଇ ରହିଛି—ପରଟା, ଆଳୁଦମ୍, ବାଇଗଣ ଭଜା । ସବୁ ବରଫ ପରି ଥଣ୍ଡା । ପରଟାରୁ ଟିକିଏ ଛିଣ୍ଡେଇ ଆଳୁଦମ୍‌ର ଝୋଳରେ ବୁଡ଼େଇ ପାଟିରେ ଦେଲେ ସେ । ଥୂ...ଥୂ...ଏ ଶୀତ ରାତିରେ ଏମିତି କାକର ଖାଦ୍ୟ ଖାଇ ହୁଏ ? ପ୍ରଜ୍ଞାର ରାଗ ଟିକିଏ ମାତ୍ରାଧିକ ହୋଇଯାଉନି କି ? ପାଣି ଗ୍ଲାସେକ ଢକ ଢକ କରି ପିଇ ଦେଇ ଉଠିପଡ଼ିଲେ ଅନିମେଷ । ଏକା ପ୍ରଜ୍ଞା ହିଁ ରାଗ କରିପାରେ ? ସେ ନିଜେ ମଧ୍ୟ ଦେଖାଇ ଦେବେ । କମ୍ବଳ ଖଣ୍ଡିକ ବିଛଣା ଉପରୁ ଉଠେଇ ନେଇ ଦାଣ୍ଡ ଘରକୁ ଚାଲିଗଲେ ସେ । ସୋଫା ଉପରେ ଲମ୍ବ ହୋଇ ଶୋଇପଡ଼ି କମ୍ବଳ ଘୋଡ଼ି ହୋଇ ପଡ଼ିଲେ । ଆଖି ବନ୍ଦ କରିବା ବେଳେ ଥରକ ପାଇଁ ମନ ଗୋଳେଇ ହୋଇଗଲା । ନା— ନିଜକୁ ସ୍ଥିର କରିବାକୁ ହେବ । ଘ୍ୟାଁଡ଼୍ ଘ୍ୟାଁଡ଼୍ ଭାବିବା, ରାତି ଅନିଦ୍ରା ହେବା ଏସବୁ ତାଙ୍କ ଦେଇ ହୋଇପାରିବ ନାହିଁ । ଦିନଯାକର ଭୂତପରି ଖଟଣି ପରେ ବିରହୀ ପ୍ରେମିକ ପରି ଦୀର୍ଘନିଃଶ୍ୱାସ ନେବା ବା ଦାର୍ଶନିକ ପରି ଚିନ୍ତା କରିବା କ'ଣ ସମ୍ଭବ ହୁଏ ? ଖୁବ୍ ଶୀଘ୍ର ନାକ ଡାକିବାକୁ ଆରମ୍ଭ କଲା ତାଙ୍କର ।

ପ୍ରଜ୍ଞାର ଆଖିରେ ଲୁହ ଟଳମଳ କଲା । ଏଥରକ ବି ଠିକ୍ ହେଉଥା ହେଲା ? କାହିଁକି କେଜାଣି ଗୋଟାଏ ବଡ଼ ପଦକ୍ଷେପ ନେବା ଆଗରୁ ସେ ଆଉ ଥରଟିଏ ପରୀକ୍ଷା କରିନେବାକୁ ଚାହିଁଥିଲା । କିଛି ଲାଭ ହେଲା ନାହିଁ, ଏଥର ସେଇ ହାର୍ ମାନି ନେବାକୁ ହେଲା । ମନକୁ କଠୋର କଲା ସେ । ଆଉ କିନ୍ତୁ ପୂର୍ବ ଘଟଣାର ପୁନରାବୃତ୍ତି ହେବନାହିଁ । ସବୁ ଅଭିମାନ, ଗର୍ବ ଗିଳି ନେଇ ସେ ଏଥର ସ୍ୱାମୀଙ୍କ ପାଖକୁ ଯିବନାହିଁ । ସବୁ ଖୁବ୍ ସହଜ କରିନେଇ କଥାବାର୍ତ୍ତା ଆରମ୍ଭ କରିବ ନାହିଁ । କିଛି ନହୋଇ ଥିବାର ଭଙ୍ଗୀ ନେଇ ଚଳପ୍ରଚଳ ହୋଇପାରିବ ନାହିଁ । ଗୋଟାଏ ବଡ଼ ନିଷ୍ପତ୍ତି ନେବାକୁ ହେବ । ଆଜି ହିଁ ।

ପ୍ରଜ୍ଞା ଅନେକ ଚେଷ୍ଟା କରିଛି ଅନିମେଷଙ୍କ ସହିତ ଝଗଡ଼ା ନକରିବା ପାଇଁ, ଅବୋଧ ସ୍ୱାମୀ ଉପରେ ଅଭିମାନ ନକରିବା ପାଇଁ । କିଛିଟା ନିର୍ବିକାର ହୋଇଗଲେ ଇ ତ ମୁସ୍କିଲ । ନିଜର ହାରିଯିବାର ଯନ୍ତ୍ରଣା ନେଇ ଛଟପଟ ହେବାବେଳେ ସେ ପ୍ରତିଜ୍ଞା କରେ 'ଏଇ ଶେଷ' । କିନ୍ତୁ ସେ ପାରେନାହିଁ । ସବୁ ପ୍ରତିଜ୍ଞା ମୂଲ୍ୟହୀନ ହୋଇଯାଏ । ଦୁଇ-ପାଞ୍ଚଦିନ

ପରେ କିଛି ଗୋଟାଏ ଛୋଟ ଘଟଣା ନେଇ ପୁଣି ତାଙ୍କ ସାଙ୍ଗରେ ମତାନ୍ତର ହୋଇଯାଏ ।

ଅନେକ ଥର ସେ ଭାବିଛି, ଅନିମେଶ ଏମିତି ଭିନ୍ନ ନ ହୋଇଥିଲେ କ'ଣ ଚଳି ନ ଥାଆନ୍ତା ? ସେ ଯେମିତି ସମସ୍ତଙ୍କଠାରୁ ଅଲଗା । ଅନ୍ୟ ଉପାଦାନରେ ଗଢ଼ା । ସେ କାହିଁକି ହେଲେ ନାହିଁ ସୁଦୀପ, ହରୀଶ ବା ଘନଶ୍ୟାମଙ୍କ ପରି ? କାହିଁକି ସେ ହୋଇପାରିଲେ ନାହିଁ ବଡ଼ ଭାଇନା ବା ଭଉଣୀଙ୍କ ପରି ! କାହିଁକି ?

ଏମିତି କହିଲେ କିନ୍ତୁ ଭୀଷଣ ରାଗିଯାଆନ୍ତି ସେ । "ବନ୍ଦ କର ପ୍ରଜ୍ଞା, କେତେଥର ମନା କରିଛି ଏମିତି ତୁଳନା କରିବ ନାହିଁ ମତେ ? ମୁଁ ମୁଁ...ମୋର ଆଦର୍ଶ ମୁଁ ନିଜେ । ତମ ଭଉଣୀ ବା ମୋ' ବଡ଼ ଭାଇନାଙ୍କ ଛାଞ୍ଚରେ ମୁଁ ମୋ ଜୀବନ ଢାଳି ଦେଇ ପାରିବ ନାହିଁ । ଇଚ୍ଛା ଅଛି ତ ମତେ ସଂପୂର୍ଣ୍ଣ ରୂପେ ଗ୍ରହଣ କରିନିଅ, ନହେଲେ ନାହିଁ—ରାଇଟ୍ ?"

ଦୁମ୍ ଦୁମ୍ ହୋଇ ଘରୁ ବାହାରି ଚାଲିଯାଆନ୍ତି ସେ । ବେଶି ଦୂର ଯିବାକୁ ପଡ଼େନି । ତାଙ୍କ ଗଳିର ଶେଷ ମୁଣ୍ଡରେ କ୍ଲବ୍ ଘର । ସେ ଅଞ୍ଚଳର ଯୁବକମାନଙ୍କର ଆଡ୍‌ଡାସ୍ଥଳୀ ସେଇଟା । ଅନିମେଶ ସେଇଠି ରହିଯାଆନ୍ତି । "ଆରେ ଭାଇ ସାହାବ୍, ଆଇଏ ।" କ୍ଲବ୍‌ର ସଭ୍ୟମାନଙ୍କର ଉଲ୍ଲସିତ ସ୍ୱର ଶୁଣିଲେ ସେ ଘରର ସମସ୍ତ ଅଶାନ୍ତି ଭୁଲିଯାଆନ୍ତି । ରାତି ଏଗାରଟା ଯାଏଁ ବ୍ରିଜ୍ ଖେଳି ଘରକୁ ଫେରିବା ପରେ କବାଟରେ ହାତ ଦେଉ ଦେଉ କବାଟ ଖୋଲିଯାଏ । କବାଟ ସେ ପାଖରେ ଠିଆ ହୋଇ ହସୁଥାଏ ପ୍ରଜ୍ଞା । ରାଗ, ଅଭିମାନର ଲେଶ ମାତ୍ର ଚିହ୍ନ ମୁହଁରେ ନଥାଏ । ଯେ ରାଗିବ, ସେ ନିଜ ରାଗ ଥଣ୍ଡାକରି ଶିଖୁ । ଅନିମେଶ ନିଜକୁ ବଧାଇ ଦେଇ ଖାଇବା ପାଇଁ ବସିଯାଆନ୍ତି । ପତ୍ନୀ ନିଜ ହାତରେ ଭାଜି ଆଣନ୍ତି ଗରମ ପରଟା ବା ଲୁଚି । ତରକାରୀ ଗରମ କରିଦିଅନ୍ତି । ଫ୍ରିଜ୍‌ରୁ କାଢ଼ି ଆଣନ୍ତି କଷ୍ଟାର୍ଡ଼ ନ ହେଲେ ପୁଡିଙ୍ଗ । ପୁଣି ସେଇଠି ଠିଆ ହୋଇ ବଳେଇ ବଳେଇ ସ୍ୱାମୀଙ୍କୁ ଖୁଆନ୍ତି ।

ଅନିମେଶ ମାନନ୍ତି, ବାହାଘରର ଏତେବର୍ଷ ପରେ ମଧ୍ୟ ସ୍ତ୍ରୀକୁ ଠିକ୍ ଚିହ୍ନି ପାରିଲେ ନାହିଁ । ରାଗ, ଅଭିମାନ କଣ ଏମିତି ଅଶାନ୍ତିରୁ ମିଳେ କ'ଣ ? ଅଭିମାନ ଭାଙ୍ଗିବାକୁ ସେ ଅନ୍ତତଃ ତତ୍ପର ହୁଅନ୍ତି ନାହିଁ । ଅଭିମାନ କରେ ପ୍ରଜ୍ଞା, ପୁଣି ନିଜକୁ ନିଜେ ବୁଝାଇ ସହଜ ହୁଏ ପ୍ରଜ୍ଞା । ତଥାପି କେଇଟା ଦିନ ପରେ ପୁଣି କଥା କଟାକଟି, ମନ ଫଟାଫଟି କାହିଁକି ? ଅନିମେଶଙ୍କର ଦୁଃଖ ହୁଏ, ସେ ଯାହା ଚାହୁଁଥିଲେ ସ୍ତ୍ରୀ ଭିତରେ ଠିକ୍ ସେଇଟା ପାଇ ପାରିଲେ ନାହିଁ । ପ୍ରଜ୍ଞା ଯେ ଏତେ କନ୍‌ଜରଭେଟିଭ୍ ! ସେ ଚାହେଁ ଗତାନୁଗତିକତା, ଗୋଟାଏ ଟେନ୍‌ସନ୍-ଫ୍ରି ସୁଖଦ ଜୀବନ । ଠିକ୍ ଲୋ-ବଜେଟ୍ ଫିଲ୍ମର ଗଳ୍ପପରି । ଉଃ କି ଡଲ୍ ଚିନ୍ତାଧାରା ? ଅନିମେଶ ଯେ ରୁଟିନ୍‌ବନ୍ଧା ଜୀବନକୁ ଘୃଣା କରନ୍ତି । ପତ୍ନୀ ପରି ସେ ମଧ୍ୟ ଚାହାନ୍ତି ସନ୍ତୋଷ—କିଛି ଘଟୁ ନଥିବା ଗୋଟାଏ ବୋରିଙ୍ଗ୍ ପରିବେଶ ମଧ୍ୟରେ ନୁହଁ; ତାଙ୍କର ସନ୍ତୋଷ ପ୍ରାପ୍ତି ଚ୍ୟାଲେଞ୍ଜ ପରିପୂର୍ଣ୍ଣ କରିବାରେ । ଆସନ୍ତା କାଲିକୁ ସେ ଖୁବ୍ ଆଶଙ୍କାପୂର୍ଣ୍ଣ ଦୃଷ୍ଟିରେ ଚାହାନ୍ତି । ସେଇ କାଲିକ କଟାଇବା ପାଇଁ ଆଧାର ଅଛି ତ ?

ଚ୍ୟାଲେଞ୍ଜ ଅଛି ତ ? ତା' ପରେ ପୁଣି କାଲ୍···ପୁଣି କାଲ୍ । ଅଦ୍ଭୁତ ଉତ୍ତେଜନାରେ ମନ ଭରି ଆସେ । ଥ୍ରିଲ୍ ଇ ତ ଜୀବନ । ରୁଟିନ୍‌ବନ୍ଧା ମନୋଟନି ଯେ ତାଙ୍କ ଶରୀରରେ କଲଙ୍କି ଲଗେଇ ଦେବ । ଅନିମେଶ ବଢ଼ିବାକୁ ଚାହାନ୍ତି ଆଶା ନେଇ—ଯାହା ପୂରଣ କରିବା ତାଙ୍କ ପାଇଁ ଗୋଟାଏ ନିଶା ।

ଜୀବନର ପ୍ରଥମ ପଚିଶ ବର୍ଷ ସେ ବାପାଙ୍କର ଆଶା ପୂରଣ କରିବାରେ ନିୟୋଜିତ କରିଦେଲେ । ଭଲ ପଢ଼ିଲେ, ସ୍କଲରସିପ୍ ପାଇଲେ, ଇଲେକ୍‌ଟ୍ରୋନିକ୍‌ସ ଇଞ୍ଜିନିୟର୍ ହେଲେ । ଜାପାନ ଗଲେ ବର୍ଷକ ପାଇଁ । ଫେରି ଆସି ବମ୍ବେରେ ବଡ଼ ଚାକିରି କଲେ । ଗାଁ ଘର ପକ୍‌କା ହେଲା । ତାଙ୍କ ଘରକୁ ନୂଆବୋହୂ ଆସିଲା । ସୁନ୍ଦରୀ, ଶିକ୍ଷିତା, ଆଭିଜାତ୍ୟପୂର୍ଣ୍ଣ ପରିବାରର ଏକମାତ୍ର କନ୍ୟା । ଘର ତାଙ୍କର ହସିଲା, ପୁଣି ମୁଖରିତ ହେଲା । ଯାଆଁଳା ଝିଅ ଦୁଇଟି ତାଙ୍କ ପରିବାରରେ ଫୁଲ ପରି ମହକିଲେ । କିନ୍ତୁ ତା'ପରେ ? ତା'ପରେ··· ?

ସୌଭାଗ୍ୟ ଏବଂ ଉନ୍ନତିର ଶେଷ ସୀମାରେ ପହଞ୍ଚିବାର କିଛି ପୂର୍ବରୁ ହିଁ ସେ ଚାକିରି ଛାଡ଼ିଦେଲେ । ପ୍ରଜ୍ଞା ବୁଝେଇଥିଲା । କମ୍ପାନୀର ଜେନେରାଲ୍ ମ୍ୟାନେଜର ନିଜେ ଘରକୁ ଡକାଇ ନେଇ କଥାବାର୍ତ୍ତା କରିଥିଲେ । ଖବର ପାଇ ବଡ଼ଭାଇ ଭୁବନେଶ୍ୱରରୁ ଚାଲି ଆସିଥିଲେ ଓ ବିରକ୍ତ ହୋଇଥିଲେ । କିନ୍ତୁ କି ଅଦ୍ଭୁତ ଜିଦ୍ ! ସମସ୍ତଙ୍କ ପାଇଁ ଅନିମେଶଙ୍କର ସେଇ କେତେ ପଦ କଥା, "କୌଣସି ପରିଶ୍ରମ ନକରି ଯେଉଁଠି ସୌଭାଗ୍ୟଲକ୍ଷ୍ମୀ ଆସି ହାତରେ ଧରା ଦଅନ୍ତି, ସେଠି ଜୀବନଟା ଏତେ ବେଶି ରୁଟିନ୍‌ବନ୍ଧା ଯେ ତା'ହା ମୂଲ୍ୟହୀନ ହୋଇଯାଏ । ମୁଁ ଅନ୍ୟ କିଛି କରିବି, ପ୍ରଥମରୁ ହିଁ କିଛି ଗଢ଼ିବି ।"

ବଡ଼ଭାଇନା ରାଗି ଫେରିଯାଇଥିଲେ । ଜେନେରାଲ ମ୍ୟାନେଜର ଅନନ୍ୟୋପାୟ ହୋଇ ଇସ୍ତଫା ପତ୍ର ଗ୍ରହଣ କରିନେଇଥିଲେ ଏବଂ ପ୍ରଜ୍ଞା ସାତଦିନ ତାଙ୍କ ସାଙ୍ଗରେ କଥା କହି ନଥିଲା । ବାପା ଆଉ ବଞ୍ଚି ନଥିଲେ ସେତେବେଳକୁ, ନଚେତ୍ ବୋଧହୁଏ ତ୍ୟାଜ୍ୟପୁତ୍ର କରି-ଦେଇଥାନ୍ତେ ।

କାର୍ ବିକ୍ରି ହେଲା । ବିକ୍ରି ହେଲା ସଖ୍ୟ ସଖ୍ୟ ପ୍ରଜ୍ଞା କିଣିଥିବା ମ୍ୟୁଜିକ୍ ସିଷ୍ଟମ୍ । କମ୍ପାନୀ ଦେଇଥିବା ଫର୍ନିସ୍‌ଡ଼ ଘରଛାଡ଼ି ଆସିବାକୁ ହେଲା ଚ୍ଛୋଟ ଦୁଇ ବଖରା ଭଡ଼ାଘରକୁ । ସ୍ତ୍ରୀର ଗହଣା ବ୍ୟାଙ୍କରେ ବନ୍ଧା ପଡ଼ିଲା ଲୋନ୍ ପାଇବା ପାଇଁ । ହାତପାଆନ୍ତାରେ ପାଇଥିବା ପାର୍ଥିବ ସୁଖ ସମୂହକୁ ଜଳାଞ୍ଜଳି ଦେଇଦେଲେ ଅନିମେଶ ନୂଆ ଫ୍ୟାକ୍ଟ୍ରୀ କରିବାର ନିଶାରେ, ନିଜ ହାତରେ ବ୍ୟବସାୟ ଗଢ଼ିବାର ଆଶାରେ ।

ପୁଣି ଖଟଣି । ପୁଣି ଅନେକ ଲକ୍ଷ୍ୟ । ଝିଅ ଦୁଇଟିଙ୍କ ପାଇଁ ବ୍ୟାଙ୍କରେ ଟଙ୍କା ରଖିବାକୁ ହେବ । ସ୍ତ୍ରୀର ଗହଣା ମୁକୁଳାଇବା ଦରକାର । ବ୍ୟାଙ୍କ ଲୋନ୍ ଶୁଝିବା ତ ଅଛି । ଘର ପାଇଁ କେତୋଟି ଆସେଟ୍ ମଧ୍ୟ କରିବାକୁ ହେବ । ଯେମିତି ଟି. ଭି. ଟିଏ, ମନୋରଞ୍ଜନ ପାଇଁ ଫ୍ରିଜ୍‌ଟିଏ, ପ୍ରଜ୍ଞାଙ୍କର ଆବଶ୍ୟକତା କାର୍ ଖଣ୍ଡେ ଯିବା ଆସିବା କରିବା ପାଇଁ ।

ସବୁ ହେଲା । ସବୁ କେମିତି ଶୀଘ୍ର ଶୀଘ୍ର ହୋଇଗଲା । ଆଗରୁ ବ୍ୟାଙ୍କରେ ଝିଅମାନଙ୍କ ନାଁରେ ପାଞ୍ଚ ପାଞ୍ଚ ହଜାର ଟଙ୍କା ଥିଲା । ଏଥର ପଚିଶ ହଜାର ରହିଲା । ଆଗରୁ ଚଉଷଠି ମଡେଲର ସେକେଣ୍ଡ୍ ହ୍ୟାଣ୍ଡ୍ ଆମ୍ବାସାଡ଼ରଟିଏ ଥିଲା । ଡିମ୍ କଲର୍‌ର ନୂଆ ଫିଆଟ ଏବେ ଆସି ଘର ସାମ୍ନାରେ ରହିଲା । ପ୍ରଜ୍ଞାଙ୍କର ଆଗରୁ ପନ୍ଦରଭରି ସୁନାର ଗହଣା ଥିଲା । ସେଇଟା ବଢ଼ି ବଢ଼ି ହେଲା ପଚାଶ ଭରି । କମ୍ପାନୀ ଆଗରୁ ବମ୍ବେ ସବ୍‌ଅର୍ବରେ ଫ୍ଲାଟ୍ ଦେଇଥିଲା— ଏଥର ସମୁଦ୍ରକୂଳରେ ନିଜ ଆପାର୍ଟମେଣ୍ଟ କିଣିଲେ ସେମାନେ । କେଇଟା ବର୍ଷରେ ସବୁ ବେଶୀ ବେଶୀ ହୋଇଗଲା । ଆଉ ଅଧିକ ପରିଶ୍ରମ କରିବାକୁ ହୁଏ ନାହିଁ । ପୁଣି ସେଇ ଶାନ୍ତ ସୁରକ୍ଷିତ ଜୀବନ, ମନୋଟନସ୍, ରୁଟିନ୍‌ବନ୍ଧା ।

ସେଦିନ ରାତିରେ ଖାଇବାବେଳେ ଅନିମେଷ କହିଥିଲେ, "ବୁଝିଲ ପ୍ରଜ୍ଞା, ଆଉ ଏ ବ୍ୟବସାୟ ଭଲଲାଗୁନି । କେତେ ଆଉ ମଣିଷ ଟଙ୍କା ପଛରେ ଧାଇଁବ ? ଯେଉଁ କାରଣରୁ ସ୍ଥିକରି ଛାଡ଼ିଥିଲି, ସେଇ ମନୋଟନି ଯେମିତିକି ପୁଣି ଫେରିଯାଉଛୁ ।"

ପ୍ରଜ୍ଞା ବିରକ୍ତ ହେଲେ, "ତମେ ତ କୌଣସିଥିରେ ସନ୍ତୁଷ୍ଟ ନୁହଁ ।"

ଗମ୍ଭୀର ହୋଇଯାଇଥିଲେ ଅନିମେଷ, "ତୁମେ ଯାହାକୁ ସନ୍ତୋଷ କହୁଛ, ସେଇଟା ଯେ ମୋ ପାଇଁ ଜୀବନର ଅନ୍ତ—ମୃତ୍ୟୁ । ନା…ମୁଁ ସେୟାର ବିକି କରିଦେବି । ଏଥର କିଛି ଆର୍ଟିଷ୍ଟିକ୍ କରିବ, ନହେଲେ କିଛି କ୍ରିଏଟିଭ୍ । .. ହୁଏତ ଜର୍ଣ୍ଣାଲିଜିମ୍ । ଭାରତର ଅନ୍ଧକାର ବୁଲି ଜୀବନଯାତ୍ରାର କାହାଣୀ ଲେଖିବି । ଗ୍ରେଟ ହୋଟେଲରେ ବାସନ ମାଜୁଥିବା ପିଲାର ସ୍ୱପ୍ନ ବା ଦରିଟା ଲୁଆଙ୍ଗ ମଣିଷ କରିବା ପାଇଁ ଚେଷ୍ଟା କରୁଥିବା ସ୍ଲମ୍‌ରେ ରହୁଥିବା ବାପର ସଂଗ୍ରାମ ।" ପୁଣି ଆଶା ଦେଖୁଥିଲେ ଅନିମେଷ । ବଞ୍ଚିରହିବା ପାଇଁ ଆଧାର ଖୋଜୁଥିଲେ ପରା ।

ସ୍ୱାମୀଙ୍କ ଉତ୍ସାହରେ ଭାସିଯାଇ ନଥିଲେ ପ୍ରଜ୍ଞା । ରାଗରେ ଫାଟିପଡ଼ି ଦାନ୍ତଚିପି ସେ କହିଥିଲେ, "ତୁମେ…ତୁମେ ମଣିଷଟି ପାଗଳ ନା କ'ଣ ?"

ଅନିମେଷ କେବଳ ମୁହଁ ଉଠାଇ ଥରଟିଏ ଚାହିଁଥିଲେ ପତ୍ନୀଙ୍କ ଆଡ଼େ ।

ତା'ପରେ କାହାକୁ କିଛି ନଜଣାଇ ନୂଆ ଲକ୍ଷ୍ୟ ଖୋଜିବାରେ ବ୍ୟସ୍ତ ରହିଲେ ସେ । ହଠାତ୍ ଦିନେ ଫ୍ୟାକଟ୍ରୀ ଯିବା ବନ୍ଦ ହୋଇଗଲା । ସବୁ ସେୟାର୍ ପାର୍ଟନର୍‌ମାନେ କିଣିନେଲେ । ଘରର ଆସବାବପତ୍ର, ବ୍ୟାଙ୍କ ବାଲାନ୍ସ ବା ପ୍ରଜ୍ଞାଙ୍କ ଗହଣାରେ ସିନା ହାତ ବାଜିଲା ନାହିଁ, କିନ୍ତୁ ଶାନ୍ତ ପରିବାରଟିରେ ଝଡ଼ଟିଏ ବହିଗଲା ।

ଆଖିର ଲୁହ ପୋଛିନେଲେ ପ୍ରଜ୍ଞା । ଘର ନିସ୍ତବ୍ଧ । ରିନି, ସ୍ୱାତୀ ସେପାଖ କୋଠରିରେ ନିଶ୍ଚିନ୍ତ ଭାବରେ ଶୋଇଯାଇଛନ୍ତି । ଆଗାମୀ ଅନିଶ୍ଚିତତା ସମ୍ପର୍କରେ ସେମାନେ କିଛି ବି ଜାଣନ୍ତି ନାହିଁ । ଡ୍ରଇଂରୁମରେ ଅନିମେଷଙ୍କର ନାକ ଡାକୁଛି । ସେ ଅନିଶ୍ଚିତତା ନେଇ ବଞ୍ଚିବାକୁ ଚାହାନ୍ତି । ସୁରକ୍ଷିତ, ଶାନ୍ତ ବାତାବରଣ ତାଙ୍କୁ ଯେ ଅଣନିଃଶ୍ୱାସୀ କରିଦିଏ ।

ନା—ପାରିବ ନାହିଁ ପ୍ରଜ୍ଞା । ବିଭିନ୍ନ କାରଣ ଦେଇ ଯାହା ଟାଳିଟୁଳି ଆସିଛି, ତାହାର

ଆଜି ସମ୍ପୂର୍ଣ୍ଣ ଯୀନ ହେବାକୁ ପଡ଼ିବ । ଆଜି ନିଷ୍ପତ୍ତି ନେବାକୁ ହେବ—ଆଜି ହିଁ ।

ବିଛଣାରୁ ଉଠି ସୁଇଚ୍ ଅନ୍ କଲା ସେ । ଆଲମାରୀ ଉପରେ ବଡ଼ ଭି. ଆଇ. ପି. ସୁଟ୍‌କେଶ ଦୁଇଟି ରହିଛି । ଡ୍ରେସିଂଟେବୁଲ୍‌ର ଷ୍ଟୁଲ୍ ପକେଇ ସେ କାଢ଼ି ଆଣିଲା ସୁଟ୍‌କେଶ୍ । ଏଥର ଧୂଳି ଝାଡ଼ି ଦେଇ ଦରକାରୀ ଜିନିଷ ସବୁ ପ୍ୟାକ୍ କରିବା ଆରମ୍ଭ କଲା ସେ ।

ଶୋଇବା ଘରୁ ଆସୁଥିବା ଶବ୍ଦରେ ଅନିମେଷଙ୍କ ନିଦ ହଠାତ୍ ଭାଙ୍ଗିଗଲା । ହାତର ରେଡ଼ିୟମ ଲଗା ଘଡ଼ି ଦେଖିଲେ ସେ—ଗୋଟାଏ ପଚିଶ । ସକାଳ ତ ହୋଇନି ! ଶୋଇବା ଘର ଲାଇଟ୍ ଜଳୁଛି ? ଏ କି ଶବ୍ଦ ? ନିସ୍ତବ୍ଧରେ ଶୋଇବା ଘର କବାଟ ମେଲି ଭିତରେ ପଶିଲେ ଅନିମେଷ ।

"ଏ କ'ଣ ? ରାତି ଗୋଟାଏରେ ଘର ସଜଡ଼ାସଜଡ଼ି ? ···ସୁଟ୍‌କେଶ୍ କାହିଁକି ?"

ସ୍ୱାମୀଙ୍କ ଆଡ଼େ ଥରେ ଚାହିଁଲା ପ୍ରଜ୍ଞା, କିଛି କହିଲାନାହିଁ ।

"ଆରେ···ସେ ସବୁ ସକାଳେ କରିବ—ଏବେ ଶୋଇପଡ଼—ଦେହ ଖରାପ ହେବ ।"

ତା' ଦେହ କଥା ଅନିମେଷ ଆଗରୁ କେବେ ଭାବିଛନ୍ତି କି ? ହଠାତ୍ ଆଜି କାହିଁକି ? ପ୍ରଜ୍ଞା ଦୁର୍ବଳ ହେଲା ନାହିଁ ।

ବାଳତକି ଗଣ୍ଠେଇ ଦେଇ ସ୍ଥିର ଭାବରେ ସେ କହିଲା, "ମୁଁ କାଲି ସକାଳେ ପାଟନା ଯାଉଛି—ସବୁଦିନ ପାଇଁ । ଶିନି, ସୀତାଙ୍କୁ ବି ନେଇଯାଉଛି ।"

ତଥାପି ଅନିମେଷଙ୍କ ଆଖିରୁ ନିଦ ଛାଡ଼ିନଥିଲା, "ଏ କି ପିଲାଳିଆମି ?"

"ପିଲାଳିଆମି ?" ସାମାନ୍ୟ ହସିଲେ ପ୍ରଜ୍ଞା । "ତୁମ ପାଇଁ ଯାହା ହୁଏତ ପିଲାଳିଆମି, ମୋ' ପାଇଁ ସେଇଟା ନିଚ୍ଛକ ବାସ୍ତବତା ।"

ସ୍ୱର ତଥାପି ତାଙ୍କର ନିୟନ୍ତ୍ରଣରେ ଥିଲା, "ତୁମେ ତୁମ ନିଜକୁ ଇ ନେଇ ବଞ୍ଚିବାକୁ ଚାହଁ । ଠିକ୍ ତ, ସେଠି ମୋର ବା ଗୋଟାଏ ପରିବାରର ସ୍ଥାନ କାହିଁ ? ନୂତନତ୍ୱ ନଥିଲେ ତୁମର ବଞ୍ଚିବାର ଉତ୍ସାହ ରହେନାହିଁ । ଗତାନୁଗତିକତାରେ ପରିବର୍ତ୍ତନ ଆଣିବାକୁ ଚାହଁ । ମୁଁ କିନ୍ତୁ ବଞ୍ଚିବାରେ ନିତିଦିନିଆ ଜୀବନରେ ସୁଖ ଶାନ୍ତିର ଅନୁସନ୍ଧାନ କରେ । ଆମେ ଦୁହେଁ ଦୁଇଟି ଭିନ୍ନସ୍ତରର । ଦୁଇ ସମାନ୍ତରାଳ ରେଖା । ଆମମାନଙ୍କର ମିଳନ ସମ୍ଭବ ନୁହଁ ।"

"ଦେଖ, ଦେଖ ପ୍ରଜ୍ଞା, ତୁମେ ଏକା ଏକା ଏମିତି ନିଷ୍ପତ୍ତି ନେଇପାରିବ ନାହିଁ । ତୁମର ଦୁଃଖ କ'ଣ ? ତୁମେ କ'ଣ ପାଇନ କୁହ ?"

"ସବୁ ପାଇଛି । ସମସ୍ତ ପାର୍ଥିବ ଆନନ୍ଦ ପାଇଛି । କିନ୍ତୁ ଯେଉଁଥିପାଇଁ ତୁମ ଘରକୁ ଆସିଥିଲି, ସେଇଟା ହିଁ ଅପ୍ରାପ୍ୟ ରହିଗଲା । ତୁମକୁ ଆଉ କୌଣସି ଦିନ ପାଇଲି ନାହିଁ ।"

× × × ×

ଅନେକବେଳୁ ଅନିମେଷ ସୋଫା ଉପରେ ଗୋଡ଼ ଲମ୍ବାଇ ବସିଛନ୍ତି । ମଦନ ଚାହା ଦେଇଯାଇଥିଲା, ଥଣ୍ଡା ହୋଇଗଲାଣି । ଉଇଲ୍‌ସ ଫିଲଟର୍ ପ୍ୟାକେଟରୁ ସିଗାରେଟ୍ ଖଣ୍ଡିଏ କାଢ଼ିଲେ । ଲାଇଟର୍‌ଟା ସିଗାରେଟ୍‌ରେ ଛୁଆଁଉ ଛୁଆଁଉ ହଠାତ୍ ରହିଗଲେ ସେ । ସୁନ୍ଦର

ଲାଇଟରୁଟି । ସୁନେଲି ରଙ୍ଗରେ ସେଇ ରଙ୍ଗର ଛୋଟ ଛୋଟ ଫୁଲ । ଘର ସୋଫିଷ୍ଟିକେଟେଡ୍ । ପ୍ରଜ୍ଞା ଉପହାର ଦେଇଥିଲା । ସେ ଯେବେ ଘ୍ରକର ଛାଡ଼ି ବ୍ୟବସାୟ ଆରମ୍ଭ କଲେ ଏବଂ ପତ୍ନୀ ସ୍ୱାଗରେ ସାତଦିନ କଥା କହୁନଥିଲା, ସେତକବେଳର କଥା । ସକାଳେ ଖାଇବାକୁ ବସି ଦେଖିଥିଲେ ପ୍ଲେଟ୍ ପାଖରେ ଗୋଲାପୀ କାଗଜରେ ଗୁଡ଼ା ଛୋଟ ଉପହାରଟିଏ । ତା' ସାଙ୍ଗରେ କାର୍ଡ଼ଟିଏ । ଛୋଟିଆ ଶବ୍ଦ ଲେଖାଥିଲା, "ଆଇ ଆମ୍ ସରି" । ଖୁବ୍ ଧୀରେ ଧୀରେ ପ୍ରଜ୍ଞା ତାଙ୍କ ପାଖକୁ ଆସିଥିଲା । ତାଙ୍କ ହାତକୁ ମୁହଁ ପାଖକୁ ନେଇଯାଇ କହିଥିଲା, "ଏଇ, ରାଗିଛ ?"

ଓଃ, ଆଜ କାହିଁକି ଏସବୁ କଥା ମନେପଡ଼ୁଛି ? ଆଗରୁ ତ କେବେ ସେ ତାଙ୍କ ସଂସାରର ଛୋଟ ଛୋଟ ସୁନ୍ଦର ଘଟଣାକୁ ମନେପକାଇ ନାହାନ୍ତି ?

ଅନମେଶ ଅଶାନ୍ତ ମନରେ ଡାଣ୍ଡସରେ ପଦଚାରଣା କରିବାକୁ ଲାଗିଲେ । ଘରେ କି ଫାଙ୍କା ଲାଗୁଛି, ଖାଇଗୋଡ଼ାଉଛି ଯେମିତି । ତଥାପି ଘର ବାହାରେ ପାଦ ଦେଇପାରୁ ନାହାନ୍ତି ସେ । କାଲି ପ୍ରଜ୍ଞା ସାଙ୍ଗରେ ଝଗଡ଼ା ହେଲେ ବେଶ୍ ତ କ୍ଲବ୍‌ରେ ରାତି ଏଗାରଟାଯାଏ ବ୍ରିଜ୍ ଖେଳିପାରୁଥିଲେ ? ଏକା ଏକା ସମୟକୁ ଗିଳି ପକାଇବାର ଯନ୍ତ୍ରଣା ସେ ଏଇ ପ୍ରଥମ ଥର ପାଇଁ ଅନୁଭବ କରୁଥିଲେ । ପ୍ରଥମ ଥର ପାଇଁ ପ୍ରଜ୍ଞା ଶୂନ୍ୟ କରିଯାଇଥିବା ସ୍ଥାନରେ ସେ ଖାଲି ଛୁଡ଼ା ହୋଇ ରହିଯାଇଥିଲେ ।

ଆଜ ପର୍ଯ୍ୟନ୍ତ କଥା କଟାକଟି ହେଲେ ଘର ବାହାରେ ପାଦ ରଖିଥିଲେ ସେ—ପତ୍ନୀ ନୁହଁ । ଏଇ ପ୍ରଥମ ବାହାରକୁ ଗୋଡ଼ ବଢ଼େଇଲା ପ୍ରଜ୍ଞା ଏବଂ କହିଗଲା ଯେ ଫେରିବାର ରାସ୍ତା ବନ୍ଦ କରିଦେଇ ଯାଉଛି କାହିଁକି ? କାହିଁକି ସେ ତ କେବେ ଜ୍ଞାତସାରରେ ସ୍ତ୍ରୀକୁ କଷ୍ଟ ଦେବାକୁ ଚାହିଁନାହାନ୍ତି—ତେବେ କାହିଁକି ?

ବାହାଘର ପରେ ଏଇ ଆଜି ପ୍ରଥମ ସେ ସ୍ତ୍ରୀ ସମ୍ପର୍କରେ ବା ସେମାନଙ୍କର ଦ୍ୱୈତ ଜୀବନ ସମ୍ପର୍କରେ କିଛି ଭାବୁଛନ୍ତି—ଆଗରୁ ଭାବିବାକୁ ସମୟ ପାଇନାହାନ୍ତି । ନା, ଠିକ୍ ସମୟ ପାଇ ନାହାନ୍ତି ନୁହଁ, ପରିବାର ସମ୍ବନ୍ଧରେ କିଛି ଚିନ୍ତା କରିବାକୁ ଖାଲି ସମୟ ରଖିନାହାନ୍ତି । ସେ ଆଗାମୀ କାଲି ପାଇଁ ଚ୍ୟାଲେଞ୍ଜ ଖୋଜୁଛନ୍ତି । କିଛି କରିବାକୁ ଚାହିଁଛନ୍ତି । କିଛି ପାଇବାକୁ ଚାହିଁଛନ୍ତି । ହେଲେ କାହିଁକି ? ଏକଥା ସତ ନୁହଁ କି ସେ ସଂସାରକୁ ଦେଖାଇ ଦେବା ପାଇଁ ଚାହିଁଛନ୍ତି ଯେ ସେ ସକ୍ଷମ ? ସେ ଅନନ୍ୟ ? ପରୋକ୍ଷ ଭାବରେ ସେ ନିଜକୁ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର ବୋଲି ପ୍ରମାଣିତ କରିବାକୁ ଚେଷ୍ଟା କରିନାହାନ୍ତି କି ?

ଇସ—ଏ କି ସ୍ୱାର୍ଥପର ଚିନ୍ତାଧାରା ! ସେ ଆଜିଯାଏଁ କେମିତି ବୁଝିପାରି ନଥିଲେ କେଜାଣି ?

ସେ ମୂର୍ଖଙ୍କ ପରି ଚ୍ୟାଲେଞ୍ଜ ଖୋଜୁଥିଲେ ପର । ଏଇ ତ ସେଇ ଚ୍ୟାଲେଞ୍ଜ ତାଙ୍କର ଘର ଭିତରେ ଅଛି । ସେ ଆଖି ବୁଲେଇ ନଥିଲେ ବୋଲି ସିନା । ପ୍ରଜ୍ଞା ଓଠରେ ହସ ଖେଳାଇବା, ତା' ଆଖିର ଚମକ ଧରି ରଖିବା—ଏ ଯେ ଗୋଟାଏ ବଡ଼ ଚ୍ୟାଲେଞ୍ଜ । କଣା ବ । କାରଣ

ଦିନକ ପାଇଁ ତ ନୁହଁ—ପତ୍ନୀ ପାଇଁ ଜୀବନରେ ପ୍ରତିଟି ଦିନ ସୁନ୍ଦର କରିବାକୁ ହେବ । ପ୍ରତି ମୁହୂର୍ତ୍ତ ସଜେଇ ଦେବାକୁ ହେବ ।

ତାଙ୍କର ଗଳା ଧରିଆସିଲା । ଛାତି ଭିତର ଭରି ଆସିଲା । କାଲି ସକାଳୁ ସକାଳୁ ସେ ପାଟନା ବାହାରିଯିବେ । ପ୍ରଜ୍ଞାକୁ, ପିଲାମାନଙ୍କୁ ନିଜ ପାଖକୁ ଫେରାଇ ଆଣିବେ । ତାଙ୍କ ପରିବାରକୁ ପୂର୍ଣ୍ଣ କରିଦେବେ । ତକିଆରେ ମୁଣ୍ଡ ରଖି ଶୋଇବାର ଚେଷ୍ଟା କରୁକରୁ ଅନିମେଷ ସ୍ତ୍ରୀ ଉଦ୍ଦେଶ୍ୟରେ ଗୁଣୁ ଗୁଣୁ ହୋଇ କହୁଥିଲା ଖାଲି, "ଏଇ ପ୍ରଜ୍ଞା, ଏଇ ମୋ' ହାତ । ଏହି ହାତରେ ତୁମ ହାତକୁ ଜାବୁଡ଼ି ରଖି ମୁଁ ଜୀବନର ରାସ୍ତା ଅତିକ୍ରମ କରିବି । ତୁମକୁ ଧରିରଖି, ତୁମରି ସାଙ୍ଗରେ ହିଁ ମୁଁ ଆଗାମୀ ଦିନମାନଙ୍କର ଚ୍ୟାଲେଞ୍ଜ ଖୋଜିବି । ମୋ' ପରିବାରକୁ, ତୁମକୁ ନେଇ ତ ମୋର ସମ୍ପୂର୍ଣ୍ଣତା !"

□□□

# ଏପ୍ରିଲ୍ ଆକାଶ

ବାଙ୍ଗାଲୋରଠାରୁ ଅଳ୍ପ ଦୂରରେ ଥିବା ସେହି ଗ୍ରେଟ ସହରର ଡାକ୍ତରମାନେ ଆପ୍ରାଣ ଚେଷ୍ଟା ସତ୍ତ୍ୱେ ଚନ୍ଦ୍ରାକୁ ବଞ୍ଚାଇ ପାରିଲେ ନାହିଁ । ସେମାନଙ୍କ ମତରେ ଗର୍ଭାବସ୍ଥାରେ ତାଙ୍କ ଶରୀରରେ ବିଭିନ୍ନ ରୋଗର ଇନ୍‌ଫେକ୍‌ସନ୍ ହୋଇଯାଇଥିଲା । ରିକ ଜନ୍ମ ହେବାର ମାତ୍ର ପାଞ୍ଚଦିନ ପରେ ଚନ୍ଦ୍ରାଙ୍କର ମୃତ୍ୟୁ ।

ଚନ୍ଦ୍ରାଙ୍କ ସ୍ୱାମୀ ଜର୍ଜ ପାଗଳ ପ୍ରାୟ ହୋଇଗଲେ । ବିବାହ ପର ସାତବର୍ଷ ଧରି ପରିବାର ସହିତ ତାଙ୍କର କୌଣସି ସମ୍ପର୍କ ନାହିଁ । ରକ୍ଷଣଶୀଳ ପିତାମାତା ଜଣେ ହିନ୍ଦୁ ଝିଅ ସାଙ୍ଗରେ ତାଙ୍କର ବିବାହକୁ ମାନିନେଇ ପାରିନଥିଲେ—ଯଦିଓ ଅପୋଷ ମିଳାମିଶା ଖୁବ୍ ଶୀଘ୍ର ହୋଇଗଲା । ତଥାପି କେଉଁଠି କ'ଣ ସେମିତି ହଜିଗଲା । ମା' ବାପାଙ୍କଠାରୁ ଦୂରେଇ ଗଲେ ଜର୍ଜ । ମାସ ଆରମ୍ଭରେ କିଛି ଟଙ୍କା ଓ "ଆମେ ଭଲ ଅଛୁ" ଚିଠି ଛଡ଼ା ସମ୍ପର୍କ ଆଉ ଅଧିକ କିଛି ନଥିଲା । ଚନ୍ଦ୍ରାଙ୍କ ମୃତ୍ୟୁ ପରେ ତାଙ୍କର ସଂସାର ଯେତେବେଳେ ଭାଙ୍ଗିଗଲା, ସଂସାରକୁ ଯୋଡ଼ିବା ପାଇଁ ଆଗେଇ ଆସିଥିଲା ଏଲ୍‌ସା ।

ଏଲ୍‌ସା—ଜର୍ଜଙ୍କ ଗାଁର ଝିଅ । ଟାଇପିଷ୍ଟ କାମ କରେ ସେଇ ସହରରେ । ଜର୍ଜ-ଚନ୍ଦ୍ରାଙ୍କ ବିବାହରେ କୌଣସି ଭୁଲ ସେ ଦେଖି ନଥିଲା । କ୍ରମେ ପରିବାର ସହିତ ସେ ବେଶ୍ ଘନିଷ୍ଠ ହୋଇଯାଇଥିଲା । ଚନ୍ଦ୍ରାଙ୍କର ମୃତ୍ୟୁ ପରେ ଆଉ ଥରେ ବିବାହ କରିବାକୁ ଜର୍ଜଙ୍କର ଆଦୌ ଇଚ୍ଛା ନଥିଲା । ମାତ୍ର ଜୁଲି ଓ ରିକଙ୍କୁ ଅସହାୟଭାବରେ ଦେଖିପାରି ନଥିଲେ ସେ । ତେଣୁ ଏକମାସ ପରେ ଜର୍ଜଙ୍କ ପତ୍ନୀ ରୂପେ ସେ ଘରେ ପାଦଦେଲା ଏଲ୍‌ସା । ସେଇ ପ୍ରଥମ ଦିନ ଜର୍ଜ ତାକୁ ବୁଝେଇଦେଇଥିଲେ—ସେମାନଙ୍କର ପ୍ରଥମ କାମ ହେଲା ଜୁଲି ଓ ରିକକୁ ମଣିଷ କରିବା ।

ଅବଶ୍ୟ ଜୁଲି ପାଇଁ କିଛି ଚିନ୍ତା ନଥିଲା । ପାଞ୍ଚବର୍ଷର ଝିଅ ଜୁଲି । ଏକଦମ୍ ବାପାପରି ଦେଖିବାକୁ । କିନ୍ତୁ ମା'ର ଗୁଣତକ ପାଇଥିଲା ସେ । ଖୁବ୍ ଶାନ୍ତ ଏବଂ ବାଧ୍ୟ । ହସ ହସ ମୁହଁଟିଏ ତା'ର । ଅତି ଶୀଘ୍ର ସେ ନୂଆ ମମିର ଗେହ୍ଲା ଝିଅ ହୋଇଗଲା ।

ରିକର ଶରୀର ଗଠନରେ କୌଣସି ଅସ୍ୱାଭାବିକତା ନଥିଲା । ମାତ୍ର ମୁହଁଟି ଅସାଧାରଣ ଭାବରେ ଲମ୍ବା, ଓଠ ସାମାନ୍ୟ ବଙ୍କା ଏବଂ ଆଖି ଦୁଇଟାରେ କେମିତି ଏକ ଭାବ । ଡାକ୍ତରମାନେ କହିଲେ ଚନ୍ଦ୍ରାଙ୍କର ମୃତ୍ୟୁ ଯେଉଁ ଇନ୍‌ଫେକ୍‌ସନରେ ହୋଇଥିଲା, ସେହି

ଇନ୍‌ଫେକ୍‌ସନ୍ ଯୋଗୁଁ ରିକର ମୁହଁଟି ଏପରି ହୋଇଯାଇଛି । ମାତ୍ର ସେ ଇନ୍‌ଫେକ୍‌ସନ୍ ଯେ ମସ୍ତିଷ୍କକୁ ସଂକ୍ରମିତ ହୋଇଛି, ତାହା ଜଣାପଡ଼ିଲା ଅନେକ ପରେ—ଯେତେବେଳେ ରିକ ପ୍ରାୟ ଆଠ-ନଅ ମାସର । ଭୋକ ହେଲେ କାନ୍ଦିବା ପୂର୍ବରୁ ଏକରକମ ଚିତ୍କାର କରେ ସେ । କାନ୍ଦିବା ଅନେକ କମ୍, କିନ୍ତୁ ପ୍ରାୟ ଚିତ୍କାର ସବୁବେଳେ କରେ । କଣ୍ଠଟି ତା'ର ବଡ଼ମଣିଷଙ୍କ ଭଳି ମୋଟା ।

ବର୍ଷେ ପୂରିବା ପରେ, ଜର୍ଜ ଓ ଏଲ୍‌ସା ରିକକୁ ବାଙ୍ଗାଲୋର୍‌ର ଶିଶୁ ରୋଗ ବିଶେଷଜ୍ଞଙ୍କ ପାଖକୁ ନେଇଗଲେ । ସେମାନଙ୍କ ମନରେ ଯେଉଁ ସନ୍ଦେହ ଥିଲା, ଡାକ୍ତର ତା'ହା ସତ ବୋଲି ପ୍ରମାଣ କରିଦେଇଥିଲେ । ବ୍ରେନ୍ ଇନ୍‌ଫେକ୍‌ସନ୍ ଯୋଗୁଁ ଚିରଦିନ ରିକର ମାନସିକ ବିକୃତି ରହିଯିବ ।

ଅଘାତ ପାଇଲେ ଜର୍ଜ, ଦୁଃଖ କଲେ ଏଲ୍‌ସା । ମାତ୍ର ଦୃଢ଼ମନରେ ସେମାନେ ସତ୍ୟକୁ ଗ୍ରହଣ କରିନେଲେ । ଛଅବର୍ଷର ଝିଅ ଜୁଲିକୁ ସ୍କୁଲ ବୁଝେଇ ଦେବା ପରେ ଘର ଭାରର ଅଧିକାଂଶ ଦାୟିତ୍ୱ ନେଇଗଲ ସେ । ଏଲ୍‌ସା ନିଜର ସମସ୍ତ ସ୍ନେହ ଢାଳିଦେଲେ ରିକ ଉପରେ । ତାଙ୍କର ବିଶ୍ୱାସ ଥିଲା ସ୍ନେହ ଓ ମମତା ଦେଲେ ଭଲହୋଇଯାଇପାରେ ରିକ ।

କିନ୍ତୁ ପାଞ୍ଚ-ଛଅ ବର୍ଷ ପରେ ଧୈର୍ଯ୍ୟ ଭାଙ୍ଗିଗଲା ଏଲ୍‌ସାଙ୍କର । ରିକର କୌଣସି ଆଚରଣରେ କୋମଳତା ନଥିଲା । ବିଶେଷଜ୍ଞ କହିଲେ ଯେ ରିକ ଡେଷ୍ଟ୍ରକ୍‌ଟିଭ୍ ମାନସିକ ରୋଗୀ । କୌଣସି ଖେଳନା ତା'ର ରହେନି । ଖେଳନାରେ ନଖେଳି, ତା'କୁ ଭାଙ୍ଗିବାରେ ସେ କି ଯେ ତୃପ୍ତି ପାଏ ବୁଝିପାରନ୍ତିନି ଏଲ୍‌ସା, ଜର୍ଜ । ତା' ପାଇଁ ଯେତେବେଳେ ଗ୍ଲୋବ୍ ଧାଇକେଲଟିଏ ଆସିଥିଲା ଖୁବ୍ ଖୁସି ହୋଇଥିଲା ରିକ । କିନ୍ତୁ ଆଠଦିନ ପରେ ଖଣ୍ଡେ ଇଟାରେ ପିଟି ପିଟି ସାଇକେଲ୍‌କୁ ଭାଙ୍ଗିଦେଲା ସେ । ସବୁ ସହିଯାଆନ୍ତି ଏଲ୍‌ସା । କିନ୍ତୁ ଯେଉଁଦିନ ସେ ତାଙ୍କର ଇମ୍ପୋର୍ଟେଡ୍ କ୍ୟାମେରାକୁ ଚୂନା କରିଦେଲା, ସହିପାରିଲେନି ଏଲ୍‌ସା । ତାଙ୍କ ମଧ୍ୟବିତ୍ତ ପରିବାରରେ ଏକମାତ୍ର ସୌଖୀନ ଜିନିଷ ଥିଲା ସେଇଟି । ରାଗ ମୁଣ୍ଡରେ ପ୍ରଥମ ଥର ପାଇଁ ରିକ ଉପରେ ସେଇଦିନ ହାତ ଉଠେଇଥିଲେ ସେ । ପରେ ଅବଶ୍ୟ ଭୀଷଣ ଅନୁତାପ କରିଥିଲେ । କିନ୍ତୁ ସେଇ ଘଟଣା ପରେ କିଛି ଦିନ ପାଇଁ ଚୁପ୍ ହୋଇଯାଇଥିଲା ରିକ । ଏଥର ଆଉ ସେ ଘର ଭିତରେ ଭଙ୍ଗାଭଙ୍ଗି କରେ ନାହିଁ ।

ଅବଶ୍ୟ ଖାଇବା ଓ ଶୋଇବା ସମୟକୁ ଛାଡ଼ିଦେଲେ ସେ ଅଳ୍ପ ଘରେ ରହେ କେଉଁଠି ? ଜୁଲି ସ୍କୁଲକୁ ଓ ଜର୍ଜ ଅଫିସ୍‌କୁ ଗଲାପରେ ରିକର ଜିଦ ଅନେକ ବଢ଼ିଯାଏ । ବିରକ୍ତ ହୋଇ ଏଲ୍‌ସା ତାକୁ ବାହାରକୁ ଛାଡ଼ିଦିଅନ୍ତି । କିନ୍ତୁ ସେଥିରେ ମଧ୍ୟ ରକ୍ଷା ନାହିଁ । ସବୁଦିନେ ପ୍ରାୟ ପାଖ ପଡ଼ୋଶୀମାନେ ରିକ ବିରୁଦ୍ଧରେ ଅଭିଯୋଗ କରନ୍ତି—କାହାରି କାଚ ଝରକା ଭାଙ୍ଗି ଦେଇଛି, କାହାର କୁକୁରର ଗୋଡ଼କୁ ବାଡ଼େଇ ବାଡ଼େଇ ଖୋଟା କରିଦେଇଛି ତ କାହାର ପୁଅଝିଅ ଉପରକୁ ଟେକା ପଥର ପକାଇଛି ।

ମାସେ ଦୁଇମାସ ହେବ ଜର୍ଜ ଲକ୍ଷ୍ୟ କରୁଛନ୍ତି ଏଲ୍‌ସା କେମିତି ବଦଳିଯାଉଛନ୍ତି ।

କପରି ଗମ୍ଭୀର ହୋଇଯାଉଛନ୍ତି ସେ । ବୁଝନ୍ତି, ରକର ଦାୟିତ୍ୱ ତାଙ୍କୁ ଏପରି କରି-ଦେଉଛି । କିନ୍ତୁ ସେ କ'ଣ ବା କରିପାରିବେ ? ଏଲ୍‌ସାଙ୍କୁ ସେ ବିବାହ କରିଥିଲେ ତାଙ୍କର ପିଲା ଦୁଇଟିଙ୍କ ପାଇଁ । ତଥାପି ତାଙ୍କର ପ୍ରିୟତମା ପତ୍ନୀଙ୍କର ଶୁଖିଲା ମୁହଁ ଦେଖି ପାରନ୍ତି ନାହିଁ ଜର୍ଜ । ତାଙ୍କୁ ଖୁସି ରଖିବାକୁ ସବୁ ରକମର ଚେଷ୍ଟା କରନ୍ତି ସେ । ତଥାପି ତାଙ୍କର ମନେହୁଏ ଯେପରି ନିଜ ଭିତରେ ଅନେକ କଥା ଲୁଚେଇ ରଖିଛନ୍ତି ଏଲ୍‌ସା ।

ଦିନେ କିନ୍ତୁ ଭାଙ୍ଗି ପଡ଼ିଲେ ଏଲ୍‌ସା । ରକର ପାଗଳାମୀ, ପଡ଼ୋଶୀମାନଙ୍କର ଅଭିଯୋଗ ସବୁ ଖୋଲି କହିଦେଲେ ସେ । ଚୁପ୍ ହୋଇଗଲେ ଜର୍ଜ । ଏ ସମସ୍ୟାର ସମାଧାନ କାହିଁ ?

ସେଦିନ ଅଫିସରୁ ଫେରିବା ପରେ ଜର୍ଜ ଓ ଏଲ୍‌ସାଙ୍କର ପ୍ରଥମ ଥର ପାଇଁ ବଡ଼ ଧରଣର କଳି ହୋଇଗଲା ରକକୁ ନେଇ । ସେଇଦିନ ବାରଟା ବେଳେ ରକ ଇଟାମାରି ତାଙ୍କ ପଡ଼ୋଶୀଙ୍କର ଚଉଦବର୍ଷ ଝିଅର ମୁଣ୍ଡ ଫଟେଇ ଦେଇଥିଲା । ଗ୍ରେଟ ଝିଅକୁ ନେଇ ଡାକ୍ତରଖାନାରୁ ଫେରିବା ପରେ ତା' ମା' ଏଲ୍‌ସାଙ୍କ ଉପରେ ଭୀଷଣ ବିରକ୍ତ ହୋଇଥିଲେ । ଭଦ୍ରଲୋକ ଭାବରେ ଅନେକ ଗାଳି ମଧ୍ୟ ଦେଇଥିଲେ । ଏଲ୍‌ସା ଜର୍ଜଙ୍କୁ ସ୍ପଷ୍ଟଭାବରେ କହିଦେଇଥିଲେ ରକକୁ ନେଇ କେଉଁ ଏକ ପାଗଳ ଡାକ୍ତରଖାନାରେ ଛାଡ଼ି ଦେଇ ଆସିବାକୁ ।

"ତାକୁ ତୁମେ ଘର ଭିତରେ ବନ୍ଦ କରି ରଖ ଏଥର ।"

"ଘର ଭିତରେ ବନ୍ଦକରି ରଖିବାର ଶକ୍ତି ମୋର ନାହିଁ । ଘରର ସବୁ ଜିନିଷ ଭାଙ୍ଗି ନଷ୍ଟ କରିଦେବ ସେ ।"

ଏମିତି ଯୁକ୍ତିତର୍କରେ ଏଲ୍‌ସାଙ୍କ ପାଟିରୁ ବାହାରି ଆସିଲା, "ଉଃ, ତମକୁ ବାହା ହୋଇ ସରିଗଲିଣି ମୁଁ । ଆଉ ବେଶି ଦିନ ଏ ଘରେ ରହିଲେ ମୁଁ ମଧ୍ୟ ପାଗଳ ହୋଇଯିବି ।"

ଦୁଇଦିନ ପରେ ଅବଶ୍ୟ ଏଲ୍‌ସା ଏ ଘଟଣା ଭୁଲିଗଲେ । ମାତ୍ର ଭୁଲି ପାରିଲେ ନାହିଁ ଜର୍ଜ । ଏଲ୍‌ସା ଶୋଇଯିବା ପରେ ଛୁଆକୁ ଚାହିଁ କ'ଣ ସବୁ ଭାବୁଥାନ୍ତି ସେ ।

ହଠାତ୍ ଦିନେ ଅଫିସରୁ ଫେରି ଜର୍ଜ ଏଲ୍‌ସାଙ୍କୁ କହିଲେ ରକକୁ ପ୍ରସ୍ତୁତ କରିଦେବାକୁ । ବାଙ୍ଗାଲୋର୍ ହସ୍ପିଟାଲ୍ ସହିତ ଫୋନ୍‌ରେ କଥାବାର୍ତ୍ତା କରିଛନ୍ତି ସେ, ପରଦିନ ରକକୁ ନେଇ ସେଠାରେ ଛାଡ଼ି ଆସିବେ । ଏ କଥାର ପ୍ରତିବାଦ କଲେ ନାହିଁ ଏଲ୍‌ସା । ଖୁବ୍ ମନ କଷ୍ଟ କଲେ ଜର୍ଜ । ଅନ୍ତତଃ ଗୋଟିଏ ବାକ୍ୟ—"ନା ନା, ତାକୁ ମୁଁ ଛାଡ଼ିବିନି" ଏତିକି ଶୁଣିବାକୁ ସେ ହୁଏତ ଅପେକ୍ଷା କରିଥିଲେ ।

ନିଜେ ତା' ପରଦିନ ରକକୁ ହସ୍ପିଟାଲରେ ଛାଡ଼ିଦେଇ ଆସିଲେ ସେ । ଫେରିବା ସମୟରେ ରକର ଆଖି ଦୁଇଟିକୁ କିନ୍ତୁ ଚାହିଁ ପାରି ନଥିଲେ । ସେଇ କୋଠରିର ଝରକା ଦେଇ କେମିତି ଏକ କରୁଣ ଭାବନେଇ ବାହାରକୁ ଚାହିଁଥିଲା ସେ । ସେ ଦୃଷ୍ଟିରେ ପାଗଳାମୀ ନଥିଲା, ଥିଲା ଶିଶୁର ସରଳତା । ଲୁହ ସମ୍ଭାଳି ପାରିନଥିଲେ ଜର୍ଜ ।

ଏଲ୍‌ସା କିନ୍ତୁ ଏଥର ଅନେକ ସହଜ ହୋଇଗଲେ । ଆଗ ପରି ଖୋଲାଭାବରେ ହସି ପାରିଲେ ସେ । ପୂର୍ବ ଉତ୍ସାହ ତାଙ୍କର ଫେରିଆସିଲା । ମାତ୍ର ସହଜ ହୋଇ ପାରିଲେନି ଜର୍ଜ । କିପରି ଏକ ଦୋଷୀ ଦୋଷୀ ଭାବ ତାଙ୍କର ସମଗ୍ର ସତ୍ତାକୁ ଆଚ୍ଛନ୍ନ କରି ରହିଲା । ଭୁଲିପାରିଲେନି ହସ୍‌ପିଟାଲ୍‌ରୁ ଫେରିବା ବେଳେ ରିକର ସେଇ ନିର୍ବାକ ଚାହାଣୀକୁ । ଅଫିସ୍ କାମରେ ଅଧିକରୁ ଅଧିକ ବୁଡ଼ିରହିଲେ ସେ ।

ଏଲ୍‌ସା ଚାହିଁଥିଲେ ରିକଠାରୁ ନିଷ୍କୃତି ପାଇବାକୁ । କିନ୍ତୁ ସେ ଜାଣି ନଥିଲେ ଯେ ଏଥିପାଇଁ ଜର୍ଜ ତାଙ୍କଠାରୁ ଦୂରେଇ ଯିବେ ବୋଲି । ସେ ଠିକ୍ ବୁଝିପାରିଲେ ଯେ ରିକକୁ ପାଗଳ ହସ୍‌ପିଟାଲକୁ ପଠାଇବା ପରେ ଜର୍ଜଙ୍କ ମନ ଏମିତି ବଦଳିଯାଉଛି । ପ୍ରାୟ ଦୁଇ ମାସ ପରେ ଏକପ୍ରକାର ବାଧ୍ୟ କରି ଜର୍ଜଙ୍କୁ ବାଙ୍ଗାଲୋର୍ ପଠାଇଲେ ଏଲ୍‌ସା ।

ସୁପରିଟେଣ୍ଡେଣ୍ଟ୍‌ଙ୍କଠାରୁ ଅନୁମତି ନେଇ ରିକ ପାଖକୁ ଗଲେ ଜର୍ଜ । ସାଙ୍ଗରେ ତାଙ୍କର ଥିଲେ ହସ୍‌ପିଟାଲର କର୍ମଚାରୀ ଜଣେ । ବାଟ ସାରା ସେ କହୁଥିଲେ ଯେ ଆସିବା ପରେ ରିକର ଦୁଷ୍ଟାମି ପ୍ରାୟ କମିଯାଇଛି । କେମିତି ବରଂ ଚୁପ୍ ହୋଇଯାଇଛି ସେ । ତେଣୁ ତାକୁ ଅନ୍ୟ କେତେକ ଶାନ୍ତ ପିଲାଙ୍କ ସାଙ୍ଗରେ ଆଉ ଗୋଟିଏ କୋଠରୀରେ ରଖାଯାଇଛି । ସେଠାରେ ପରସ୍ପର ବିକଟାଳ ଚିତ୍କାର କରି ଖେଳୁଥିବା ପିଲାଙ୍କ ମେଳରେ ରିକକୁ ଦେଖିଲେ ନାହିଁ ଜର୍ଜ । ତାଙ୍କୁ ଟିକିଏ ଅଟକେଇ ଦେଇ ଘରର ଗୋଟିଏ କଣକୁ ଇସାରା କଲେ କର୍ମଚାରୀ ଜଣକ । ସେଇ କଣରେ ବସି ରିକ ଝରକା ଦେଇ ବାହାରକୁ ଚାହିଁଥାଏ ।

ଧୀରେ ଧୀରେ ତା' ପାଖକୁ ଗଲେ ସେ । "ରିକ, ଦେଖ, ତୁମ ବାପା ଆସିଛନ୍ତି ପରା ।" କର୍ମଚାରୀଙ୍କ କଥା ଶୁଣି ମୁହଁ ବୁଲାଇଲା ରିକ । କିନ୍ତୁ ସେ ଦୃଷ୍ଟି କେମିତି ଫାଙ୍କା ଥିଲା । ତାଙ୍କୁ ଚିହ୍ନି ପାରିବାର କୌଣସି ଲକ୍ଷଣ ମଧ୍ୟ ନଥିଲା । କେତେଟା ମିନିଟ୍ ତାଙ୍କ ଆଡ଼େ ଚାହିଁ ପୂର୍ବପରି ଝରକା ଆଡ଼କୁ ମୁହଁ ବୁଲାଇ ବସିଗଲା ରିକ ।

ଜର୍ଜଙ୍କ ଆଖିରେ ପଲକ ପଡୁ ନଥିଲା । ବୁଝିପାରିଲେ, ତାଙ୍କ ପୁଅ ରିକକୁ ସେ ସବୁଦିନ ପାଇଁ ହରାଇ ବସିଛନ୍ତି । ମୁଣ୍ଡକୁ କୋଳରେ ଚାପି ଧରିଲେ ସେ । କାନ୍ଦିବାକୁ ଭୀଷଣ ଇଚ୍ଛା ହେଉଥିଲା ତାଙ୍କର । ହଠାତ୍ କିନ୍ତୁ ସମସ୍ତଙ୍କୁ ଚମକାଇ ହୋ ହୋ ହୋଇ ହସିବାକୁ ଲାଗିଲେ ସେ । କର୍ମଚାରୀ ଜଣକ ଆଶ୍ଚର୍ଯ୍ୟ ଭାବରେ ତାଙ୍କୁ ଚାହିଁରହିଥିଲେ । ଅନ୍ୟ ପାଗଳ ପିଲାଙ୍କର ଖେଳ ମଧ୍ୟ ବନ୍ଦ ହୋଇଗଲା । ଆଉ ନିର୍ବିକାର ରିକ ଚାହିଁଥିଲା ଝରକାଦେଇ ଏପ୍ରିଲ ଆକାଶକୁ ।

□□□

# ସୂର୍ଯ୍ୟ ଅନ୍ଧକାର

ସୂର୍ଯ୍ୟାସ୍ତ ଅଉ ବେଶି ଡେରି ନାହିଁ । ବନାନ୍ତର ଶେଷ ଆଭା ଫତେସାଗର ହ୍ରଦର ନୀଳ ଜଳରେ ପ୍ରତିଫଳିତ ହୋଇ ଚକ୍ ଚକ୍ କରୁଛି । ହ୍ରଦ ଭିତରେ ଥିବା ଅଠର ମିଟର ଉଚ୍ଚ ଫୁଆରର ରଙ୍ଗୀନ୍ ଆଲୁଅ ସବୁ ଜଳି ଉଠିଲେଣି । ଆଲୋକିତ ହୋଇଗଲାଣି ପାହାଡ଼ ଶୀର୍ଷରେ ଥିବା ରାଣାପ୍ରତାପଙ୍କର ବିରାଟ ଲୌହ ପ୍ରତିମୂର୍ତ୍ତି । ପ୍ରସିଦ୍ଧ ହଳଦୀଘାଟ ଯୁଦ୍ଧରେ ମୋଗଲ ସମ୍ରାଟ ଅକବରଙ୍କ ସୈନ୍ୟବାହିନୀର ଘୋର ଆକ୍ରମଣରେ ଖୁବ୍ ଆଘାତପ୍ରାପ୍ତ ହୋଇଥିଲା ଏଇ ବୀର ଅଶ୍ୱ ଚୈତକ । କିନ୍ତୁ ସେଇ ଘାଇଲା ଅବସ୍ଥାରେ ରାଣାଙ୍କ ଜୀବନ ବଞ୍ଚାଇ ତାଙ୍କୁ ଯୁଦ୍ଧକ୍ଷେତ୍ରରୁ ନେଇ ଯାଇଥିଲା ଘନ ଘୋର ଜଙ୍ଗଲ ମଧ୍ୟକୁ । ତା'ପରେ ତା'ର ପ୍ରାଣବାୟୁ ଉଡ଼ିଯାଇଥିଲା । ଚୈତକ ଓ ରାଣା ପ୍ରତାପଙ୍କର ବୀରତ୍ୱର ଅମର କାହାଣୀ ଭୁଲିପାରିନାହାନ୍ତି ସହରବାସୀ । ପାହାଡ଼ ଉପରେ ପ୍ରତିମୂର୍ତ୍ତି ନିକଟରେ ଠିଆହେଲେ ଦୂରରେ ଦେଖାଯାଏ ଅନ୍ୟ ଏକ ପାହାଡ଼ । ଶୀର୍ଷରେ ତା'ର ପବିତ୍ର ଏକ ଶିବ ମନ୍ଦିର । ଭାରି ପ୍ରତ୍ୟକ୍ଷ ଦେବତା । ସେଇଥିପାଇଁ ଏ ଅଞ୍ଚଳର ଲୋକମାନେ ପାହାଡ଼ କାଟି ରାସ୍ତା ତିଆରି କରିଛନ୍ତି ଓ ରାସ୍ତାର ଦୁଇକଡ଼ରେ ଲଗେଇ ଦେଇଛନ୍ତି ବିଜୁଳିବତି । ବିମାନ ଚାଳକକୁ ସତର୍କ କରିବା ପାଇଁ ଶିବ ମନ୍ଦିର ଶୀର୍ଷରେ ଥିବା ନାଲି ଆଲୁଅଟି ମଧ୍ୟ ଜଳିଉଠିଲାଣି ।

ସତରେ, ସୁନ୍ଦର ଏଇ ଉଦୟପୁର ସହର । ସମସ୍ତେ କହନ୍ତି—ପାହାଡ଼ଘେରା, ହ୍ରଦଭରା ଏ ସହରରେ କିପରି ଏକ ମାଦକତା ଅଛି । ତୁମେ କେବେ ଏଠିକୁ ଆସିଛ, ଆଦ୍ୟୋଶା ? ଆସି ନଥିବ ବୋଧେ । ରେଭେନ୍ସାରୁ ଆଇ. ଏସସି. ପାଶ୍ କରି ସାରିବା ପରେ ବୁର୍ଲାରେ ଡାକ୍ତରୀ ପଢ଼ିଲ । ଏମ୍. ବି. ବି. ଏସ୍. ପାଶ୍ କରି ଏମ୍.ଡି. କଲ ଚଣ୍ଡୀଗଡ଼ରେ । ଆଉ ଚଣ୍ଡୀଗଡ଼ରୁ ହିଁ ଏଫ୍.ଆର୍.ସି.ଏସ୍. କରିବା ପାଇଁ ଲଣ୍ଡନ ଚାଲିଗଲ । ଏବେ ଶୁଣୁଛି ତୁମେ ଅଛ ଆମଷ୍ଟରଡ୍ୟାମ୍‌ରେ । ଆଶ୍ଚର୍ଯ୍ୟ ହେଉଛ ବୋଧହୁଏ, ତୁମର ଏତେ ଖବର ମୁଁ ରଖିଛି କେମିତି ? ତୁମ ସାଙ୍ଗରେ ସମସ୍ତ ସମ୍ପର୍କ ଛିନ୍ନ କରିବା ପରେ ତୁମକୁ ମୁଁ ଦୂରେଇ ଦେଇଥିଲି ମୋ ମନରୁ । କିନ୍ତୁ ହଠାତ୍ ଦିନେ ଆବିଷ୍କାର କଲି ତୁମ ସ୍ମୃତି, ତୁମ ଭାବନା ମୋ ମନ ଚୈତନ୍ୟକୁ ଘେରିଯାଇଛନ୍ତି । ଜୋର୍ କରି ପୋଛିଦେଲେ କ'ଣ ମନର ସବୁ ଦାଗ ଲିଭି ଯାଇପାରେ ? ସେଉଁଦିନ ବୁଝିପାରିଲି ଯେ ମୁଁ ମୋ ଭିତରେ ତୁମକୁ ଝୁରୁଛି,

ସେଇଦିନ ଧାଇଁଯାଇଥିଲି ସୌରିଭ ପାଖକୁ । ହଁ—ତୁମ ମାମୁଁ ପୁଅ ଭାଇ ସୌରିଭ, ଯାହାର ମାଧ୍ୟମ ଦେଇ ତୁମ ସାଙ୍ଗରେ ମୋର ପରିଚୟ ହୋଇଥିଲା ଏବଂ ପରେ ଘନିଷ୍ଠତା । ତା'ଠାରୁ ଜାଣିଲି ତୁମେ ଆମ୍‌ଷ୍ଟରଡ୍ୟାମ୍‌ରେ ଗାଇନାକୋଲୋଜିଷ୍ଟ ଅଛ । ସ୍ତ୍ରୀ ସ୍ୱାସ୍ଥ୍ୟ ବିଜ୍ଞାନରେ ମଧ୍ୟ ବହୁତ ଗବେଷଣା ଚଳେଇଛ । ମେଡିକାଲ ଜର୍ଣ୍ଣାଲମାନଙ୍କରେ ଯେଉଁ ଡକ୍ଟର ଆୟେଶା ରେହମାନଙ୍କ ନାମ ଏବଂ ପ୍ରବନ୍ଧ ଛପା ହୁଏ, ସେ ନିଶ୍ଚୟ ତୁମେ । କଳାର ଛାତ୍ର ମୁଁ, ତୁମର ସାରଗର୍ଭକ ପ୍ରବନ୍ଧର ମାନେ ମୁଁ ବୁଝେନା, ଅଥଚ ଘରେ ମୋର ମେଡିକାଲ ଜର୍ଣ୍ଣାଲର ଭିଡ଼ । ସେଇ ମୁଦ୍ରିତ ପୃଷ୍ଠା ସବୁ ଯେ ତୁମ ଲେଖନୀ ନିଃସୃତ । ସେ ସବୁରେ ତୁମର ଚିନ୍ତାଧାରା ହିଁ ପ୍ରକାଶ ପାଇଛି । ଲେଖା ଦେଇ ତୁମ ନିକଟରେ ପହଞ୍ଚିବାର ବୃଥା ଚେଷ୍ଟାକରେ ମୁଁ ।

ଏ କଥା ଶୁଣିଲେ ମନେ ମନେ ତୁମେ ଖୁସି ହୋଇପାର । ଯିଏ ତୁମର ଗଭୀର ଭଲପାଇବା, ସରଳବିଶ୍ୱାସକୁ ପାଦରେ ଏଡ଼ାଇ ଦେଇଥିଲା, ସେଇ ମୁଁ ଏବେ ମନସ୍ତାପରେ ଜଳୁଛି । ଉଦୟପୁର ସହରର ଫତେସାଗର ହ୍ରଦ କୂଳରେ ଥିବା ଲେକ୍ ଏଣ୍ଡ୍ ହୋଟେଲ୍‌ର ୧୦୪ ନମ୍ବର କୋଠରୀରେ ମୁଁ ଶାନ୍ତି ପାଇ ପାରୁନାହିଁ । ସୌନ୍ଦର୍ଯ୍ୟଭରା ଏଇ ସହରର ପ୍ରତି କୋଣରେ ମୁଁ ତୁମକୁ ଖୋଜୁଛି ।

କୁହ ଆୟେଶା, କୁହ, ଏମିତି ହେଲି କାହିଁକି ? କାହିଁକି ମୁଁ ଏତେ କଠୋର ହେଲି ? ତୁମର ସେ ସ୍ୱପ୍ନଭୋଳା ହସ ହସ ମୁହଁରେ ମେଞ୍ଚାଏ କଳାରଙ୍ଗ ଘୃଞ୍ଚିଦେଲି କେମିତି ? ତୁମର ସେ ଟଣା ଟଣା ଦୁଇ ଆଖିର ଉଜ୍ଜ୍ୱଳତାକୁ ସବୁଦିନ ପାଇଁ ନଷ୍ଟ କରିଦେଲି କିପରି ? ପୃଥିବୀର ସର୍ବଶ୍ରେଷ୍ଠ ରତ୍ନକୁ ହାତମୁଠାରେ ପାଇ ମୁଁ ସମୁଦ୍ରର ଅତଳ ଗର୍ଭରେ ଫୋପାଡ଼ି-ଦେଲି କାହିଁକି ? କିଏ ଉତ୍ତର ଦେବ ମୋତେ ଏତେ ସବୁ ପ୍ରଶ୍ନର ? ଭୁଲ୍‌ଟା ଯେ ପର୍ବତ ପ୍ରମାଣ ରୂପେ ମୋର ଥିଲା !

ମନେଅଛି ଆୟେଶା, ଆମ ଭଲପାଇବାର ପ୍ରଥମ ଦିନସବୁ ? ପ୍ରତିଦିନ ଗୋଟାଏ ଲେଖାଏଁ ଚିଠି ନଲେଖିଲେ ତୁମେ ମୋ ସାଙ୍ଗରେ କଥା କହୁନଥିଲ । ଚିଠି ଯଦି ସ୍ୱଳ୍ପ-ପାଞ୍ଚ ପୃଷ୍ଠାରୁ କମ୍ ହେଲା, ତୁମେ ମୁହଁ ଫୁଲାଉଥିଲ, ଆଉ ମୁଁ କରୁଥିଲି ମାନଭଞ୍ଜନ । ତା' ପରଦିନ ଖୁବ୍ ଲମ୍ବା ଏକ ଚିଠିର ପ୍ରତିଶ୍ରୁତି ଦେଇ ତୁମ ମୁହଁରେ ପୁଣି ହସ ଖେଳାଉଥିଲି । ବେଳେ ବେଳେ ଚିନ୍ତାକରେ, ଏତେ ଚିଠି ଲେଖିବାକୁ ଉପାଦାନ ମିଳୁଥିଲା କେଉଁଠାରୁ ? ସାବଲୀଳ ଭାବରେ କିପରି ମୁଁ ପୃଷ୍ଠା ପରେ ପୃଷ୍ଠା ଭରିଯାଉଥିଲି ମୋ କଲମରେ ? ଏବେ ହାତ ମୋର କାଗଜ ଉପରେ ଅଟକି ଅଟକି ଯାଉଛି । ମନର ଭାଷାକୁ କଲମ ମୁନରେ ରୂପ ଦେଇପାରୁନାହିଁ । ଆଃ—କେଉଁଠି ହଜିଗଲା ସେ ଦିନସବୁ !

ଯେଉଁଦିନ ମୁଁ ଆଇ. ପି. ଏସ୍. ପାଇଗଲି, ସବୁଠାରୁ ବେଶୀ ଖୁସି ହୋଇଥିଲ ତୁମେ । ଲାଇବ୍ରେରୀ ସାମ୍ନା କରିଡୋରରେ ମୋର ଦୁଇହାତ ଧରି ଯେପରିଏ ନାଚିଯାଇଥିଲ । ଭୁଲି-ଯାଇଥିଲ ସେଇଟା କଲେଜ । ମୁଁ ଯେତେବେଳେ ତୁମ ଦୃଷ୍ଟି ଲକ୍ଷ୍ୟରେ ବସି ଟିପ୍ପଣୀ

କରୁଥିବା କେତେଟା ପିଲଙ୍କ ଆଡ଼କୁ ନେଇଗଲ, ତୁମେ ମୁହଁ ବଙ୍କେଇ ହସି କହିଥିଲ, "ଜନ୍ତୁଜନ୍ତୁ ସେମାନେ । କୌଣସି ଝିଅ ସେମାନଙ୍କୁ ଆଡ଼ ଆଖିରେ ମଧ୍ୟ ଚାହିଁବ ନାହିଁ । ଚାହିଁବେ କେମିତି ?" ତା' ପରେ ସେମାନଙ୍କୁ ଦେଖେଇ ଦେଖେଇ ମୋ ହାତରେ ହାତ ଛନ୍ଦି ନେଇଯାଇଥିଲ କଲେଜଛକରେ ଥିବା ଏକ ସୁଦୃଶ୍ୟ ରେସ୍ତୋରାଁକୁ । ଅନ୍ୱେଷା, ତୁମ ସତର ବର୍ଷ ଜୀବନରେ ଏତେ ଦାମ୍ଭିକତା, ସାହସ ଆସିଲା କେଉଁଠୁ ? ସେଇଥିପାଇଁ ବୋଧହୁଏ ମୋର ଏତେବଡ଼ ଆଘାତରେ କଷ୍ଟକ୍ରୁତ ହୋଇନଥିଲ ତୁମେ ।

ଆଇ.ପି.ଏସ୍. ପାଇବା ଗର୍ବରେ ମୁଁ ଯେତେବେଳେ ମନ ଭିତରେ ଉତ୍ଫୁଲ୍ଲ ହୋଇ ଉଠିଥିଲି, ତୁମେ ମୋ ଆଖିରେ ଆଖି ରଖି କହିଥିଲ, "ଯାହେଉ, ଖୁବ୍ ଶୀଘ୍ର ମତେ ପାଠରୁ ମୁକ୍ତି ମିଳିବ ।"

"ମାନେ…"

"ଧେତ୍, ବୋକା…"

ତୁମର ସେ ଲାଜ ଲାଜ ଚାହାଣିର ଅର୍ଥ ବୁଝିବାକୁ ଡେରି ହୋଇ ନଥିଲା । "ଓହୋ… ବାହାଘର କଥା କହୁଛ ?" ଏବଂ ମୁଁ କପଟ ଗୋଟାଏ ମିଛ ହସ ହସିଲି ।

"ହଁ ତ, ତୁମେ ଟ୍ରେନିଂରୁ ଫେରିଲେ ବାହାଘର ହେବ । …ଆରେ ତୁମେ କିଛି କହୁନ କାହିଁକି…କ'ଣ ହେଲା ?"

"ନା—ଏତେ ଶୀଘ୍ର ଏସବୁ ଏମିତି…ମୁଁ କିଛି ବୁଝି ପାରୁନାହିଁ ।" ମୁଁ ଅବୋଧତାର ଛଳନା କଲି ।

"ଓଃ, ନ ବୁଝିଲେ ନାଇଁ"—ତୁମେ ଉଲ୍ଲସିତ ସ୍ୱରରେ କହିପକେଇଲ, "ଇସ୍, କି ମଜା କୁହ ତ—ଏ ମୋଟା ମୋଟା ବାୟୋଲଜି ବହି ଆଉ ପଢ଼ିବାକୁ ହେବ ନାହିଁ ।" ପୁଣି କେମିତି ଭାବନାରେ ମଜ୍ଜି ଯାଇ କହିଥିଲ, "ଏଥରକ ମୁଁ ତୁମ ଖବର ବୁଝିବି । ଭଲ ଭଲ ଜିନିଷ ତୁମପାଇଁ ରାନ୍ଧିବି, ସିଲେଇ କରିବି ଓ ମନଇଚ୍ଛା ବୁଲିବି । କୁହ, ବୁଲେଇ ନେବ ତ ?"

ତୁମେ ଇଣ୍ଟେଲିଜେଣ୍ଟ—ଅଥଚ ପାଠପଢ଼ାରେ ଆଦୌ ଆଗ୍ରହ ନଥିଲା । ସେଇଥିପାଇଁ ବାହାଘରର ସ୍ୱପ୍ନରେ ହଜିଯାଇଥିଲ ତୁମେ । କିନ୍ତୁ ଭାଗ୍ୟ କି ଖେଳ ଖେଳିଲା କୁହ ତ ? ବାହାଘର ତୁମର ହେଲା ନାହିଁ । ମୋର ଯାହା ଅନୁମାନ, କେବେ ବି ହେବ ନାହିଁ । ଆଉ ପାଠରୁ ମୁକ୍ତି ପୁଣି ମିଳିବ କେମିତି ? ତୁମକୁ ପଢ଼ିବାକୁ ହେଲା, ବହୁତ ପଢ଼ିବାକୁ ହେଲା । କଠିନ ଡାକ୍ତରୀ ବିଦ୍ୟାକୁ ଆୟତ୍ତ କରିବାକୁ ହେଲା ।

ହାଇଦ୍ରାବାଦ ପୋଲିସ୍ ଏକାଡେମୀରେ ଟ୍ରେନିଙ୍ଗ ନେବା ସମୟରେ ତୁମର ପ୍ରେମଭରା ଚିଠିର ଉତ୍ତର ନଦେଇ ଚୁପ୍ ରହିଗଲି ମୁଁ । ତୁମେ ଅନୁନୟ କରିଛ, "ତୁମର କ'ଣ ଆଦୌ ସମୟ ନାହିଁ, ପିନାକୀ ? ସମୟ କରି ମାତ୍ର ଦୁଇଧାଡ଼ି ଲେଖିବ । 'ତୁମେ ଭଲ ଅଛ' ଏତିକି ଜାଣିଲେ ମୁଁ ଟିକିଏ ଶାନ୍ତି ପାଇବି ।" ନା—ତୁମର ଏ ଅନୁନୟ ମୁଁ ରଖି ନଥିଲି । ଖୁବ୍

ମୋ ନିରୁତ୍ତରତାର ଅର୍ଥ ଶୀଘ୍ର ତୁମେ ବୁଝିଯାଇଥିଲ । ତୁମ ପକ୍ଷରୁ ମଧ୍ୟ ଚିଠି ଆସିବା ବନ୍ଦ ହୋଇଗଲା । ସ୍ୱସ୍ତିର ନିଃଶ୍ୱାସ ନେଲି ମୁଁ । ଯାହେଉ, ଶେଷ ହୋଇଗଲା ଜୀବନର ଏକ ପର୍ଯ୍ୟାୟ ।

କିନ୍ତୁ ମୋ ଭିତର ହଠାତ୍ ଏ ପରିବର୍ତ୍ତନ ହେଲା କାହିଁକି ? ତୁମେ ମୁସଲମାନ ଝିଅ ଏବଂ ମୁଁ ରକ୍ଷଣଶୀଳ ହିନ୍ଦୁ ପରିବାରର ଜ୍ୟେଷ୍ଠ ପୁତ୍ର, ଏଥିପାଇଁ ? ନା ମୋର ଆଇ. ପି. ଏସ୍. ପଦବୀର ଗର୍ବ ମୋତେ କ୍ଷଣକେ ପାଇଁ ଅନ୍ଧ କରି ଦେଇଥିଲା ? ଏବେ ମନେପଡୁନି । ଅପ୍ରିୟ ସତ୍ୟକୁ ମଣିଷ ନିଜ ଭିତରେ ଚାପିରଖି ଭୁଲିଯିବାକୁ ଚାହେଁ ତ !

ଟ୍ରେନିଙ୍ଗ ପରେ ନନା ବୋଉ ଯେତେବେଳେ ଘରକୁ ବଡ଼ବୋହୂ ଆଣିବାର ପ୍ରସ୍ତାବ ଦେଲେ, ମୁଁ ଆଦୌ ଅସ୍ୱୀକାର କଲି ନାହିଁ । ତା'ପରେ ଆରମ୍ଭ ହେଲା ବର ବିକାକିଣାର ଏକ ପର୍ଯ୍ୟାୟ । ମନେନାହିଁ କେତେ ଝିଅ ମୁଁ ଦେଖିଛି । କିନ୍ତୁ କେଉଁଠି କନ୍ୟା ପସନ୍ଦ ହୋଇନି ତ କେଉଁଠି ଯୌତୁକର ସ୍ୱର । ଶେଷରେ ଦୁଇଟାଯାକ ଯେଉଁଠି ମନକୁ ପାଇଲା, ସେଠି ନଥିଲା ବାଧା । କାନପୁର ଆଇ. ଆଇ. ଟି.ର ପ୍ରଫେସର୍ ମହେଶ ରାୟଙ୍କ ଝିଅ ନନ୍ଦିପଦ୍ମା । ମାତ୍ର ମାଟ୍ରିକ୍ୟୁଲେଟ୍; ସେ ମଧ୍ୟ ସପ୍ତେଇ ଭାବରେ । ମୋ ମନ ଭିତରେ ସାମାନ୍ୟ କୁଣ୍ଠାଭାବ ଥିଲା ବୋଧହୁଏ । କିନ୍ତୁ ବୋଉର ଯୁକ୍ତିରେ ସେତକ ମଧ୍ୟ ଚାଲିଗଲା । ବେଶୀ ପାଠପଢ଼ୁଆ ବୋହୂ କରିବ ବା କ'ଣ ? ଯେତେ ପାଠ ପଢ଼ିବ, ସେତେ ଧନ୍ଦାକୁ ହରି ମଣିବ ସେ । ଆଉ ଶାଶୂ, ଶଶୁର ତ ତା' ଆଖିକୁ ମଣିଷ ପରି ଦିଶିବେ ନାହିଁ ।"

ଖୁବ୍ ଶୀଘ୍ର ବାହାଘର ହୋଇଗଲା ଆମର । କନ୍ୟାଘର ତରଫରୁ ଯେତେବେଳେ ଶୀଘ୍ର ବାହାଘର କରିଦେବା ପାଇଁ ଚାହିଁଲେ, ବରପକ୍ଷ ଆମର କହିବାର ବା କ'ଣ ଥିଲା ? ଅଷ୍ଟମଙ୍ଗଳା ପରଦିନ ଆମେ ହନିମୁନ୍‌ରେ ଯାଇଥିଲୁ କାଠମାଣ୍ଡୁ । ତୁମର ମନେଥିବ, କଲେଜରେ ପଢ଼ିବା ସମୟରେ ସେ ସ୍ୱପ୍ନପୁରୀ ସହର ଦେଖିବା ପାଇଁ କି ଭୀଷଣ ଇଚ୍ଛା ମୋର ଥିଲା । ତୁମେ ତା' ନେଇ ଖୁବ୍ ଥଟ୍ଟା କରୁଥିଲ ।

କାଠମାଣ୍ଡୁରେ ପହଞ୍ଚି ଏତେ ଦିନର ଆଶା ସାକାର ହେବା ଆନନ୍ଦରେ ମୁଁ ବିହ୍ୱଳ ହୋଇଉଠିଥିଲି । ଆଉ ନନ୍ଦିପଦ୍ମା···ତା'ର ପିଲାଳିଆ କଥାବାର୍ତ୍ତା ଓ ସୌନ୍ଦର୍ଯ୍ୟ ମତେ ଜିତି କରିଦେଇଥିଲା । ପ୍ରଥମ ଥର ପାଇଁ ପ୍ରିୟତମାର ସାହଚର୍ଯ୍ୟ ପାଇବା ପରି ମୋ ମନରେ ଶତ କଦମ୍ବର ରୋମାଞ୍ଚ ଫୁଟିଥିଲା । ଆଶ୍ଚର୍ଯ୍ୟ ହେଉଛ ? ସତରେ, ତମ ସ୍ମୃତି ମୁଁ ମନରୁ ସମ୍ପୂର୍ଣ୍ଣ ରୂପେ ପୋଛିଦେଇଥିଲି ।

ସେଦିନର କଥା ପରିଷ୍କାର ଭାବରେ ମନେ ଅଛି ମୋର । କାଠମାଣ୍ଡୁର ସର୍ବଶ୍ରେଷ୍ଠ ହୋଟେଲ୍ "ବ୍ଲାକ୍ ଏଣ୍ଡ୍ ହ୍ୱାଇଟ"ରେ ରହିଥିଲୁ ଆମେ । ଭୀଷଣ ଥଣ୍ଡା ପଡ଼ୁଥାଏ । ମୁଁ ପ୍ରସ୍ତାବ ଦେଲି ସନ୍ଧ୍ୟାଟା ହୋଟେଲରେ ହିଁ କଟାଯାଉ, ସବୁଦିନ ବୁଲି ବୁଲି ବିରକ୍ତ ଲାଗିଲାଣି । ଖୁସିରେ ରାଜି ହେଲା ନନ୍ଦିପଦ୍ମା । ପାଶ୍ଚାତ୍ୟ ନୃତ୍ୟର କାର୍ଯ୍ୟକ୍ରମ ଥିଲା ସେଦିନ ହୋଟେଲରେ । ନନ୍ଦିକୁ ନେଇ ଗଲି ସେଠିକୁ । ହାୱାଇର ପ୍ରସିଦ୍ଧ ଫ୍ଲୋର ଡ୍ୟାନ୍ସ । ଦୁଇ ହାତରେ

ଚକ୍ ଚକ୍ ଦୁଇଟି ଖଣ୍ଡା ଧରି ନୃତ୍ୟରତା ପନ୍ଦର ଜଣ ପାଶ୍ଚାତ୍ୟ ତରୁଣୀ । ବେଶ୍ ଭଲ ଲାଗୁଥାଏ ମୋତେ । ହଠାତ୍ ମୋ ହାତକୁ ଜାବୁଡ଼ି ଧରିଲା ଜଣି, "ଏମାନେ ଖଣ୍ଡାକୁ ଏମିତି ବୁଲାଉଛନ୍ତି କାହିଁକି ?"

"ଏଇଟା ପରି ସୋର୍ଡ଼ ଡ୍ୟାନ୍ସ", ବୁଝେଇ କହିଲି ଜଣିକୁ । ଜଣି କିନ୍ତୁ କିଛି ଯେମିତି ବୁଝିବାକୁ ପ୍ରସ୍ତୁତ ନଥିଲା ।

"ସେମାନେ ଖଣ୍ଡାରେ କାହାକୁ ମାରି ଦେବେନି ତ ? ତୁମେ ଜାଣିନ, ମୋତେ ବୋଧେ ମାରିବା ପାଇଁ ସେମାନେ ଯୋଜନା କରୁଛନ୍ତି ।"

ଏଥରକ ଜଣି ମୁହଁକୁ କାବା ହୋଇ ଚାହିଁଲି । ଦୁଇ ଆଖିରେ ତା'ର ଭୟ । ମନଟା ନରମି ଗଲା ମୋର । ଆହା, ଡରିଗଲାଣି ଝିଅଟା । ଜଣିକୁ ଧରି ତୁମ୍‌କୁ ଫେରିଆସିଲି ମୁଁ । ହ୍ୱାଟ୍ ସ୍ୟାଡ଼୍ ଅନେକ କଥା ପକେଇଲି । କିନ୍ତୁ ଜଣି ଯେମିତି ଅନ୍ୟ କେଉଁ ରାଜ୍ୟରେ । ମୋ କଥା ତାକୁ ଛୁଇଁ ମଧ୍ୟ ପାରୁ ନଥାଏ । ଚୁପ୍ ହୋଇ ବସିରହିଲି ତା' ପାଖରେ ।

କେତେବେଳେ କେମିତି ଏକ ଅସ୍ୱାଭାବିକ ସ୍ୱରରେ ଜଣି କହିଉଠିଲା, "ମୋ ଜୀବନରେ ଗୋଟାଏ ବଡ଼ କଥା ତୁମକୁ ମୁଁ କହିନି ପିନାକୀ । ସେ କଥା ଜାଣିଥିଲେ ତୁମେ ମତେ କୌଣସି ଦିନ ବିବାହ କରିନଥାଆନ୍ତ । ବାହାଘର ସମୟରେ ଔଷଧ ଦେଇ ମୋର ସ୍ମରଣ-ଶକ୍ତିକୁ ନଷ୍ଟ କରିଦେଇଥିଲେ କାନପୁରର ଜଣେ ଡାକ୍ତର । ମା' ବାପାଙ୍କର ଭୟ ଥିଲା ମୁଁ କାଳେ ସେଇଠି ବେଦୀରେ ତୁମକୁ କହିପକେଇବି ସବୁକଥା ।"

"କେଉଁ କଥା ଜଣି ?" ସେତିକବେଳେ ମୋ ମନ ପ୍ରାଙ୍ଗଣରେ ଅଳ୍ପ ସମୟ ପାଇଁ ତୁମେ ପଶିଆସିଥିଲ ଆଦ୍ୟୃଶା । ଜଣି କହିବ ତା'ର କେଉଁ ପ୍ରେମିକ କଥା, ଯାହାକୁ ବିବାହ କରିବାକୁ ସେ ଚାହିଁଥିଲା ଏବଂ ବାପା—ମା ବିରୋଧ କରି ମୋ ସାଙ୍ଗରେ ବିବାହ ଦେଇଥିଲେ ।

"ଜାଣ, ମୁଁ ଯେତେବେଳେ ବାର-ତେର ବର୍ଷର ହୋଇଥିଲି, ଅପାର ବାହାଘର ମନୁ ଭାଇନାଙ୍କ ସାଙ୍ଗରେ ହୋଇଗଲା । ତା' ପରଠୁଁ ଅପାଟା କେମିତି ବଦଳିଗଲା । ଭାଇନାଙ୍କ ସାଙ୍ଗରେ କେତେ ଥଟ୍ଟା ତାମସା, ମୁଁ ପହଞ୍ଚିଗଲେ ହଠାତ୍ ଚୁପ୍ ହୋଇଯାଏ । ବିଭିନ୍ନ ଆଳରେ ତଡ଼ିଦିଏ ମୋତେ । ସିନେମା ଗଲେ ମତେ ଆଉ ନିଏ ନାହିଁ । ଶାଢ଼ି କିଣିବାକୁ ମୋ ସଙ୍ଗ ଖୋଜେ ନାହିଁ । ଶେଷରେ ସହିପାରିଲି ନାହିଁ । ମନେହେଲା ମନୁ ଭାଇନା ଯେମିତି ଗଳ୍ପବହିର ସେଇ ଦୈତ୍ୟ, ମୋ ପ୍ରିୟ ଅପାକୁ ମୋଠାରୁ ଛଡ଼େଇ ନେଇଯାଇଛନ୍ତି । ସେଇଥିପାଇଁ ଦିନେ ବାପାଙ୍କର ଶିକାର ପାଇଁ ଥିବା ବନ୍ଧୁକରେ ଭାଇନାଙ୍କୁ···ଭାଇନାଙ୍କୁ ଗୁଳିକରି ମାରିଦେଲି ।

"ଆଏଁ !" ମୋ ପାଟିରୁ ଅଜାଣତରେ ଚିତ୍କାରଟା ବାହାରିଗଲା । ଜଣି ଖୁନୀ ? ? ? କିନ୍ତୁ ଅପାଙ୍କୁ ତ ମୁଁ ବାହାଘରେ ଦେଖିଥିଲି । ଶାଗୁଆ ବନାରସୀ, ମ୍ୟାଚିଙ୍ଗ୍ ଚୂଡ଼ି ହାତରେ, ମୁଣ୍ଡରେ ବଡ଼ ଏକ ସିନ୍ଦୂର ଟୋପା । ତେବେ ସେ କ'ଣ ଦ୍ୱିତୀୟ ଥର ପାଇଁ ବିବାହ କରିଛନ୍ତି ?

ମୋର ଏତେ ସବୁ ପ୍ରଶ୍ନର ଉତ୍ତର ଦେବ କିଏ ? ସେତିକି ବେଳଠାରୁ ନିଶି ତକିଆରେ ମୁହଁମାଡ଼ି କାନ୍ଦୁଛି । ତାକୁ ବୁଝାଇବା ପାଇଁ ହାତ ଲମ୍ବାଉ ଲମ୍ବାଉ ରହିଗଲି ମୁଁ । ଘୃଣାରେ ଦେହଟା ମୋର କେମିତି ଜଳି ଉଠିଲା । ବାସନାପୂର୍ଣ୍ଣ ଭଲପାଇବାର ଇତି ହୋଇଗଲା ସେଇଠି ।

ତା' ପରଦିନ ହିଁ ଆମେ ଫେରିଆସିଥିଲୁ ଅହମ୍ମଦାବାଦ, ମୋ କର୍ମସ୍ଥଳୀ । ବିବାହିତ ଜୀବନ କିନ୍ତୁ ମୋର ଦୁର୍ବିସହ ହୋଇଉଠିଲା । ନିଶି ସାଙ୍ଗରେ ଘର କରିପାରିଲି ନାହିଁ । ଶେଷରେ ଯେତେବେଳେ ସହିବାର ଶେଷ ସୀମାରେ ମୁଁ ପହଞ୍ଚିଗଲି, ନିଶିକୁ କିଛି ଦିନ ପାଇଁ କାନପୁରରେ ଛାଡ଼ି ଦେବାପାଇଁ ଗଲି । ମୋର ସେଇଦିନ ରାତିରେ ଫେରିଯିବା କଥା । କିନ୍ତୁ ଶାଶୁ ଅନୁରୋଧ କଲେ, "ଆଉ ଦୁଇଟା ଦିନ ରହିଯାଅ ବାପା, ସୁମୀ ଓ ମନୁ ପିଲାଙ୍କୁ ଧରି ଖରାଛୁଟି କଟାଇବାକୁ ଆସୁଛନ୍ତି ।"

"କିଏ ?" ଆଶ୍ଚର୍ଯ୍ୟରେ ମୁଁ ପଚାରିଲି ।

"ନିଶିର ବଡ଼ ଭଉଣୀ ଓ ଭିଣୋଇ । ମନୁ—ଆର୍ମିର କ୍ୟାପ୍‌ଟେନ ଶତମନ୍ୟୁ ଦାସ । ତୁମ ବାହାଘରବେଳେ ଛୁଟି ମିଳିଲା ନାହିଁ । ଖାଲି ସୁମୀ ଆସିଥିଲା ସେଇଥିପାଇଁ ।"

ନିଶି ଆଡ଼କୁ ଚାହିଁଲି ମୁଁ । ସେମିତି ନିର୍ବିକାର ଭାବରେ ଚା' ପିଇ ଚାଲିଥିଲା ସେ । ସତ କହୁଛି ଆଶ୍ଲେଷା, ଜୀବନରେ ପ୍ରଥମଥର ପାଇଁ ଏକ ଅଜଣା ଭୟ ମତେ ମାଡ଼ିବସିଲା । ସତକଥାଟା କେମିତି ପରିଷ୍କାର ହୋଇଆସୁଥିଲା । ମୁଁ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲି ସତ୍ୟକୁ ।

ନିଶି ହଠାତ୍ ବଡ଼ପାଟିରେ କାନ୍ଦିଉଠିଲା, "ମୁଁ ମନୁଭାଇନାକୁ ମାରିଦେଇଛି ବୋଉ । ସେ ଅପାକୁ କାହିଁକି ମୋଠାରୁ ଛଡ଼େଇନେଲେ ?"

ଘର ଭିତର ଅସହ୍ୟ ଏକ ନୀରବତା । ମୁଁ ଯେମିତି ପଥର । ଜାଣେନାହିଁ, କେତେ ସମୟ ଏମିତି କଟିଗଲା । ନୀରବତା ଭଙ୍ଗ କରି ସଫେଇ ଦେବା ସ୍ୱରରେ ଶଶୁର କହିଲେ, "ନିଶି ତା' ଅପାକୁ ଖୁବ ଭଲପାଏ । ମନୁ ସାଙ୍ଗରେ ସୁମୀର ବାହାଘର ହେବା ଦିନଠାରୁ ତା' ମନରେ କେମିତି ଏକ ଧାରଣା ହୋଇଯାଇଛି ଯେ, ସେ ତା' ଭିଣୋଇକୁ ମାରିଦେଇଛି । ବାସ୍ତବରେ ସୁମୀ ବାହାଘର ପରେ ଖୁବ ଏକା ହୋଇଯାଇଥିଲା । ସେଥିପାଇଁ ତ ମୁଁ ଏତେ ଶୀଘ୍ର ତା' ବାହାଘର କରେଇଦେଲି ।"

ତାଙ୍କର ସଫେଇ ମୋ ମନର ସନ୍ଦେହକୁ ଦୂର କରିପାରିଲା ନାହିଁ । ଛୁଟି ପାଇଁ ଦରଖାସ୍ତଟାଏ ପକାଇ ଦେଇ ନିଶିକୁ ନେଇଆସିଲି ଦିଲ୍ଲୀ । ମନୀଶ୍‌କୁ ମନେଥିବ ତୁମର— ମୋ ବଡ଼ବାପା ପୁଅ ଭାଇ । ତୁମ କ୍ଲାସରେ ପଢ଼ୁଥିଲା ସେଭେନ୍‌ଥରେ ଏବଂ ତୁମକୁ ସବୁବେଳେ 'ଖଉଜ' 'ଖଉଜ' ବୋଲି ଡାକୁଥିଲା । ସେଇ ମନୀଶ୍ ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ ଅଫ ମେଡ଼ିକାଲ୍ ସାଇନ୍‌ସରେ ଚକ୍ଷୁବିଶେଷଜ୍ଞ । ନିଶିକୁ ନେଇ ତା' ଘରେ ପହଞ୍ଚିଲି । ମନୀଶ୍ ଦେଖି କ'ଣ ବୁଝିଲା କେଜାଣି, ପରଦିନ ଆମ ଦୁହିଁଙ୍କୁ ସାଇକ୍ୟାଟ୍ରିକ୍ ଡିପାର୍ଟମେଣ୍ଟର

ଜଣେ ପ୍ରଫେସର୍‌ଙ୍କ ପାଖକୁ ନେଇଗଲୁ । ଡାକ୍ତର ବାଜପେୟୀ ସମସ୍ତ ସିଂପଟମ୍ ପଚାରି ପଚାରି ବୁଝିଲା ପରେ କେମିତି ଗମ୍ଭୀର ହୋଇଗଲେ । ଆଖିର ଇସାରାରେ ମନୀଷ୍ ମୋତେ ନଳିନୀକୁ ନେଇ ବାହାରକୁ ଚାଲିଯିବାକୁ କହିଲା । ପାଞ୍ଚ ସାତ ମିନିଟ ପରେ ସେ ଯେତେ-ବେଳେ ଡାକ୍ତରଙ୍କ କ୍ୟାବିନ୍‌ରୁ ବାହାରିଲା, ତା' ମୁହଁଟା କେମିତି ଥମ୍‌ଥମ୍ ଦିଶୁଥିଲା । ସାଙ୍ଗରେ ନଳିନୀ ଥିଲା, କିଛି ପଚାରି ପାରିଲି ନାହିଁ । ନଳିନୀକୁ ଘରେ ପହଞ୍ଚାଇ ଦେଇ ମନୀଷ୍ ଓ ମୁଁ ଗଲୁ ଇନ୍‌ଷ୍ଟିଚ୍ୟୁଟ୍ କ୍ୟାଣ୍ଟିନ୍‌କୁ କଫି ପିଇବା ପାଇଁ ।

ମୁଁ କିଛି ପଚାରିପାରୁନଥାଏ ମନୀଷ୍‌କୁ । ସେ ବୋଧେ କଥାଟା କେମିତି କହିବ ସ୍ଥିର କରି ନପାରି ଇତସ୍ତତଃ ହେଉଥିଲା । ଡାହାଣ ହାତରେ କଫି କପ୍‌ଟା ଘୁରାଉ ଘୁରାଉ ମୋ ମୁହଁକୁ କେମିତି ନର୍ଭସ୍ ହୋଇ ଚାହିଁଲା ସେ । "ସି ଇଜ୍ ସିଜୋଫ୍ରେନିକ୍"—ଧୀର ଗଳାରେ ସେ କହିଲା । ମୁଁ ସେମିତି ତା' ମୁହଁକୁ ବଲ ବଲ ହୋଇ ଚାହିଁରହିଥିଲି ।

"ଭଉଜଙ୍କର କେସ୍-ହିଷ୍ଟ୍ରି ଆଣିବାକୁ ପଡ଼ିବ । ରୋଗର ଏଇଟା ଅକ୍ୟୁଟ୍ ଷ୍ଟେଜ୍ । ବାହାଘର ଆଗରୁ ମଧ୍ୟ ତାଙ୍କର ଏଇ ମାନସିକ ରୋଗ ଥିଲା । ସେଇ ଅର୍ଲି ପିରିୟଡ୍‌ଟାର ହିଷ୍ଟ୍ରି ଦରକାର ।"

ପାଟିରେ ଭାଷା ନଥିଲା ମୋର । କେତେବେଳକେ କହିଲି, "ସିଜୋଫ୍ରେନିଆ ଭଲ ହୁଏନାହିଁ, ନା ରେ ?"

ତଳକୁ ମୁହଁ ପୋତିଲା ମନୀଷ୍ । "ତୁମକୁ ମିଛ କହିପାରିବିନି ପିନ୍ଟୁଭାଇନା—ଭଉଜ ଏତେ ଆକ୍ୟୁଟ୍ ପେସେଣ୍ଟ୍ ଯେ ତାଙ୍କର ଭଲ ହେବାର ଚାନ୍‌ସ ଅଲ୍‌ମୋଷ୍ଟ ଜିରୋ ।"

ପୁଣି ମୋତେ ବୁଝେଇବା ପରି କହିଲା, "ତୁମେ ମନଦୁଃଖ କରୁଛ କି ? ଚିକିତ୍ସା-ବିଜ୍ଞାନର ଯେପରି ଭାବରେ ଅଗ୍ରଗତି ହେଉଛି···"

ତାକୁ ଆଉ କହିବାକୁ ଦେଲିନାହିଁ, "ଥାଉ ମନୀଷ୍ ! ମୋ ମନ ଭୁଲେଇବାକୁ ଚେଷ୍ଟା କରୁଛୁ !" ମୁଁ ହସିଲି, "ଗୋଟାଏ ଝିଅର ଜୀବନ ମୁଁ ନଷ୍ଟ କରିଛି, ଦଣ୍ଡ ମୋତେ ମିଳିବାର ହିଁ ଥିଲା । ତୁ କହ, ଅନ୍ୱେଷା ଭଳି ଝିଅକୁ ମୁଁ ଯେପରି ଭାବରେ ପ୍ରତାରିତ କରିଛି, ତା' କ'ଣ ମୋର କରିବାର ଥିଲା ?"

"ଭାଇନା !" ମନୀଷ୍‌ର କଷ୍ଟ ମୁଁ ବୁଝିପାରୁଥିଲି । "ସେ ତୁମକୁ ଖୁବ୍ ଶ୍ରଦ୍ଧା କରୁଥିଲା ତ । ପଛ କଥା ଘାଣ୍ଟିଲେ କ'ଣ ମିଳିବ କହ ? ମୁଁ ପ୍ରଫେସର ରାୟଙ୍କ ବିରୁଦ୍ଧରେ କେସ୍ କରିବି । ଜାଣିଶୁଣି ଗୋଟାଏ ସିଜୋଫ୍ରେନିକ୍ ରୋଗୀକୁ କେମିତି ତୁମ ସାଙ୍ଗରେ ବାନ୍ଧିଦେଲେ ? ନିଜ ଝିଅର ଦାୟିତ୍ୱ ନିଜେ ନେଇପାରିଲେ ନାହିଁ ?" ଉତ୍ତେଜିତ ହୋଇପଡ଼ିଥିଲା ମନୀଷ୍ ।

"କେସ୍ କଲେ ଆଉ ମିଳିବ କ'ଣରେ ? ସେ ନିଶ୍ଚୟ ଭାବିଥିଲେ ବାହାଘର ପରେ ଝିଅ ତାଙ୍କର ଭଲ ହୋଇଯିବ । ତ' ଛଡ଼ା କୋର୍ଟ ଯଦି ମତେ ଛାଡ଼ପତ୍ର ଦେବାର ଅନୁମତି ବି ଦିଏ, ଲାଭଟା କ'ଣ ହେବ ? ସମୟକୁ କ'ଣ ବର୍ଷେ ପଛକୁ ଫେରାଇ ନେଇପାରିବୁ ? ଏଇ କେତେ ମାସ ହେଲା ମୋ ଉପରେ ଦେଇ ଯେଉଁ ଝଡ଼ ବହିଗଲାଣି, ସେଇଟା ମତେ

ପଡ଼ୁ, ଅଥବା କରିଦେଉଛୁ ରେ । ବିବାହର ମାସ କେତୋଟି ପରେ ଜଣେ ଯୁବକ ଯଦି ଆବିଷ୍କାର କରେ, ତା ପତ୍ନୀ ଜଣେ ମାନସିକ ରୋଗୀ—କହ ମଜାଣ, ତା ଜୀବନରେ ଆଉ ରହିଲା କ'ଣ ?"

ମୁଣ୍ଡରେ ମୋର ଭୀଷଣ ଯନ୍ତ୍ରଣା । ମୋ ହାତ ଧରିଲା ମଜାଣ୍—"ଘରକୁ ଚାଲ ପିନୁଭାଇନା ।"

ପ୍ରଫେସର୍ ରାୟଙ୍କୁ ଫୋନ୍ କରିବାର ପରଦିନ ହିଁ ସେ ଜଣେ ଲୋକ ହାତରେ ନଳିର କେଶ୍-ହିଷ୍ଟ୍ରି ପଠେଇଦେଲେ—ନିଜେ ଆସିପାରିଲେ ନାହିଁ । ମୋତେ ଯେଉଁଭଳି ଭାବରେ ପ୍ରତାରିତ କରିଛନ୍ତି, ତା'ପରେ ମୁହଁ ଦେଖାଇ ଆଆନ୍ତେ କିପରି ? କେଶ୍-ହିଷ୍ଟ୍ରି ଆଗ ପଢ଼ି ବସିଲା ମଜାଣ । ପୁରାଟା ପଢ଼ିବା ପରେ ମଧ୍ୟ ସେମିତି ଗାଲରେ ହାତଦେଇ ବସିରହିଲା । ପାଟିରୁ ଧୀରେ ବାହାରିପଡ଼ିଲା, "ଗଡ୍...ନୋ ।"

ପୁଣି ମୁଣ୍ଡଟେକି ମୋଆଡ଼େ ଚାହିଁଲା ମଜାଣ, "ଭାଉଜଙ୍କର ଏ ରୋଗ ବାରବର୍ଷ ବୟସରୁ ଆରମ୍ଭ ହୋଇଛି, ତା ମାନେ ଭଲ ହେବାର ଆଶା ଆଦୌ ନାହିଁ ।"

ମୁଁ ସେମିତି ଏକ ଦୃଷ୍ଟିରେ ମଜାଣକୁ ଦେଖୁଥିଲି ।

"ଭାଉଜଙ୍କର ପ୍ରଥମେ ସବୁ ରକମର ଚେକ୍ଅପ୍ କରିବାକୁ ହେବ । ପରୀକ୍ଷା କରି ଦେଖିବାକୁ ହେବ ଅତି ଶକ୍ତିଶାଳୀ ଔଷଧ ତାଙ୍କ ଶରୀର ସହ୍ୟ କରିପାରିବ କି ନାହିଁ ।"

ସେଇଦିନ ହିଁ ସବୁ ରକମର ପରୀକ୍ଷା କରାଗଲା । ଦୁଇଦିନ ପରେ ଯେତେବେଳେ ରିପୋର୍ଟ ଆସିଲା, ଅଉ ଗୋଟାଏ ବଡ଼ ଆଘାତ ପାଇବାକୁ ଥିଲି । ମଜାଣ୍ ଗମ୍ଭୀର ଭାବରେ ମତେ କେମିତି ଦୋଷ ଦେବାଭଳି ଚାହିଁ କହିଲା, "ଭାଉଜଙ୍କୁ କୌଣସି ଶକ୍ତିଶାଳୀ ଔଷଧ ପ୍ରୟୋଗ କରିପାରିବ ନାହିଁ ପିନୁଭାଇନା । ସି ଇଜ୍ ପ୍ରେଗ୍ନାଣ୍ଟ । ତାଙ୍କର ପିଲାପିଲି ହେବାର ଅଛି ।"

ମୁଁ ଖୁସି ହୋଇପାରିଲି ନାହିଁ ଆନ୍ୱେଷା—ବରଂ ଦୁଃଖ ଲାଗୁଥିଲା ମୋର ଅନାଗତ ସନ୍ତାନ ପାଇଁ । ବାରବର୍ଷ ବୟସରୁ ଯିଏ ନିଦ ଔଷଧ ତଥା ଅନ୍ୟାନ୍ୟ ଶକ୍ତିଶାଳୀ ଔଷଧ ଖାଇ ଆସୁଛି, ତା' ଉପରେ କୌଣସି କୁ-ପ୍ରଭାବ ପଡ଼ିବ ନାହିଁ କେମିତି ?

ତଥାପି ବେଳେବେଳେ ମନରେ ରଙ୍ଗ ଲାଗିଯାଉଥିଲା ଗ୍ଲେଟ ଗୋଟିଏ ଗୁଲୁଗୁଲିଆ ଛୁଆଟିଏ—ଯିଏ ତା'ର କୁନି କୁନି ଓଠ ଅଖରିଆ ଦବେଇଟି ଭାଷାରେ ମତେ ଡାକିବ "ବାବା" । ଆଃ—ମୋର ନିଜ ରକ୍ତ ତ ! ହାତ ବଢ଼ାଏ କୋଳକରି ନେବାକୁ ମୋର ସ୍ୱପ୍ନର ସେଇ ଅନାଗତ ସନ୍ତାନକୁ ।

ନା ଆନ୍ୱେଷା, ତା' ଆଉ ହେଲା ନାହିଁ । ଶକ୍ତିଶାଳୀ ଔଷଧ ଦେଇ ନଳିର ମାନସିକ ସ୍ଥିତିରେ ସାମ୍ୟ ନଆଣିଲେ, କୌଣସି ଏକ ମୁହୂର୍ତ୍ତରେ ସେ ନିଜକୁ ନେଇ କ'ଣ ଯେ କରି ବସିବ, ତା' କେହି କହିପାରିବେ ନାହିଁ । ଏଣେ ସିଜୋଫ୍ରେନିଆର ଟ୍ରିଟ୍ମେଣ୍ଟ କରିବାକୁ ଗଲେ ଅନାଗତ ଶିଶୁ ଉପରେ ଔଷଧର ଯେ କି କୁ-ପ୍ରଭାବ ପଡ଼ିବ, ତା' ତ ତୁମେ ଡାକ୍ତର ହୋଇ ଜାଣ । ଶେଷ ନିଷ୍ପତ୍ତି ମୋତେ ହିଁ ନେବାକୁ ହେଲା । ମୋ ସନ୍ତାନର ଫାଶୀ ହୁକୁମନାମାରେ ମୁଁ ଦସ୍ତଖତ କରିଦେଲି ।

ଅପରେସନ୍ ଥିଏଟର୍ ବାହାରେ ମୁଁ ସ୍ଥାଣୁ ହୋଇ ବସିରହିଥିଲି । ଗାଇନକ୍‌ର ଡାକ୍ତର ମାଲହୋତ୍ରା ବାହାରକୁ ଆସି ମାସ୍କ ଖୋଲୁ ଖୋଲୁ ମୋତେ କହିଲେ, "ସି ଇଜ୍ କ୍ଲିନ୍ ନାଓ ।" ମୋ ସ୍ତ୍ରୀର ଜରାୟୁ ନିଃସୃତ କେଇବିନ୍ଦୁ ରକ୍ତ ଭିତରେ ମୋ ଅନାଗତ ସନ୍ତାନ ମତେ ଗ୍ରହଣ କରିବା ଆଗରୁ ପ୍ରତ୍ୟାଖ୍ୟାନ କରି ଚାଲିଗଲା ଅନ୍ୱେଷା !

ଏବେ ମୁଁ ଏକା, ସମ୍ପୂର୍ଣ୍ଣ ଜୀବନରେ ଏକା । ରଶ୍ମି ଚାଲିଯାଇଛି କାନପୁର, ଆଉ କେବେ ଆସିବ ନାହିଁ ମୋ ପାଖକୁ । ଆଉ ମୁଁ—ଜୀବନରେ ଟିକିଏ ଶାନ୍ତି ଖୋଜି ବୁଲୁଛି । ବେଳେବେଳେ କ'ଣ ଇଚ୍ଛା ହୁଏ ଜାଣ, ଥରେ ମନଭରି ତୁମକୁ ଦେଖନ୍ତି । ତୁମର ସେ ଶାନ୍ତ, ଶୀତଳ, କମନୀୟ ମୁହଁ ଦେଖିଲେ ଯଦି ମତେ ଶାନ୍ତି ମିଳେ···ତୁମେ ଯଦି ଜାଣନ୍ତ, ମୁଁ ଏଠି ପାଗଳଙ୍କ ପରି ତୁମକୁ ଖୋଜି ବୁଲୁଛି, ତୁମେ ନିଶ୍ଚୟ ସବୁ ଛାଡ଼ି ମୋ ପାଖକୁ ଚାଲି-ଆସନ୍ତ, ତୁମ କୋଳରେ ମୋ ମୁଣ୍ଡ ରଖି ସାଉଁଳେଇ ଦିଅନ୍ତ ଅତି ଆଦରରେ ।

କିନ୍ତୁ ସେ ସୁଯୋଗ ଅନ୍ତତଃ ମୋ ଜୀବନରେ କଦାପି ଆସିବ ନାହିଁ । ମୋ ସହିତ ତୁମ ଭବିଷ୍ୟତକୁ ମିଶେଇ ଦେବାପାଇଁ ମୁଁ ଆଉ କେବେହେଲେ ଅନୁରୋଧ କରିପାରିବି ନାହିଁ । ମୋର ଆଗରୁ ଲେଖାହୋଇଥିବା ଅନେକ ଚିଠି ପରି ଏ ଚିଠି ଆଦୌ ପହଞ୍ଚିବ ନାହିଁ ତୁମ ପାଖରେ । ଜାଣିପାରିଲେ ତୁମେ ବ୍ୟଥିତ ହେବ । କିନ୍ତୁ କିଛି ତ ଗୋଟାଏ କରିବ, ଆନ୍ୱେଷା । ଚିଠି ଲେଖି ଚିଠି ଚିରିବା ଭିତରେ ଯେଉଁ ବ୍ୟବଧାନ, ମୁଁ ସେଇ 'ନୋ ମ୍ୟାନ୍‌ସ ଲ୍ୟାଣ୍ଡ'ରେ ମୋ କ୍ଷତବିକ୍ଷତ ଦେହର ମନଟାକୁ ଖୋଜିବୁଲୁଛି । ଆଉ ସେଇ ମନର ଗୋଟାଏ କଣରେ ତୁମେ ହେଇମିତି ଜଳୁଛ । ମୁଁ ଚାଲିଛି ମାଇଲ ମାଇଲ୍ ବାଟ—ଗୁଲ୍‌ମାର୍ଗରୁ ଦାର୍ଜିଲିଂ, ଦାର୍ଜିଲିଂରୁ ଉଦୟପୁର, ତୁମର ସେଇ ସ୍ମୃତି ସବୁକୁ ହାତ ବଢ଼େଇ ଛୁଇଁବାର ଚେଷ୍ଟାରେ ।

□□□

# କକ୍ଷଚ୍ୟୁତ

ରାନୁ ସବୁବେଳେ କହୁଥିଲା ସ୍ୱାମୀ ସ୍ତ୍ରୀ ପରସ୍ପରଠାରୁ କେତେଟା କଥା ଲୁଚେଇ ରଖିବା ଭଲ । ପ୍ରେମ, ଆଦର୍ଶ ଓ ବିଶ୍ୱାସର ଦୋହାଇ ଦେଇ ସବୁ ଖୋଲାଖୋଲି କରିଦେଲେ, ପ୍ରତ୍ୟକ୍ଷ ଭାବରେ ହେଉ ବା ପରୋକ୍ଷ ଭାବରେ, ମନ ଫଟାଫଟି, ଭୁଲ ବୁଝାମଣା ହେବ ହିଁ ହେବ । ଏଇ ଯେମିତି ସ୍ତ୍ରୀର ପ୍ରାକ୍‌ବୈବାହିକ ଜୀବନରେ ଆସିଥିବା ପୁରୁଷ ବନ୍ଧୁଙ୍କ କଥା । କଥାଟି ସବୁବେଳେ ପତ୍ନୀର ଖୁବ୍ ଗୋପନୀୟ ହୋଇ ରହିଯାଉ, ସେ ହିଁ ଭଲ । କେତେ ଜଣ ସ୍ୱାମୀ ଏସବୁକୁ ସହଜ ଭାବରେ ଗ୍ରହଣ କରିପାରିବେ ? ଶେଫାଳୀ ରାନୁ କଥାରେ ରାଜି ହୋଇ ପାରେନା । ସେ ବଡ଼ ଜୋର୍‌ରେ ଯୁକ୍ତି କରେ । ପୌରାଣିକ ଗଳ୍ପର ଚରିତ୍ରମାନଙ୍କ ଜୀବନ ଦିଏ । ମନସ୍ତାତ୍ତ୍ୱିକ ଥିଓରୀ ରାନୁ ଆଗରେ କିନ୍ତୁ ସେ ସବୁ କାଟ୍ ଖାଇଯାଏ । ସେ ବଡ଼ ବଡ଼ ପ୍ରଫେସର୍‌ଙ୍କର ପ୍ରବନ୍ଧ ଆଣି ଦେଖାଏ । ବାସ୍ତବ ଜୀବନର ବହୁ ଘଟଣା ଆଣି ଥୋଇଦିଏ ବନ୍ଧୁ ଆଗରେ । ଉଦାହରଣ ଦେଇ ନିଜ କଥାର ଗୁରୁତ୍ୱ ବଢ଼ାଏ । ଶେଫାଳୀ ହାରିଯାଏ, ତଥାପି ମାନେନା । ସବୁବେଳେ କହେ, ଦେଖିବୁ ରହିଥା, ମୁଁ ବାହାହେଲେ ମୋ ଜୀବନର କୌଣସି କଥା ସ୍ୱାମୀଠୁ ଲୁଚେଇବିନାହିଁ ।

ସତରେ ସେ ଚେଷ୍ଟା କରିଥିଲା ମଧ୍ୟ । ବାହାଘରର ଦିନ କେଇଟା ପରେ ହିଁ ପ୍ରବୀରଙ୍କୁ ବାଦଲ କଥା କହିଦେଇଥିଲା । କଲେଜ୍‌ରେ ପଢ଼ିବା ସମୟରେ ହିଁ ଶେଫାଳୀର ବାଦଲ ସହିତ ସମ୍ପର୍କ । କଥା ସେମିତି କିଛି ଗଭୀରକୁ ଯାଇନଥିଲା । ଅଧ ଘଣ୍ଟାଏ ଘଣ୍ଟାଏ ଧରି ଫୋନ୍‌ରେ କଥାବାର୍ତ୍ତା, ହଠାତ୍ ଦେଖାହୋଇଗଲେ ଚୁପା ହସ, ଚୋରା ଚାହାଣି, କିଛି କିଛି ସ୍ୱପ୍ନ, ଆଉ କେଇଟା ଭବିଷ୍ୟତ ପାଇଁ ପ୍ରତିଜ୍ଞା । କିନ୍ତୁ ଯିଏ ଯେତେ କୈଫିୟତ୍ ଦେଉ, ପ୍ରେମଇ ତ । ସ୍ୱାମୀର ମୁଣ୍ଡଛୁଇଁ ଅନ୍ତତଃ ଶେଫାଳୀ କେବେ କହିପାରିବ ନାହିଁ ଯେ ସେ ତା' ଜୀବନର ପ୍ରଥମ ପୁରୁଷ । କିଏ ସହିବ ? ସବୁ ବୁଝି, ସବୁ ଜାଣି ମଧ୍ୟ ଶେଫାଳୀ ଏତେଟା ସାହସ କଲା । ଯେଉଁ ଅଜଣା ପ୍ରବୀର ମିଶ୍ର ତା' ସଂସାର କେନ୍ଦ୍ରବିନ୍ଦୁ ରୂପେ ଆସିଯାଇଥିଲେ; ତାଙ୍କଠାରୁ କିଛି କଥା ଲୁଚାଇ ଜୀବନ ଆରମ୍ଭ କରିବାକୁ ଇଚ୍ଛା ହେଲାନାହିଁ ତା'ର । ପରେ କେବେ ଏ ଘଟଣା ମୁଣ୍ଡଟେକି ବିଷୋଦ୍‌ଗାର କରିବା ଅପେକ୍ଷା ପ୍ରଥମରୁ ହିଁ ସମାଧାନ ହୋଇଯାଉ । ସେ ତେଣୁ ଖୁବ୍ ଦୃଢ଼ ମନରେ ରିସ୍କ ନେଲା ଏବଂ ଜିତିଗଲା । ପ୍ରବୀରଙ୍କ ଫୁଃଫୁଃକାରରେ ବାଦଲ କେଉଁଠି ଆକାଶରେ ହଜିଯାଇଥିଲେ ।

ହାତଟି ସାଧାରଣ, ସୁନ୍ଦର ବର୍ଷ ଗୁଡ଼ିକ ଯିବା ପରେ ହଠାତ୍ ଯେ ଦିନେ ସେଇ କଳା ମେଘ ତା' ଘର ଅଗଣାରେ ଆସି ହାଜର ହେବ, ଏକଥା ତ ଶେଫାଳି ଥରେ ବି ଚିନ୍ତା କରିନଥିଲା । ଯିଏ ଗଲା—ଗଲା—ଆଖି ସାମ୍ନାରୁ ଗଲା । ଗଲା ହୃଦୟରୁ, ପୁଣି ଜୀବନରୁ । ଆଉ ଥରେ ସେଇ—

"ଦେଖ ତ ଶେଫାଳି, କିଏ ଆସିଛୁ ! ଚିହ୍ନି ପାରୁନ ? ଏ ବାଦଲ ପଣ୍ଡା, ତୁମ କଲେଜ ବେଳର ବନ୍ଧୁ । ...ଏଇ କିଛି ଦିନ ତଳେ ଅଜିତ ଘରେ ପରିଚୟ ହେଲା । ଧୀରେ ଧୀରେ ପୁଣି ଘନିଷ୍ଠତା । ହଠାତ୍ ଦିନେ କଥାରୁ କଥାରୁ ଜାଣିଲି ଏ ଆମର ସେଇ ବାଦଲ । ଆଜି ସୁବିଧା ପାଇ ଧରିଆଣିଛି ।"

ସ୍ୱାମୀଙ୍କ ପ୍ରଗଲ୍‌ଭତାରେ ବିବ୍ରତ ହେଲା ଶେଫାଳି । ଓଃ ଏ କି ପରିସ୍ଥିତିରେ ପକାଉଛନ୍ତି ପ୍ରବୀର ! କ'ଣ କରିବ ସେ ? ହସିବ ନା ହାତ ଯୋଡ଼ିବ ? ନା ଗମ୍ଭୀର ହୋଇ ତାଙ୍କୁ ଦେଖି ନଦେଖିବା ଭଳି ଚାଲିଯିବ ? ସେଇଟା କିନ୍ତୁ ଖୁବ୍ ଖରାପ ହେବ । ହେଲେ ହେଉ, ଦୁନିଆସାରାକର ଲୋକଙ୍କ ମନ ଜଗି ଚାଲିବାକୁ ସେ ଠିକା ନେଇଛି କି ? ଉଠି ଚାଲିଯିବାକୁ ବସିଥିଲା ସେ ।

ବାଦଲଙ୍କ ସମ୍ଭାଷଣରେ ପାଦ ବାନ୍ଧି ହୋଇଗଲା ଯେମିତି, "ହାଏ ଶୋଫି ।"

ଶୋଫି ? ସେଇ ପୁରୁଣା ଡାକ ?? ଶେଫାଳି ମୁଣ୍ଡକୁ ରାଗ ଚଢ଼ିଗଲା ଯେମିତି ! ତୁମେ କିଏ ମୋ ବାପା-ମା' ଦେଇଥିବା ନାଁଟାକୁ ବଦଳାଇ ଦେବ ? ନଅବର୍ଷ ତଳେ ପ୍ରଥମ କରି ବାଦଲ ଡାକିଥିଲେ ଶୋଫି । କୁଆଡ଼େ ଶେଫାଳି ନାଁଟା ଭୀଷଣ ହେଭି ଓ ଆଉଟ୍‌ଡେଟେଡ୍ । ସୁନ୍ଦରୀ ଝିଅଙ୍କର ନାଁ ବି ହାଲ୍‌କା, ସ୍ୱପ୍ନଭରା ହେବା ଦରକାର—ବାଦଲ ଯୁକ୍ତି ବାଢ଼ିଥିଲା । ପ୍ରେମର ରଙ୍ଗୀନ ନିଶାରେ ନାଁଟା ତା'ର ପସନ୍ଦ ହୋଇଯାଇଥିଲା । ଆଜି କାହିଁକି ବାରହାତ ଟାଙ୍ଗାଇଲ ଶାଢ଼ିରେ ଗୁଡ଼େଇ ହୋଇଥିବା ଶେଫାଳିକୁ ଶୋଫି ନାଁଟା ଖୁବ୍ ଫମ୍ପା ଓ ହାସ୍ୟକର ମନେହେଲା ।

"ହ୍ୟାଲୋ..."

ଅତି ସଂକ୍ଷେପରେ ସମ୍ଭାଷଣର ଉତ୍ତର ଦେଇ ଭିତରେଇଘରକୁ ଚାଲିଯାଇଥିଲା ସେ । କଣେଇ ଦେଖିଲା ସ୍ୱାମୀଙ୍କ ଓଠରେ ଶ୍ଳେଷ ହସଟିଏ ।

ହୁଁ—ମଜା ଲାଗିଛି ତ ! ସ୍ତ୍ରୀକୁ ଏମିତି ଗୋଟାଏ ଅପ୍ରସ୍ତୁତ କରିବା ଭଳି ପରିସ୍ଥିତିରେ ପକେଇଦେଇ ଦାନ୍ତ ଦେଖେଇବାକୁ ତ କରିବେ ଆଉ କ'ଣ ?

ଚା' ପାଣି ଗ୍ଳାସ୍‌ରେ ବସିଥିଲା ବସିଥିଲା ପ୍ରବୀରଙ୍କ ଅଣ୍ଟାଳିଆ କଥା କାନରେ ବାଜିଲା । ସେଆଡ଼େ କାନେଇଲା ସେ ।

"ବନ୍ଧୁ, ସେ ପୁରୁଣା ଡାକ ଛାଡ଼ିବାକୁ ହେବ । ନହେଲେ ମୋର ସେଇଁ ମରହଟ୍ଟୀ ବୋଉ ଖଣ୍ଡିକ ଅଛି ସେ ସିଧା ତୋ ପାଇଁ ଘର ସାମ୍ନାରେ 'ପ୍ରବେଶ ନିଷେଧ' ସାଇନବୋର୍ଡ଼ ଲଗେଇଦେବ । ଦେଖୁନ, ମୋ ବାହାଘର କେତେ ମିସ୍ ଧମୁକ, ମିସ୍ ଅମୁକଙ୍କ ହାତରେ

ପଡ଼ିଥିବା ସତ୍ତ୍ୱେ ଆଣି ଜୁଟେଇଦେଲା ଶେଫାଳୀଟାଏ । ଧରିଥା ଓଡ଼ିଆଣୀ ଲଙ୍କୁ ।"

ବାଦଲ କଣ୍ଠରେ କିଛିଟା ଇତସ୍ତତଃ ଭାବ ଥିଲା, "ତେବେ ?"

"କାହିଁକି, ଭାରତୀୟ ନାରୀ ତାଳିପାର ! ଭାରି ସୁନ୍ଦର ଏବଂ ଆକ୍‌ସେପ୍‌ଟେବଲ୍ । ବୋଉର ମଧ୍ୟ ଆପତ୍ତି ରହିବ ନାହିଁ ।"

କିଛି ସମୟ ଆଗରୁ ଯେଉଁ ସ୍ୱାମୀ ଉପରେ ରକ୍ତଭଳ ଫୁଟିବାଉଥିଲା, ସେଇ ପ୍ରବୀରଙ୍କୁ ଦୁଇ ହାତରେ ଜାବୁଡ଼ିଧରି ଚିକିଏ ଗେହ୍ଲା କରିଦେବାକୁ ଖୁବ୍ ଇଚ୍ଛା ହେଲା ଶେଫାଳୀର । ଠିକ୍ ହୋଇଛି—ଖୁବ୍ ହୋଇଛି । ଜିଗୋଲୋଟ୍ ବାଦଲ ଦାସ ପାଇଛି ପାନେ । ସ୍ତ୍ରୀ ତରଫରୁ ପ୍ରବୀର ଯେମିତି ତା' ଉପରେ ପ୍ରତିଶୋଧ ନେଇଗଲେ ।

ବାଦଲ ସହିତ ତା'ର ଛଅମାସର ସମ୍ପର୍କ ବିଷୟରେ ଶେଫାଳୀ ସ୍ୱାମୀଙ୍କୁ ସବୁ କହିଛି । କହିଛି ଲାଇବ୍ରେରୀ ବାହାରେ ଘଣ୍ଟା ଘଣ୍ଟା ଧରି ଗପିବା କଥା, କ୍ଲାସ ମିସ୍ କରି ଏକାଠି ମ୍ୟାଟିନି ସୋ ସିନେମା ଯିବା କଥା । କଥା ଶେଷ କରିଥିଲା କେବଳ ଏତିକି କହି ଯେ—ହଠାତ୍ ବାଦଲ ତା' ପାଇଁ ପରପୁରୁଷ ହୋଇଗଲା ଏବଂ ସେ ବାଦଲ ପାଇଁ ଅନ୍ୟ ନାରୀ ।

ଏହା ପଛରେ କି ଯେ ଆଘାତ, ଅପମାନ ସେ ଲୁହ୍ୟ ରଖି ଦେଇଥିଲା ତା' ପ୍ରବୀର ଜାଣିପାରି ନଥିଲେ । ପ୍ରେମିକଟିଏ ପ୍ରେମିକାକୁ ଯଦି ମୁହେଁ ମୁହେଁ କହିଦିଏ—'ତୁମେ ମୋର ଯୋଗ୍ୟା ନୁହଁ', ଏହାଠୁ ବଳି ଅପମାନ ଆଉ କ'ଣ ହୋଇପାରେ ? ସେଇ ଅପମାନ ତ ପାଇଥିଲା ଶେଫାଳୀ । ସେ ଖୁବ୍ ରକ୍ଷଣଶୀଳା । ସୁବିଧା ପାଇଲେ ବି ବାଦଲ ଛାତିରେ ଲତା ଭଳି ଲେଟି ଯାଇ ପାରେନାହିଁ । ଇଚ୍ଛା ଥିଲେ ବି ରାସ୍ତା ଲୋକଙ୍କ ଦୃଷ୍ଟିକୁ ଭ୍ରୂକ୍ଷେପ ନକରି ପ୍ରେମିକର ହାତରେ ହାତ ଛନ୍ଦିଦେଇପାରେନାହିଁ । ଏ ତ ବାଦଲ ଦାସର ଗାର୍ଲଫ୍ରେଣ୍ଡ ହୋଇ ରହିବା ପାଇଁ ଏକଦମ୍ ଅଯୋଗ୍ୟ । ଶେଫାଳୀ ଓ ତା'ର ରକ୍ଷଣଶୀଳ ମନୋବୃତ୍ତିଠାରୁ ଦୂରେଇ ଯିବାର ନିଷ୍ପତ୍ତି ନେଇଗଲା ବାଦଲ—ଖୁବ୍ ସେଲ୍‌ଫିସ୍ ଭାବରେ—ଭୀଷଣ ଏକତରଫା ।

ଶେଫାଳୀ କଷ୍ଟପାଇଥିଲା । ଯନ୍ତ୍ରଣାରେ ଗୁଡ଼ାଏ ଦିନ ଛଟପଟ ହୋଇଥିଲା । ମନ୍ଦିରେ ମନ୍ଦିରେ ଆଶା କରୁଥିଲା ବାଦଲ ଫେରିଆସି କ୍ଷମା ମାଗିବ—ସାଲିସ୍ କରିନେବ । ମାତ୍ର ସେମିତି କିଛି ନାଟକୀୟ ଘଟଣା ଘଟିଲା ନାହିଁ । ଧୀରେ ଧୀରେ ପୁଣି ସବୁ ସହଜ ହୋଇଗଲା । ଶେଫାଳୀର କ୍ଷତ ଶୁଖିଗଲା । ହସ କଥାରେ ସେ ହସିଲା । ସାନଭଉଣୀ ସାଙ୍ଗରେ କଳିକଲା । ସାଙ୍ଗଙ୍କୁ ନେଇ ଅମିତାଭ ବଚ୍ଚନ ଫିଲ୍ମ ମଧ୍ୟ ଦେଖିଲା ।

ବି. ଏ. ପାଶ୍ କରିବା ପରେ ଘରେ ସମସ୍ତେ ତା' ବାହାଘର ପାଇଁ ଖୁବ୍ ତତ୍ପର ହୋଇ ପଡ଼ିଲେ । ସେ ବି କୌଣସି ଅନାଗ୍ରହ ଦେଖାଇଲା ନାହିଁ । ଏଠି ସେଠି ପ୍ରସ୍ତାବ ପଡ଼ିଲା । ପୁଣି ପ୍ରବୀରଙ୍କ ସାଙ୍ଗରେ ବାହାଘର ସ୍ଥିର ହୋଇଗଲା । ବୋହୂ ହୋଇ ଆସିଲା ରାଉରକେଲା । ବିଧବା ଶାଶୁ ଓ ସ୍ୱାମୀର ସଂସାରରେ ଖୁବ୍ କମ୍ ଦିନରେ ବୋହୂପଣିଆ ସାରିଦେଇ ଘରଣୀ ପାଲଟିଗଲା ସେ । ଦୁଇ ବର୍ଷର ନିଶ୍ଚିନ୍ତ ଜୀବନ ପରେ ତାଙ୍କ ଘରକୁ

ଆସିଲା ନୀଡ଼ । ପ୍ରବୀର—ଶେଫାଳୀଙ୍କ ପ୍ରଥମା କନ୍ୟା । ବର୍ଷେ ପରେ ପୁଣି ପୁପୁନ୍ । ଏଇମାନଙ୍କ ଭିତରେ ସ୍ୱପ୍ନ ପରି ବିତିଗଲାଣି ହସ-କାନ୍ଦର ସାତ ବର୍ଷ ।

କେଉଁଠି ଥିଲା ଏ ଧୂମକେତୁ ?

ପ୍ରବୀର ବି କେମିତିକିଆ ମଣିଷ ! ଜାଣିଲା ସ୍ତ୍ରୀର ସେ ପୁରାତନ ପ୍ରେମିକ, ତାକୁ ଦୂରେଇ ରଖିବ କ'ଣ, ସିଧା ଆଣି ବନ୍ଧୁ ଆସନରେ ବସେଇଦେଉଛି ।

ଚା' କପ୍ ଟ୍ରେରେ ସଜେଇ ନେଇ ଡାଇଁଘରେ ପାଦ ଦେଲା ସେ । ମୁହଁରୁ ସବୁ ବିରକ୍ତି ପୋଛିଦେଇ ସାମାନ୍ୟ ହସ ଖେଳାଇଲା । ଗୋଟାଏ ବାହାରର ଲୋକକୁ ଏତେଟା ମୂଲ୍ୟ ଦେବାର କୌଣସି ମାନେ ହୁଏ ? ବାଦଲ ଅନ୍ତତଃ ନଜାଣୁ ଯେ ଶେଫାଳୀ ସେଇ ନଅବର୍ଷ ତଳର ଘଟଣାକୁ ହୃଦୟରେ ଧୂପ ଦୀପ ଦେଇ ସାଇତି ରଖିଛି ।

"ଚା'ଟା ଅପୂର୍ବ ହୋଇଛି । ବୁଝିଲ ଭାଉଜ, ଗୃହିଣୀର ହାତରେ ଚା' ପିଇ ପିଇ...ଏ ଚା' ଯେମିତି ଅମୃତ ।"

ଏତେ ସହଜରେ 'ଭାଉଜ' ! ଚମକି ଚାହିଁଲା ଶେଫାଳୀ । ନା—ବାଦଲ ଅଭିନୟ କରୁନି—ବାସ୍ତବତାକୁ ଗ୍ରହଣ କରିନେଇଛି ।

ଓଃ, ବଞ୍ଚିଗଲା ସେ ।

ଏଥର ବାଦଲ ଦାସକୁ ସ୍ୱାମୀର ବନ୍ଧୁ ଭାବରେ ଗ୍ରହଣ କରି ନେବାରେ ତା'ର ଆଉ ଆପତ୍ତି ନାହିଁ ।

ସହଜ ହୋଇଗଲା ସେ, "ଏ ପର୍ଯ୍ୟନ୍ତ ଗୃହିଣୀବିହୀନଙ୍କ ଦଳରେ ଅଛ ? ବାହାହୋଇ ପଡ଼, ସହଜରେ ଗୋଟିଏ ଭଲ ରାନ୍ଧୁଣିଆ ମିଳିଯିବ"—ଚାପା ହସ ହସି ପ୍ରବୀର ଉପଦେଶ ଦେଲେ ।

"ଆଃ ଏତେ ଯଦି ସହଜ ହୋଇଥାଆନ୍ତା !" ବାଦଲ ଦୁଃଖ କରିବାର ଅଭିନୟ କଲା, "ବୁଝିଲ ପ୍ରବୀର, ମନଲାଖି ସ୍ତ୍ରୀ, ସେ ପୁଣି ଏକ୍‌ସପର୍ଟ କୁକ୍, ଭାଗ୍ୟରେ ଥିଲେ ମିଳେ ।"

"ହଉ ପ୍ରଥମଟି ଆଗ ପୂରଣ କର—ଦ୍ୱିତୀୟ ସର୍ତ୍ତ କଥା ବୁଝିବା । ପନ୍ଦର ଦିନ ଆମ ଧର୍ମପତ୍ନୀଙ୍କ ପାଖରେ ଟ୍ରେନିଙ୍ଗ୍ ନେଲେ ସେତିକି ହେଇ କ'ଣ ବନେଇ ଯିବ ?"

"କିଏ ପୁଣି ରାନ୍ଧିବ ! ସହଜେ ଡାକ୍ତର ଲୋକ, ପୁଣି ଗୋଟିଏ ବୋଲ୍ଡ ଝିଅ ଯେ ବାପ ଘରେ ରାନ୍ଧିବା ଅଭ୍ୟାସ ପ୍ରାୟ ନାହିଁ କହିଲେ ଚଳେ ।"

"କିଏଟି ପୁଣି କିଏ ? ଭାବୀ ପତ୍ନୀ ?" ଶେଫାଳୀ କୌତୂହଳୀ ହୋଇ ପଚାରିଲା । ଆଶ୍ଚର୍ଯ୍ୟ, ଟିକିଏ ବି ଈର୍ଷା ନାହିଁ ମନରେ ତା'ର ।

"ଅଧା ରାସ୍ତାରେ ଅଛି ଜାଣ, ଏ ପର୍ଯ୍ୟନ୍ତ ଶିଖରକୁ କଥା ଯାଇ ନାହିଁ"—ସିଗାରେଟ୍‌ରେ ଲାଇଟର୍ ଛୁଆଁଇଲେ ବାଦଲ ।

"ଥରେ ତାଙ୍କୁ ନେଇକରି ଆସ"—ଶେଫାଳୀ କହିଲା ।

"ଆରେ, ଆମେ ବି ଥରେ ଆଖି ପୂରେଇ ଦେଖୁ—କ'ଣ କହୁଛ ଶେଫାଳୀ ? ଶୁଣ

ବାଦଲ, ଏଇ ରବିବାର ଦିନ ଦୁଇଜଣଯାକ ଆସ ଲଞ୍ଚ ପାଇଁ ।" ପ୍ରବୀର ଦିନବାର ସ୍ଥିର କରିନେଲେ ।

× × × ×

ବେସେଇ ଖୁବ୍ ଭଲହୋଇଥିଲା । ଏମିତିରେ ଶେଫାଳୀର ହାତ ଭଲ—ସେଥିରେ ପୁଣି ସବୁ ତା'ର ପ୍ରିୟ ଆଇଟମ୍ । ପ୍ରନ୍, ଫ୍ରାଇଡ୍ ରାଇସ୍, ଚିକେନ୍ ମସଲା, ଫିସ୍ ଫ୍ରାଇ, ଦୁଧ ରାଇତା ଆଉ ଲେମନ୍ ସଫ୍‌ଲେ । ଭୂରି ଭୂରି ପ୍ରଶଂସା କରୁଥିଲେ ବାଦଲ ଓ ନନ୍ଦିନୀ । ଚଢ଼େଇବା ପାଇଁ ସମାଲୋଚନା ଆରମ୍ଭ କଲେ ପ୍ରବୀର—ସବୁ ଭଲ ସେ···ଚିକେନ୍‌ରେ ରାଗ କମ୍ ହୋଇଗଲା । ଫିସ୍ ଫ୍ରାଇରେ କଞ୍ଚା ଧନିଆପତ୍ର ଥିଲେ ଜମିଥାଆନ୍ତା··· ସୁଫ୍‌ଲେରେ ଏସେନସ ଦେବାକୁ ଭୁଲିଗଲ କି ଶେଫାଳୀ ?

ସ୍ୱାମୀର ନାକ ଚିପିଦେଇ ଶେଫାଳୀ ହସିଲା, "ଇ ମା, ଭୁଲି ତ ଗଲି—କ'ଣ ହେବ ? ଗୋଟିଏ କଥା କର, ତୁମେ ଆଜି ସୁଫ୍‌ଲେ ଖାଅନି ।" ପ୍ଲେଟ୍‌ଟା ଉଠାଇବାର ଉପକ୍ରମ କଲା ସେ ।

କାନ ଧରିଲେ ପ୍ରବୀର, "ମା ଅନ୍ନପୂର୍ଣ୍ଣା, ଏ ଅଧମ ଉପରେ ଦୟା ନକଲେ ଖସିଯିବ । ଅଧମର ପୁଣି ଏତେ ସାହସ—ଲକ୍ଷ୍ମୀଙ୍କ ହାତ ରନ୍ଧା ନାପସନ୍ଦ କରିବ !"

ହସି ହସି କହୁଥାଏ ନନ୍ଦିନୀ—"ରିଏଲି, ଆପଣ ଖୁବ୍ ଲକି । ଏମିତି ସ୍ତ୍ରୀ ଭାଗ୍ୟରେ ଥିଲେ ମିଳେ ।"

"ଲକି ! ଥଟ୍ଟା କରୁଛ !" —ପ୍ରବୀର ଗୋଟାଏ ଗୁପ୍ତ କଥା କହିବା ପରି କହିଲେ, "କେଉଁ ମଫସଲ ଓଡ଼ିଆ ଝିଅ—ମୋର ବେକରେ ଝୁଲିବାକୁ ଥିଲା ।"

ଫ୍ରିଜ୍‌ରୁ ଥଣ୍ଡା ପାଣି ବୋତଲ କାଢ଼ି କାଢ଼ି ଶେଫାଳୀ ହସିଦେଲା, "ଭଲହୋଇଛି—ସାରା ଜୀବନ ତୁମର ବେକରେ ଝୁଲି ରହିବି । ଲୋକ ଭଲ ଲଗିଥିବ ମନେରଖିଥା ।"

ପ୍ରବୀର ଆଖି ବଡ଼ ବଡ଼ କଲେ, "ଗଡ୍ ସେଭ୍ ମି ।"

"ଚାଲ ପ୍ରବୀର, ପାନ ନେଇ ଆସିବା"—ହାତ ମୁହଁ ଧୋଇ ଉଠିଲେ ବାଦଲ ।

ସୁପୁନ୍‌କୁ ଆପୁଡ଼େଇ ଶୁଆଇ ଶୁଆଇ ନନ୍ଦିନୀ ପାଖରେ ଗପ ଲମ୍ବେଇଲା ଶେଫାଳୀ ।

"ବାହାଘର ଫାହାଘର କେବେ ହେଉଛି ?"

ତକିଆ ଉପରେ କହୁଣି ଭରା ଦେଇ ଅଧାଶୁଆ ଅବସ୍ଥାରେ ନନ୍ଦିନୀ କହିଲା, "ବାବାଃରେ ବାହାଘର !! ଏପର୍ଯ୍ୟନ୍ତ ବାଦଲ ପ୍ରପୋଜ କରିନାହାଁନ୍ତି । ଆଉ ମୁଁ ଆଶା ବାନ୍ଧିବି ବା କ'ଣ ?"

"ସା' ମ—ହବ ତ ବାହାଘର—ତୁମ ଦୁଇଜଣଙ୍କର ମୁହଁ, ହାବଭାବ କହୁଚି ।"

"ଇଚ୍ଛା ତ ମୋର ବି ଅଛି", ନନ୍ଦିନୀ ସାମାନ୍ୟ ଗମ୍ଭୀର ହୋଇଗଲା । ନା ସେଇଟା ଶେଫାଳୀର କଳ୍ପନା, "ତୁମେ ତ ବାଦଲକୁ ଜାଣିଛ—ସେ ପୁଣି ଘର ବାନ୍ଧିବ ! ଏତେ ବଡ଼ ଗୋଟାଏ ନିଷ୍ପତ୍ତି ସେ ସହଜରେ ନେଇ ପାରେ ନାହିଁ ।" ସେ ସାହାଃହେଉ ହସିଲା

ମଣି, "ଆଇ ଆମ ଇନ୍ ନୋ ହରି ।"

× × × ×

ଏମିତି ବି ହୁଏ !! ଜୀବନର କେତେ ରଙ୍ଗ ସତେ !!! ଚମତ୍କୃତ ହୁଏ ସେ । ତା'ର ପ୍ରେମିକ ବାଦଲ, କେତେ ସହଜରେ ବନ୍ଧୁଟିଏ ପାଲଟିଗଲେ । ଶେଫାଳୀ ଚଢ଼ାଏ, ଅଙ୍କାକରେ ବାଦଲଙ୍କୁ । କଥା କହିବାବେଳେ ଆଉ ଅସ୍ୱସ୍ତି ଅନୁଭବ କରେନାହିଁ । ବାଦଲ ପ୍ରବୀର ପଟିଆ ହୋଇ ତାକୁ ଗୁଡ଼ାଏ ହଇରାଣ କରନ୍ତି । ମଣି ଝଗଡ଼ାକରେ—ଶେଫାଳୀ ପାଇଁ ଯୁକ୍ତି କରେ । ପ୍ରବୀର ମଝିରେ ଉପଭୋଗକରନ୍ତି ।

କେତେ ଶୀଘ୍ର ବନ୍ଧୁତା ଜମିଗଲା ।

ଆଜକାଲି ପରୀକଥା ଭାବିଲେ ବିଶ୍ୱାସ ହୁଏ ନାହିଁ । ନଅ ବର୍ଷ ତଳର ଭୂତ ଆଉ ତା' ସାମ୍ନାରେ ରୂପ ନେଇ ଭୟ ଦେଖାଇ ପାରେ ନାହିଁ । ବାଦଲ ମଣିଙ୍କୁ ଦେଖିଲେ ଶେଫାଳୀ ଖୁସି ହୁଏ ।

ଏକାଠି ସିନେମାଦେଖା, ପିକ୍‌ନିକ୍, ଛୁଟି ଦିନରେ ଘରେ ତାସ୍ ମାଡ଼, କେତେଆଡ଼ର ଅତୁଣ୍ଡା ଗପ । କେବେ କେବେ ପୁଣି ବାହାରେ ଡିନର୍ । ଧୀର ଭିତରେ କଟିଗଲା ଗୁଡ଼ାଏ ଦିନ—ପ୍ରାୟ ବର୍ଷେ ।

ବାଦଲ, ମଣିଙ୍କ ସମ୍ପର୍କରେ ଡୋର ବନ୍ଧା ହୋଇନି । ହେଲେ ବି ସେମାନେ ପ୍ରବୀର ଶେଫାଳୀଙ୍କର ଘନିଷ୍ଠ ବନ୍ଧୁ । ପ୍ରଥମରୁ ଶାଶୁଙ୍କୁ ବୁଝେଇ ଦେଇଥିଲା ସେ । ଏମିତି ପ୍ରେମ କରି ବୁଲିବାଟା ବୁଢ଼ୀ ପସନ୍ଦ ନ କରୁଥିଲେ ବି ସେମାନଙ୍କୁ ପୁଅ ବୋହୂଙ୍କ ସାଙ୍ଗ ରୂପେ ସେ ଗ୍ରହଣକରିନେଇଥିଲେ ।

ଏତେ ଖୁସିବାସି, ଘନିଷ୍ଠତା । କିନ୍ତୁ ଶେଫାଳୀର ମନ ଭିତରେ ଧୀରେ ଧୀରେ ଗୋଟାଏ ଛୋଟ ଅସ୍ୱସ୍ତିଭାବ ବଢ଼ିବାକୁ ଲାଗିଲା । କାରଣ କିଛି ବି ନୁହେଁ, ତଥାପି ଏମିତି ବୁଲାବୁଲି ମାଡ଼ ମାଡ଼ ପଡ଼ିଲାଣି । ବେଶିଟା ଖରାପ ଲାଗେ ସ୍ୱାମୀଙ୍କ ପାଇଁ । ବିଚରା ଟିକିଏ ଶାନ୍ତିପ୍ରିୟ ଲୋକ । ଚୁପ୍‌ଚାପ୍ ଘରେ ବସି ଛୁଟି ଦିନରେ ଗପ ବହିଟିଏ ପଢ଼ିବାକୁ ବା ଜହ୍ନ ରାତିରେ ଲନ୍‌ରେ ବସି ଗୁଲାମ୍ ଅଲ୍ଲୀ ଗଜଲ୍ ଶୁଣିବାକୁ ଖୁବ୍ ଭଲପାଆନ୍ତି । ସାତ-ଆଠ ବର୍ଷରେ ତାଙ୍କର ଢାଞ୍ଚାରେ ପଡ଼ିଯାଇଛି ଶେଫାଳୀ—ସେ ବା କେମିତି ବାଦ୍ ଯିବ ! ସେ ତ ଆହୁରି ବେଶି ଘରୁଆ । ପିଲାଙ୍କ ପାଇଁ ଡ୍ରେସ୍ ସିଲେଇ, ସ୍ୱାମୀ ପାଇଁ ସ୍ୱେଟର ବୁଣା, ଶାଶୁଙ୍କ ବରାଦ ବଡ଼ିବରା, ଘୁଗୁନି ରାନ୍ଧିବାରେ ତା'ର ଯେଉଁ ସନ୍ତୋଷ, ମଣି ବାଦଲ ବା ବୁଝିବେ କେମିତି ? ଆଜକାଲି ସେ ମୁହଁ ଖୋଲି କହେ, "ଯାଅ, ତୁମେ ଦୁଇଜଣ ସିନେମା ଦେଖି ଆସ । କାହିଁ ଆଉ 'କବାବ୍ ମେଁ ହଡ୍ଡି' ପୂରାଉଛ ।" ମଣି ମୁହଁ ଫୁଲାଏ । ବାଦଲ ପାର୍ଟି କରେ । ବାଧ୍ୟହୋଇ ପ୍ରବୀର ଉଠନ୍ତି । ଶେଫାଳୀ ଶାଢ଼ି ବଦଳାଇ ପ୍ରସ୍ତୁତ ହୁଏ । ପିଲାଙ୍କୁ ଶାଶୁଙ୍କ ପାଖରେ ଛାଡ଼ି ସେକେଣ୍ଡ୍ ଶୋ ସିନେମା ପାଇଁ ଯାଆନ୍ତି ସେମାନେ ।

× × × ×

ପାଞ୍ଚଟି ଦିନ ପାଇଁ ଭୁବନେଶ୍ୱର ଆସିଥିଲା ଶେଫାଳୀ, ପାଞ୍ଚ ସପ୍ତାହ ରହି କରି ଆସିଲା । ସାନଭଉଣୀ ଶିବାନୀର ବାହାଘର । କନ୍ୟା ବିଦା ପରଦିନ ସେମାନଙ୍କର ଘରଉଠିଲା ଫେରିଯିବା କଥା । କିନ୍ତୁ ବାହାଘରର ଅନିସୃମିତତାରେ ଜରରେ ପଡ଼ିଗଲା ପୁପୁନ । ତା' ଜର, ମାଆର କାଶ ସର୍ଦ୍ଦି ଭଲ ନହେଉଣୁ ନିଜେ ଶେଫାଳୀ ପଡ଼ିଗଲା । କି ଯେ ଆଖିଧରା ରୋଗ ବ୍ୟାପିଲା ଭୁବନେଶ୍ୱରରେ ! ଦୁଇ ସପ୍ତାହ ଅଧିକା ରହି ଫେରିଗଲେ ପ୍ରବୀର । କେତେ ଦିନ ଆଉ ଅଫିସ ବନ୍ଦ କରନ୍ତେ ? ସୁଦ୍ଧାଏ ଭୋଗିଲା ଶେଫାଳୀ ଆଖିଧରାରେ । ଭାଗ୍ୟ ଭଲ, ପିଲାଙ୍କର ହେଇନି ।

ଠିକ୍ଏ ସୁସ୍ଥ ହେଉ ନହେଉଣୁ ଘରଉଠିଲା ବାହାରିଲା ସେ । କେମିତି ଯେ ଚଳୁଥିବେ ମାଆ ପୁଅ ଦୁଇଜଣ । ଶାଶୁଙ୍କର ବୟସ ବେଶି, କାମକୁ ପାରନ୍ତି ନାହିଁ । ସେଥିରେ ପୁଣି ଶ୍ୱାସ । ଶେଫାଳୀକୁ ଦୋଷୀ ଦୋଷୀ ଲାଗେ ।

ଘରେ ପାଦ ଦେଉଦେଉ ଆଗେ ଲୁଗାପଟା ବଦଳାଇ ଗୋଡ଼ ହାତ ଧୋଇ ଶାଶୁଙ୍କ ହାତରୁ ଖଡ଼ିକା ନେଇଗଲା ସେ । ରନ୍ଧାରନ୍ଧ ସାରି ଅଦଳବଦଳ ହୋଇ ପଡ଼ିଥିବା ଘରକୁ ସେଇଦିନ ହିଁ ସଜାଡ଼ି ବସିଲା । ସବୁ କାମଦାମ ସାରି ଶୋଇବା ଘରେ ସେ ଯେତେବେଳେ ପାଦ ଦେଲା, ସେତେବେଳକୁ ରାତି ସାଢ଼େ-ଦଶ । ଦେହ ଥକିଯାଇଛି—ଅଥଚ ଶୁଣିବା ପାଇଁ କେତେ କଥା ଅଛି । ମାସକଯାକର କଥା । ଶେଫାଳୀ ସବୁ ରାତିକ ଭିତରେ କହିଦେବ ଅବା !

"ଯେତେ, ତୁମେ ତ କିଛି କହୁନ । ମୁହଁ ଖାଲି ଉପରେ ପଡ଼ୁଛି"—କେତେବେଳକେ ସେ ଅଭିଯୋଗ କଲା ।

"କହିବାକୁ ସୁଯୋଗ ଦେଲେ ତ ! ତୁମେ ତ ସେଇ ସାଢ଼େ-ଦଶରୁ ବକର ବକର ହେଉଛ ଯେ ଆସି ବାର ବାଜିଲାଣି..." ହସିହସି ଭଳି ପ୍ରବୀର ଚିଡ଼େଇଲେ ।

ଲାଜେଇଯାଇ ସ୍ୱାମୀର ଛାତିରେ ମୁହଁ ଗୁଞ୍ଜିଦେଲା ସେ । ସତରେ ସେ ସବୁଦିନେ ଟିକିଏ ବେଶି କଥା କହେ । "ହଉମ ହେଲା, ଏଥର ତୁମ କଥା କୁହ । ମୁଁ ନଥିବା ଭିତରେ କ'ଣ କ'ଣ କଲଚ ? କେତୋଟି ଝିଅଙ୍କୁ ଫସେଇଚ ? କି ମଜା କଲଚ ?"

ପ୍ରବୀର ଗମ୍ଭୀର ହେବାର ଅଭିନୟ କଲେ, "ଆଉ ଏ ବୁଢ଼ା ବୟସରେ କ'ଣ ଝିଅମାନେ ପଟୁଛନ୍ତି ? ବୁଝିଲ, ମାସେ ପାଇଁ ଜାଣ ସନ୍ନ୍ୟାସୀ ହେଇଯାଇଥିଲି । ଘରୁ ଅଫିସ୍, ଅଫିସରୁ ଘର—ଏକଦମ୍ ବୋଉର ସୁନାପୁଅ ।"

"ସତେ ?" ଭ୍ରୂ ଦୁଇଟି ଟେକିଦେଲା ଶେଫାଳୀ ।

"ଆରେ ହଁ...ଖବରଟାଏ ଅଛି ତୁମ ପାଇଁ"—ମୁହୂର୍ତ୍ତେ ଚୁପ୍ ରହିଯାଇ ପ୍ରବୀର କହିଲେ, "ଏଇ ବାଦଲ, ଜାଣି..."

ଉଚ୍ଛ୍ୱସିତ ଭାବରେ କଥା ମଝିରୁ ମାଡ଼ିବସିଲା ସେ, "କ'ଣ ହେଲା ? ବାହାଘର ସ୍ଥିର ହେଇଯାଇଛି ନା ?"

ହସିଲେ ସ୍ୱାମୀ, "ତୁମେ ଆଉ ତୁମର ରୋମାଣ୍ଟିକ କଳ୍ପନା ! ଦ୍ୟାଟ୍ ବାଷ୍ଟାର୍ଡ ହାଜ୍ ଚଟେଡ୍ ଦ ଗାର୍ଲ । ଏତେ ଦିନ ବୁଲିଲା, ପ୍ରେମ ଫ୍ରେମର ଡ୍ରାମା କଲା—ହଠାତ୍ ଦେ ଛୁଃ ।"

"କିନ୍ତୁ କାହିଁକି ?" —ଶେଫାଳୀ ଭିତରେ କ'ଣ ଯେମିତି ଦବ ଦବ ଯାଉଥିଲା ।

"କାହିଁକି ଆଉ କ'ଣ ? ସିମ୍ପଲ । ନଣ୍ଡି ଜିଦ୍‌ଧରି ବସିଲା ବାହାଘର ସମ୍ପର୍କରେ ଶୀଘ୍ର ନିଷ୍ପତ୍ତି ନେବାକୁ । ଟିଅଣ୍ଟାଏ···କେତେ ଦିନ ବା ଏମିତି ଜଣକ ସାଙ୍ଗରେ ଲକ୍ଷ୍ୟହୀନ ଭାବରେ ଘୂରିବୁଲିବ ? ବାଦଲ ଏତେ ଶୀଘ୍ର କମିଟ୍ କରିବାକୁ ଚାହିଁଲାନି । ସେ ପ୍ରପୋଜ୍ କଲା ବାହା ହେବା ଆଗରୁ ଅନ୍ତତଃ ଦୁଇ-ତିନି ମାସ ଏକାଠି ରହିବାକୁ । ଯେତେ ଆଧୁନିକା ହେଲେ ବି ନଣ୍ଡି ଏମିତି ଗୋଟାଏ ପ୍ରସ୍ତାବ ଗ୍ରହଣ କରିପାରିଲା ନାହିଁ । ବାସ୍—ତା'ପରେ ବାଦଲ ସଫା ଜଣେଇ ଦେଲା ଯେ ନଣ୍ଡି କନ୍‌ଜର୍‌ଭେଟିଭ୍ । ତା' ସାଙ୍ଗରେ ପାଦ ମିଳାଇ ଚାଲି ପାରିବ ନାହିଁ । ବାହାହେଲେ ସେମାନେ ସୁଖୀ ହେବେ ନାହିଁ । ଦି ଏଣ୍ଡ୍ ।"

ଗୁଡ଼ାଏ ସମୟ ଚୁପ୍ ରହିଲା ଶେଫାଳୀ । ତା'ପରେ କହିଲା, "ହି ମ, ଆମର ସେଥିରେ କି ଯାଏଆସେ ?"

ଆଖି ବୁଜିଲା ସେ । ରାତିରେ ପାଣି ପିଇବା ପାଇଁ ଉଠିଥିଲେ ପ୍ରବୀର—ସ୍ତ୍ରୀ ଆଡ଼େ ଚାହିଁ ଆଶ୍ଚର୍ଯ୍ୟ ହୋଇଗଲେ ।

"ଶୋଇନ ??"

ସ୍ୱାମୀ ଆଡ଼ିରେ ଆଡ଼ି ମିଳେଇଲା ଶେଫାଳୀ । କୌଣସି ଉପକ୍ରମଣିକା ନକରି ସେ କହି-ପକେଇଲା, "ତୁମେ ଆଉ ବାଦଲକୁ ଏଠିକି ଆସିବାକୁ ଡାକିନ । ଗୋଟାଏ ମେରୁଦଣ୍ଡହୀନ ମନୁଷ୍ୟକୁ ତୁମର ବନ୍ଧୁ ଭାବରେ ସ୍ୱୀକାର କରିବାକୁ ମୋତେ ମାଡ଼ ପଡ଼ୁଛି ।"

ନିଦୁଆ ଆଖି ନେଇ ସ୍ତ୍ରୀର କଥା ବୁଝିବାର ଚେଷ୍ଟା କରୁ କରୁ ମୁଣ୍ଡ ହଲାଇଲେ ପ୍ରବୀର ।

× × × ×

ଅନେକ ଦିନ ହେଲାଣି ବାଦଲ ଆଉ ଆସିନି । ଅଜିତ୍ କହୁଥିଲେ ତା'ର ପ୍ରମୋସନ୍ ହୋଇଛି । ସେଇଥି ପାଇଁ ଗୁଡ଼ାଏ ଦିନ ହେଡ୍ ଅଫିସ୍ ବାଙ୍ଗାଲୋର୍‌ରେ ରହିକରି ଆସିଲା । ପୁଣି ସିଆଡ଼ୁ ସିଆଡ଼ୁ ଯାଇଛି ପ୍ୟାରିସ୍ । କି ଗୋଟାଏ ଟ୍ରେନିଙ୍ଗରେ ତା' କମ୍ପାନୀ ତାକୁ ପଠେଇଛି ତିନି ମାସ ପାଇଁ । ଏହିରୁ ଏତେ ଜଲ୍‌ଦି ଜଲ୍‌ଦି ହୋଇଗଲା ଯେ ଯିବା ଆଗରୁ ଆଉ ବନ୍ଧୁମାନଙ୍କୁ ଜଣେଇବା ପାଇଁ ସମୟ ଟିକିଏ ପାଇଲାନି । ସେଇଥିପାଇଁ ବହୁତ କ୍ଷମା ପ୍ରାର୍ଥନା କରିଛି ।

ପ୍ୟାରିସ୍‌ରୁ ଫେରି କିନ୍ତୁ ଦେଖା କରିବାକୁ ଆସିଥିଲା ବାଦଲ । ସାଙ୍ଗରେ ଆଣିଥିଲା ପ୍ରବୀର ପାଇଁ ଗୋଟିଏ ନଟେଡ୍ ଟାଇ, ଶେଫାଳୀ ପାଇଁ ଗିଭେନଚି ପରଫ୍ୟୁମ ଆଉ ପିଲାଙ୍କ ପାଇଁ ଚକଲେଟ । ସେ ଦିନ ରବିବାର । କ'ଣ ଗୋଟାଏ ଭଲ ସିନେମା ଥିଲା

ଟେଲିଭିଜନରେ । ଲୁଣି ଗଜା ଆଉ ବାଦାମ ପାକିରେ ପକଉ ପକଉ ସିନେମା ଦେଖୁଥିଲେ ପ୍ରବୀର, ଶେଫାଳୀ ।

"ବାଃ ରେ, ମିଆଁ ବିବି ଘରେ ବସିଛ ! ମୁଁ ତ ଭାବୁଥିଲି ଏମିତିକା ପୂର୍ଣ୍ଣିମା ରାତିରେ ବୁହେଁଯାକ କେଉଁଠି ଏକାନ୍ତରେ ପ୍ରେମାଳାପ କରିବା ପାଇଁ ବାହାରିଯାଇଥିବ"—ବାଦଲର କଥା ଠିକ୍ ଆଗପରି ।

ପ୍ରବୀର ହସିଲେ, "ପ୍ରେମାଳାପ କରିବା ପାଇଁ ଆମକୁ ତ ଘର ବାହାରେ ପାଦ ରଖିବାକୁ ହୁଏନା । ଆମର ଗୋଟିଏ ଏକାନ୍ତ ପୃଥିବୀ ଅଛି ।"

"ଯାହା କୁହ ପ୍ରବୀର, ବୁଢ଼ାହୋଇଗଲ ।"

"ଭାଇ, ଆମେ ତ ଜନ୍ମରୁ ବୁଢ଼ା ।"

ଶେଫାଳୀ ଯୋଡ଼ିଦେଲା, "ଠାକୁରଙ୍କ କୃପା ନଥିଲେ କ'ଣ ତୁମ ଭଳି ଆଧୁନିକ ହୋଇହୁଏ ।"

ତା' ଗଳାରେ ସାମାନ୍ୟ ତିକ୍ତତା ଥିଲା । ବାଦଲ ଭିତରେ ଆଶ୍ଚର୍ଯ୍ୟ ହେଲେ ବି ଉପରେ କିଛି ଜଣେଇଲେ ନାହିଁ ।

"ତୁମେ ଖୁବ୍ ଝଡ଼ିଯାଇଛ ଭାଉଜ ! ଡାଏଟିଂଫାଏଟିଂ କରୁଛ କି ?"

"ଡାଏଟିଂ, ପୁଣି ମୁଁ ? ବାରହାତ ଶାଢ଼ି ଭିତରେ ଦେହଟା କେଉଁଠି ଲୁଚିଯାଉଛି ଯେ ଫେର୍ ମିଛନି । ସେଇଥିପାଇଁ ପୁଣି କଷ୍ଟ କରିବ ।"

ବାଦଲ ଇଆପି କିଛି ବୁଝ୍ ନଥିଲେ ।

"ଯାହା କୁହନା ତୁମେ ଭାଉଜ ! ···ଆରେ ହଁ, ଗୁରୁବାର ଦିନ ମୁଁ ଟିକିଏ ହଇରାଣ କରିବ । ମୋର ଗୋଟିଏ ବନ୍ଧୁକୁ କଥା ଦେଇଛି ଓଡ଼ିଆଘରର ରନ୍ଧା ଖୁଆଇବ ବୋଲି ।"

"ଗୁରୁବାର ତ ସୁଦଶାବ୍ରତ···"

"ଛାଡ କ'ଣ ? ଅରୁଆ ଭାତ, ଡାଲମା ରାନ୍ଧିବ । ନ୍ୟାନ୍‌ସିର ବହୁତ ଇଚ୍ଛା ଟିପିକାଲ୍ ରନ୍ଧା ଖାଇବା ପାଇଁ ।"

"ନ୍ୟାନସିଟି ପୁଣି କିଏ ? ନୂତନ ଆମଦାନୀ ?" ପ୍ରବୀର ଭିଡ଼ମୋଡ଼ ହେଉ ହେଉ ଅନାଗ୍ରହରେ ପଚାରିଲେ ।

"ଭାଇ, ପ୍ୟାରିସ୍‌ରୁ ଇ ଲଖିଯାଇଛି । ଜମା ଛାଡ଼ିବନି । ମୋ ସାଙ୍ଗରେ ଭାରତ ଅସିଲା । ଜିଦ ଧରିଛି, ମତେ ନେଇକରି ଅଷ୍ଟ୍ରେଲିଆ ଫେରିବ । କୋଟିପତି ବାପାର ବିରାଟ ଫାର୍ମ ସେଠି ।"

"ବାଃ, ଭଲ ତ । ଏକା ଢେଲାରେ ଦୁଇଟା ଚଢ଼େଇ ମରିବେ । ଏକେ ତ ସୁନ୍ଦରୀ, ଅତ୍ୟାଧୁନିକା, ବିଦେଶିନୀ । ପୁଣି ଉପରେ ପଡ଼ି ଏତେ ବଡ଼ ସମ୍ପତ୍ତି ହାତକୁ ଆସୁଛି । ସତରେ ଭାଗ୍ୟବାନ୍ କହିବାକୁ ହେବ ।" ହାଲୁକା ଭାବରେ ପ୍ରବୀର କହିଲେ ।

"ଦେଖାଯାଉ କ'ଣ ହେଉଛି"—କାନ୍ଧ ଉପରକୁ ଥରେ ଉଠେଇ ଷ୍ଟାଇଲ୍‌ରେ କହିଲା

ବାଦଲ, "କ'ଣ ଭାଉଜ, ଭୁଜ ତ ? ଆସିବ ତା'ହେଲେ ଗୁରୁବାର ଦିନ ?",

ମନ ଭିତରେ ବହୁତ ବେଳୁ କ'ଣ ଯେମିତି ଯୁକ୍ତିତର୍କ ଲଗେଇଥିଲା ଶେଫାଳୀ । ଟିକିଏ ଡରୁଆ ପ୍ରକୃତି ତ, ଯାହା କହିବା ପାଇଁ ଚାହୁଁଥିଲା ସେଥିପାଇଁ କିଛି ସାହସ ସଂଗ୍ରହ କରୁଥିଲା ବୋଧହୁଏ ।

ଆଖି ଉଠେଇ ସିଧା ଭାବରେ ବାଦଲକୁ ଚାହିଁଲା ସେ, "ସେ ପ୍ରୋଗ୍ରାମ୍ ଥାଉ ବାଦଲ ! ଜାଣ ତ···ଆମର ଏଠି ଟିକିଏ ପୁରୁଣାକାଳିଆ କାରବାର । ପୁଣି ପୂଜା ସେଦିନ । ବୋଉଙ୍କର ଠିକ୍ ପସନ୍ଦ ହେବନି । ···ବରଂ ଗୋଟାଏ କାମ କର—ମଧୁବନ ହୋଟେଲରେ ବଢ଼ିଆ ଭେଜିଟେରିଆନ୍ ରନ୍ଧା ହୁଏ । ସେଇଠାକୁ ଡିନର ପାଇଁ ନ୍ୟାନ୍ସିଙ୍କୁ ନେଇଯାଅ—ତାଙ୍କୁ ଭଲ ଲାଗିବ । ତା'ଛଡ଼ା···ଆମଭଳି ଗୋଟାଏ ପୁରାପୁରି କନ୍‌ଜରଭେଟିଭ୍ ପରିବାରର ଆବ୍‌ହାଓ୍ୱା ଭିତରେ ସେ ଅଣନିଃଶ୍ୱାସୀ ହୋଇପଡ଼ିବେ ନାହିଁ କି ?"

କିଛୁଟା ଆଶ୍ଚର୍ଯ୍ୟ ଓ କିଛୁଟା ଅବୁଝା ଭଙ୍ଗୀରେ ବାଦଲ ଶେଫାଳୀକୁ ଖାଲି ଦେଖୁଥିଲା । କିଛି ଶୁଣି ନ ପାରିଥିବା ଭଳି ପ୍ରବୀର 'ଇଣ୍ଡିଆ ଟୁ ଡେ'ର କେଉଁ ଗୋଟାଏ ଆର୍ଟିକିଲ୍ ଭିତରେ ଅନ୍ୟମନସ୍କ ଭାବରେ ମୁହଁମାଡ଼ିଦେଇଥିଲେ ।

□□□

# ଅସ୍ପୃଶ୍ୟ ପୃଥିବୀ

ଗୌହାଟୀ ହାଇକୋର୍ଟର ଡିଭିଜନ୍ ବେଞ୍ଚ ଆଗରେ ଶୁଣାଣିର ଆଜି ଶେଷଦିନ । ଏକ ଚାଞ୍ଚଲ୍ୟକର ସାମ୍ବିଧାନିକ ମକଦ୍ଦମାରେ ନ୍ୟାୟାଳୟର ବିଚାର ଶୁଣିବା ପାଇଁ ଉତ୍କଣ୍ଠିତ ଚିତ୍ତରେ ଅପେକ୍ଷା କରି ରହିଛନ୍ତି ସମ୍ବାଦପତ୍ରର ସାମ୍ବାଦିକ ଓ ଆଇନଜ୍ଞମାନେ, ସରକାରୀ ପକ୍ଷ ତଥା ଦେଶର ପ୍ରଭୃତ ଚିନ୍ତାଶୀଳ ଜନସମାଜ । ଗୋଟାଏ ପଟରେ ସମାଜର ଚିରାଚରିତ ବିଚାର ଓ ଆଇନ ଚଳନ, ଅନ୍ୟ ଦିଗରେ କାରାଗାରର ଅନ୍ଧକାରରେ ଅଠାଇଶ ବର୍ଷ ଧରି ବନ୍ଦୀ ଜଣେ ଅଶିକ୍ଷିତ ଦୁର୍ବଳ ଶ୍ରେଣୀର ପ୍ରତିନିଧି, ନନ୍ଦୁଲାଲ ରାଜଖୋଆ । ନନ୍ଦୁଲାଲ— ଅଠାଇଶ ବର୍ଷ ତଳେ ନିହାତି ଏକ ସାଧାରଣ ଅପରାଧରେ ଗିରଫ ହୋଇ ଆସିଥିବା ଆସାମୀ । ଆଇନତଃ ମାତ୍ର ଛଅମାସ ଜେଲ ଭୋଗି ସେ ଖଲାସ ହୋଇଯିବା କଥା; କିନ୍ତୁ ଏ ଯାଏଁ ତା' ଅପରାଧର ଶୁଣାଣି ହୋଇନାହିଁ ଅଦାଲତରେ । ମାନବିକ ଅଧିକାର ଗୋଷ୍ଠୀ ତରଫରୁ ନିଯୁକ୍ତି ପାଇଥିବା ଓକିଲଙ୍କ ଅନୁରୋଧ—ନ୍ୟାୟାଳୟ ମୁକ୍ତ ଦିଅନ୍ତୁ ନନ୍ଦୁଲାଲକୁ । ଯେଉଁ ଆଇନ ଜୀବନ ଦେଇପାରେ ନାହିଁ, ସେ ଆଇନର ଅନ୍ତତଃ ଅଧିକାର ନାହିଁ ଏଇ ନିରାଶ୍ରୟ ଦରିଦ୍ରର ଜୀବନକୁ ଦୀର୍ଘ ଅଠେଇଶ ବର୍ଷର ଅନ୍ଧକାର ଭିତରେ ବୁଡ଼ାଇ ରଖିବାକୁ ।

ଅପର ପକ୍ଷର ଓକିଲଙ୍କୁ ଇଙ୍ଗିତ କରି ମାନ୍ୟବର ବିଚାରପତିଙ୍କ କହିବାର କଥା— ଯେଉଁଠି ଅଠେଇଶ ବର୍ଷ ଚାଲିଯାଇଛି, ସେଠି ଆଉ ଛଅଟା ମାସ ତ ଅପେକ୍ଷା କରାଯାଇ-ପାରେ ! ଏପରି ଏକ ଚାଞ୍ଚଲ୍ୟକର ପରିସ୍ଥିତି ଉପୁଜାଇବାରେ ଓକିଲଙ୍କର ବ୍ୟକ୍ତିଗତ ସ୍ୱାର୍ଥ ନିହିତ ନାହିଁ ତ ? ଏଇମିତି ଗୋଟାଏ କେଶ୍ ସପକ୍ଷରେ ଯୁକ୍ତି କରି ନିଜେ ସ୍ୱନାମଧନ୍ୟ ହେବାର ପ୍ରଚେଷ୍ଟା କରୁନାହାନ୍ତି ତ ? ଗୋଟାଏ ମୁହୂର୍ତ୍ତ ପାଇଁ କୋର୍ଟରେ ସମସ୍ତେ ଚୁପ୍ ହୋଇଗଲେ ।

ଚାଳିଶ ବର୍ଷର ଅଭିଜ୍ଞତା ନେଇ ସିନ୍ଧୁପୁର ଆଡ଼ଭୋକେଟ୍ ସମରେନ୍ଦ୍ର ଚକ୍ରବର୍ତ୍ତୀଙ୍କ କପାଳରେ ବିନ୍ଦୁ ବିନ୍ଦୁ ଝାଳ । ନିଜ ଜୀବନରେ ପ୍ରଥମ ଥର ପାଇଁ ସୁପ୍ରିମକୋର୍ଟ ଆଗରେ ଠିଆହେଲାବେଳେ ତାଙ୍କୁ ଏତେ ବେଶି ନିରାଶ୍ରୟ ଲାଗିନାହିଁ । ଅଥଚ ଆଜି କାଠବାଡ଼ର ଏ ପାଖଟିରେ ଥାଇ, ଦର୍ଶକମାନଙ୍କ ପାଇଁ ଉଦ୍ଦିଷ୍ଟ କାଠ ଚୌକିରେ ବସି ମଧ୍ୟ ତାଙ୍କ ପାଦତଳୁ ମାଟି ଖସି ଖସି ଯାଉଛି । ଏଇ କେଶ୍‌ର ନିଷ୍ପତ୍ତି ଉପରେ ତାଙ୍କ ଜୀବନର ଆତ୍ମଦର୍ଶନର ଫଇସଲା ହେବ ସତେ ଯେମିତି ।

କାରଣଟା କରୁ ଭିନ୍ନ । ପ୍ରଥମ ଥର ପାଇଁ ସ୍ତ୍ରୀ ମାଧୁରୀମା ସାମ୍ପ୍ରଧାନକ ମକଦ୍ଦମାରେ ଅସାମୀ ନନ୍ଦୁଲାଲ ରାଜଖୋଆର ଓକିଲ ଭାବରେ ଅଦାଲତ ଆଗରେ ହାଜରହୋଇଛନ୍ତି । ହଠାତ୍ ଶାନ୍ତ ଅଦାଲତରେ ଗୋଟାଏ ନାରୀ କଣ୍ଠର ଦମ୍ଭୋକ୍ତି—"ମାଇଁ ଲର୍ଡ୍, ବିଚାର ପ୍ରତି ଉଦାସୀନ ରହି ବାଦୀ ପକ୍ଷ ଆସାମୀର ଯଥେଷ୍ଟ କ୍ଷତି କରିଛନ୍ତି । ଆସାମୀର ନଷ୍ଟ ହୋଇଯାଇଥିବା ଅଠେଇଶ ବର୍ଷର ଦ୍ୱାହି ଦେଇ ନୁହଁ, ମାନବିକତା ଦୃଷ୍ଟିରୁ ମୁଁ ନ୍ୟାୟାଳୟକୁ ଉଚିତ ବିଚାର କରିବାକୁ ଅନୁରୋଧ କରୁଛି ।"

ଦର୍ଶକମଣ୍ଡଳୀରେ ଖେଳିଯାଇଥିବା ଚାପା ଗୁଞ୍ଜନକୁ ବନ୍ଦ କରି ଦେଇ ଅଦାଲତ ବନ୍ଦ ହେବା ଆଗରୁ ମୁଖ୍ୟ ବିଚାରପତି ରାୟ ପଢ଼ିଲେ—"···ଜଣେ ଅଲ୍ପବୟସ୍କା ନାରୀ ଆଇନଜ୍ଞା ଆଜି ନ୍ୟାୟାଳୟକୁ ଏକ ବିରାଟ ମାନସିକ ଦ୍ୱନ୍ଦ୍ୱ ଭିତରକୁ ଠେଲିଦେଇ, ଆଇନର ସାମାଜିକ ସ୍ଥିତିକୁ ଦୋହଲାଇ ଦେଇଛନ୍ତି । ତାଙ୍କର ବଳିଷ୍ଠ ଯୁକ୍ତି ଅନୁଯାୟୀ ଅସାମୀକୁ ମୁକ୍ତି ଦେଇ ନଥିଲେ ଆମର ଭାବୀ ବଂଶଧରମାନେ ହୁଏତ ଆମ ସମୟକୁ 'ଅନ୍ଧକାର ଯୁଗ' ମଧ୍ୟରେ ସାମିଲ କରିନେଇଥାଆନ୍ତେ···"

ସାମ୍ବାଦିକ, ପ୍ରେସ କ୍ୟାମେରାର ଭିଡ଼ ଠେଲି ମାଧୁରୀମାକୁ ଆଡ଼େଇ ନେଇଯାଉଥିଲେ ବୃଦ୍ଧ ସମରେନ୍ଦ୍ର । ହୃଦୟର ଆନନ୍ଦକୁ ଧରି ରଖିପାରୁ ନଥାଆନ୍ତି ସେ । ଆତ୍ମହରା ହେଉ ହେଉ ମନେ ମନେ ଗୁଣି ହେଉଥିଲେ—ଆଜି ତାଙ୍କ ସହଧର୍ମିଣୀଙ୍କ ପ୍ରତି ତାଙ୍କର ସବୁ ଦାୟିତ୍ୱ ସମ୍ପନ୍ନ ହୋଇଯାଇଛି ।

× × × ×

"ଦିଦୀ !" ···"ଉଁ", ମୁହଁ ଉପରକୁ ନଟେକି ସାନଭାଇ ମନୀଷ୍ ଡାକର ଜବାବ ଦେଲି ମାଧୁରୀମା ।

"ଝର୍କାଟା ବନ୍ଦ କରିଦିଅ ଦିଦୀ । ମା' କହିଲେ କହିଦେବାକୁ···ତୁମ ବହି ଖାତା ଭିଜିଯିବ ।"

ଓଃ—ଦିଦୀଟା ଶୁଣୁନ କାହିଁକି ଯେ ? କ'ଣ ଏମିତି ମଜ୍ଜି ଯାଇଛି ଲେଖାରେ ? କି ଆନନ୍ଦ ମିଳୁଛି କେଜାଣି ଏ ମୋଟା ମୋଟା ବହିରୁ ? ବାବାରେ, ତାକୁ ପଚାରିବ କିଏ ? କି ଗମ୍ଭୀର ! ମନୀଷ ଭୀଷଣ ଭୟ କରେ ଦିଦୀର ଗାମ୍ଭୀର୍ଯ୍ୟକୁ । ଆଜିକାଲି କ'ଣ ହୋଇଛି କେଜାଣି, ସେ ଅସମ୍ଭବ ଭାବରେ ଚୁପ୍‌ଚାପ୍ । ଯେତିକିଟା କଥା ନ କହିଲେ ଚଳିବ ନାହିଁ, ଠିକ୍ ସେତିକି କଥା ସେ କହେ । ବିଶେଷ କରି ପଢ଼ାପଢ଼ି ସମୟରେ କେହି ଡିଷ୍ଟର୍ବ କଲେ ଭୀଷଣ ବିରକ୍ତ ହୁଏ ସେ ।

ସତରେ, ଦିଦୀଟା କେତେ ବଦଳିଗଲା । ଆଉ ତା' ସାଙ୍ଗରେ ଅଳି ଝଗଡ଼ା କରେ ନାହିଁ । ସବୁବେଳେ ହସି ହସି କଥା କହେ । ମନୀଷକୁ କିନ୍ତୁ ଏମିତି ଭଦ୍ର, ମାର୍ଜିତ କଥାବାର୍ତ୍ତା ଭଲ ଲାଗେ ନାହିଁ । ତା'ଠାରୁ ଢେର୍ ଭଲ ଦିଦୀର କଳିକଜିଆ, ଯୁକ୍ତି ଅଭିଯୁକ୍ତି ପାଟି । ଆଜିକାଲି ଆସ୍କର, ମୁଢ଼ିମୁଆଁ, ଗୁଡ଼ପିଠା ଚୋରିରେ ତା' ସାଙ୍ଗ ହୁଏ ନାହିଁ

ସେ । ଯେତେବେଳେ ଦେଖ ବହି ଧରି ବସିଥାଏ । ଖୁବ ହସ ଲାଗିଲା ମଳୟଙ୍କୁ । ଆଗରୁ ପଢ଼ା ସମୟରେ କେତେ ପେଖନା କାଢ଼ୁଥିଲା ଦଦା—ଆଜି ମୁଣ୍ଡ ବିନ୍ଧିଲାଣି ତ କାଲି ପେଟ କାମୁଡ଼ୁଛି । ନହେଲେ କଲେଜ ଡ୍ରାମା ପାଇଁ ପାର୍ଟ ମୁଖସ୍ଥ କରିବାକୁ ହେବ । କେଉଁଦିନ ପୁଣି ବନ୍ୟା ଋନ୍ଦା ଦେବାକୁ ଚ୍ୟାରିଟି ଶୋ' ପାଇଁ ଗୀତ ଅଭ୍ୟାସ କରିବାକୁ ପଡ଼ିବ । ଅଥଚ ଆଉ ପରୀକ୍ଷା ଦେବାକୁ ପଡ଼ିବ ନାହିଁ ଜାଣି ମଧ୍ୟ ସେ ବହି ଧରି ବସୁଛି ଯେବେବେଳେ । ବଡ଼ଭଉଣୀର ହଠାତ୍ ଏମିତି ପରିବର୍ତ୍ତନ ମୁଣ୍ଡରେ ପଶେ ନାହିଁ କିଶୋର ମଳୟର ।

ଏଇ ଯେ—ଦଦା ପୁଣି ମଜ୍ଜିଗଲାଣି ପଢ଼ାରେ ।

"ଝର୍କାଟା ମୁଁ ବନ୍ଦ କରିଦେବି କି ଦଦା ?"

ଏଥର ମୁଣ୍ଡ ଟେକିଲା ମାଧୁରିମା, "ନାରେ ଯା'—ମୁଁ ବନ୍ଦ କରିଦେଉଛି ।"

ଚୌକିଟା ପଛକୁ ଠେଲି ଠିଆହେଲା ସେ । ଇସ୍—ବର୍ଷାର ଛାଟ ଟେବୁଲ୍ଟା ଲ' ବହି ଉପରେ ପଡ଼ିଗଲାଣି । ଆକାଶ ଭାଙ୍ଗି ବର୍ଷିଯାଉଛି ଏ ଅଦିନିଆ ବର୍ଷା । ରାସ୍ତା ଦୁଇକଡ଼ର ନାଳ ଉଛୁଳି ପାଣି ସୁଅ ରାସ୍ତା ଉପରେ ଛୁଟିଛି । ତା' ସାଙ୍ଗରେ କାଗଜ, ଛିଣ୍ଡା କନା, ଅଳିଆ, ଆବର୍ଜନା ସବୁ । କେମିତି ଅନ୍ଧାରୁଆ ଲାଗୁଛି ଚାରିଆଡ଼—ଯେତେ ଯେମିତି ଏଇମାତ୍ର ରାତି ନଇଁ ଆସିବ ସହରରେ । ଅଥଚ ସୂର୍ଯ୍ୟାସ୍ତ ହେବାକୁ ଆଉରି ଅନେକ ଡେରି । ଗୌହାଟୀ ସହରଟା ଇ ଏମିତି । ଏ ଅଞ୍ଚଳରେ ବର୍ଷା ହୁଏ ବିନା କିଛି ସୂଚନାରେ— ଅତର୍କିତ ଭାବରେ ଅଦରେ ଖୁବ୍ ଜୋର୍‌ରେ ବର୍ଷିଯାଇ ହଠାତ୍ ଛାଡ଼ିଯାଏ । ମେଘ ପଛରେ ମୁହଁ ଢାଙ୍କି ଲୁଚି ରହିଥିବା ସୂର୍ଯ୍ୟ ପୁଣି ମୁହଁ ଦେଖାଇ ଫିକ୍ କରି ହସିଦିଏ । ବେଳେ ବେଳେ ଏମିତି ମଧ୍ୟ ହୁଏ, ବର୍ଷା ଲାଗି ରହେ ତିନଦିନ, ଚାରିଦିନ ଧରି । ଗୌହାଟୀ ସହରଟା ଯେତେ ଯେମିତି ଗୋଟାଏ ଦ୍ୱୀପ । ସ୍କୁଲ, କଲେଜ, ଅଫିସ, ଦୋକାନ ସବୁ ବନ୍ଦ ହୋଇଯାଏ । ଏମିତିକା ପାଗରେ ଘରୁ ବାହାରିବ କିଏ ? ମନେହୁଏ, ସୃଷ୍ଟିକର୍ତ୍ତାଙ୍କ ସୃଷ୍ଟି ଯେମିତି ପ୍ରଳୟ ହୋଇଯିବ ଏଇମାତ୍ର; କିନ୍ତୁ କିଛି ହୁଏ ନାହିଁ । ବର୍ଷାଟା ଛାଡ଼ିଯିବା ପରେ ପରେ ଖୁବ୍ ଶୀଘ୍ର ନିୟମିତ ଜୀବନଯାତ୍ରା ଆରମ୍ଭ ହୋଇଯାଏ । ପାଗର ଏମିତି ଅନିଶ୍ଚିତତା ଲୋକଙ୍କର ଜୀବନରେ ଧରାବନ୍ଧା ହୋଇଗଲାଣି ।

ତରତରରେ ଝର୍କାଟା ବନ୍ଦ କରି ଦେଇ ଦେଲା ଟିକିଏ ରହିଗଲା ମାଧୁରିମା । ଏ ବର୍ଷା ଆଉ ଥଣ୍ଡା କାଲୁଆ ପବନ ବୋହି ଆଣିଲା କେତେଦିନର ପୁରୁଣା ସ୍ମୃତି ସବୁ, ଯାହା ସେ ଭୁଲିବାକୁ ଚେଷ୍ଟା କରି ମଧ୍ୟ ପାରୁନି । ମନ ଭିତରର କେଉଁ ଗୋଟାଏ ଅନ୍ଧାରୁଆ କୋଣରେ ସେ ସ୍ମୃତି ଆଜି ବି ସାଇତା । ଏମିତି ଅଦିନିଆ ବର୍ଷା ପାଗଳ କରିଦେଉଥିଲା ଗୌତମକୁ । ଭିଜି ଭିଜି ସ୍କୁଟରରେ ବୁଲିବାକୁ ତାକୁ ଏତେ କ'ଣ ଭଲଲାଗୁଥିଲା କେଜାଣି ? ତା' ପୁଣି ଏକା ନୁହଁ, ଜୋର୍ କରି ସେ ସାଙ୍ଗରେ ନେଇ ଯାଉଥିଲା ମାଧୁରିମାକୁ । ମାଧୁରିମା କିନ୍ତୁ ଏ ଆନନ୍ଦର ମାନେ ବୁଝେନା । ଓଦା ଶାଢ଼ିଟା ଯେତେବେଳେ ଦେହ ସାଙ୍ଗରେ ଲାଖିଯାଏ, ବଡ଼ ଅସ୍ୱସ୍ତି ଲାଗେ ତାକୁ । ବର୍ଷାରେ ଭିଜି ପରେ ନାକ ସଡ଼ସଡ଼, ଥଣ୍ଡି

ଘଡ଼ଘଡ଼ ହୋଇ କଷ୍ଟ ପାଇବାଟା ସେ ଆଦୌ ପସନ୍ଦ କରେ ନାହିଁ । ଗୌତମକୁ ସେ ବାଧ୍ୟ କରେ ତାକୁ ଘରକୁ ନେଇଯିବାକୁ, କିନ୍ତୁ ଗୌତମ କିଛି ଶୁଣିବାକୁ ନାରାଜ ।

"ବାଃ, ଏତେ ଶୀଘ୍ର ମନ ଛାଡ଼ିଗଲା ! ଦେଖ, ମାତ୍ର ଅଧଘଣ୍ଟାଏ ହୋଇଛି । ଚାଲନା, ୟୁନିଭର୍ସିଟି ପର୍ଯ୍ୟନ୍ତ ଯିବା, ବସିନ୍ ଦାଦା ହୋଟେଲରେ ଦୁଇ କପ୍ କଫି ଖାଇ ଫେରିବା, କି ମଜା ହେବ କୁହ ତ ?"

"ହଁ ଗଲି ତ, ତୁମ ସାଙ୍ଗରେ, ପୁଣି ୟୁନିଭରସିଟି ? ସେଥିରେ ପୁଣି ଏ ଓଦା ଶାଢ଼ୀ ପିନ୍ଧି ବସିନ ଦାଦା ହୋଟେଲକୁ ? ବାପ୍‌ରେ, ସମସ୍ତେ ଖାଇଗଲା ପରି ଚାହିଁରହିବେ । ସେଇଠୁ କ'ଣ ହେବ ? ଆଉ ଯଦି କିଏ ଚିହ୍ନା ଲୋକ ଦେଖା ହୋଇଯାଏ, ତେବେ ତ କଥା ସରିଲା । ମାଟିରେ ମିଶିଯିବି ମୁଁ । ସେମାନେ କ'ଣ ଭାବିବେ କୁହ ?"

"କ'ଣ ଆଉ ଭାବିବେ—ସୁନ୍ଦରୀ ଝିଅଟିଏ ତା' ପ୍ରେମିକ ସହିତ ବର୍ଷାରେ ରୋମାନ୍ସ କରୁଛି । ସିନେମା ନିଶ୍ଚୟ ଦେଖୁଥିବେ ସେମାନେ ! ଆଉ କେହି ଯଦି କିଛି ପଚାରେ, କହିଦେବ—ଲାଇବ୍ରେରି ଯାଉଥିଲି—ବାଟରେ ବର୍ଷାଟା ହେବାରୁ ଭିଜିଗଲି ।"

"ଧେତ୍—ଅଚ୍ଛା ଛାଡ଼ । ଏତେ ମିଛ ମୁଁ କହିପାରିବି ନାହିଁ । ମତେ ଘରେ ଛାଡ଼ିଦିଅ । ତା'ପରେ ମନଇଚ୍ଛା ବର୍ଷାରେ ବୁଲ ତୁମେ"—ଅଳିକରେ ମାଧୁସ୍ମା ।

ଗମ୍ଭୀର ହୋଇ ଗୌତମ କ୍ଷଣେ ଚୁପ୍ ରହିଯାଏ । ତା'ପରେ କହେ, "ତୁମେ କ'ଣ ଲୋକଙ୍କ କଥାରେ ଅଛ ସ୍ମା ? ମୋର ଇଚ୍ଛା ଅନିଚ୍ଛାରେ ତୁମର କିଛି ନାହିଁ ?" ଗାମ୍ଭୀର୍ଯ୍ୟଭରା ଗୌତମର ମୁହଁରେ ଅଭିମାନର ଛଟା, ତା'ର ଭରା ଭରା କଣ୍ଠ, ଅଭିମାନଭରା ବାଣୀ ସହିପାରେନାହିଁ ମାଧୁସ୍ମା ।

"ଏଇ ରାଗିଗଲ···ଅଚ୍ଛା ବୁଝନା ତୁମେ ? ଚାଲ ଯିବା ୟୁନିଭରସିଟି ।" ପୁଣି ସ୍କୁଟର ଉପରେ ବସିପଡ଼ି ଗୌତମ ପିଠିରେ ମୁହଁ ଘଷି ଘଷି ଖୁବ୍ ଆସ୍ତେ କହେ, "ତୁମ ସାଙ୍ଗରେ ସାରା ଜୀବନ ଚାଲିବାକୁ ମୁଁ ଶପଥ ନେଇଛି ଗୌତମ—ଏଇ ଛୋଟ କଥାଟା ରଖିବି ନାହିଁ ? ଚାଲ ଯେଉଁଠିକି ନେଇଯିବ ମୁଁ ଯିବି ।"

ଖୁସିରେ ଉଜ୍ଜ୍ୱଳ ହୋଇଉଠେ ଗୌତମର ମୁହଁ । ହାତରେ ଆକ୍ସିଲେଟର ଉପରେ ଚାପ ଦେଇ ଦେଇ କହିପକାଏ, "ତୁମେ ବୁଝିପାରିବ ନାହିଁ ସ୍ମା, ଏ କଳା କଳା ବାଦଲଭରା ଆକାଶ, ଅଦିନିଆ ବର୍ଷା ଓ ତୁମର ସାନ୍ନିଧ୍ୟ କାହିଁକି ମୋତେ ପାଗଳ କରିଦିଏ । କଲିକତାରେ କେବେ ରହିନ ତୁମେ । ସେଠିକାର ପଲ୍ୟୁଟେଡ ବାତାବରଣ, ଅନ୍ଧାରୁଆ ଫ୍ଲାଟ୍ ଓ ରୁଟିନ୍‌ବନ୍ଧା ଜୀବନରେ ଅତିଷ୍ଠ ହୋଇପଡ଼ିଛି ମୁଁ । ଛିଃ—ମନେହୁଏ ବର୍ଷା ପାଣି ମଧ୍ୟ ସ୍ୱଚ୍ଛ ନୁହେଁ ସେଠି । ମୁକ୍ତ ଆଲୋକ, ମାଦକତାଭରା ଶୀତଳ ପବନ, ସବୁ ଯେମିତି ସେଠି ସ୍ୱପ୍ନ । ପ୍ରକୃତିରାଣୀର ଏ ଯେଉଁ ଅକୁଣ୍ଠିତ ଦାନ, ତା'ର ମୂଲ୍ୟ କ'ଣ ତୁମେ ବୁଝନା ସ୍ମା ? ସତରେ ପ୍ରାସାଦ ମଧ୍ୟରେ ରହିଥିବା ରାଜକନ୍ୟା ଯେମିତି ଦାରିଦ୍ର୍ୟ କ'ଣ ବୁଝିପାରେ ନାହିଁ, ତୁମେ ସେମିତି ସମସ୍ତ ପ୍ରାକୃତିକ ଐଶ୍ୱର୍ଯ୍ୟର ଅଧିକାରିଣୀ

ହୋଇ ବୁଝିବ ନାହିଁ କୃତ୍ରିମ ସଭ୍ୟତାର କ୍ଳେଶ ।"

ପ୍ରଗଲ୍ଭ ହୋଇଉଠେ ଗୌତମ । ତା'ର ଲମ୍ବା କାହାଣୀର ଅଦ୍ଭୁତପଣ ଶୁଣି ହସି ଉଠେ ରୀମା । ଏମିତିରେ ଗୌତମ କଥା କୁହେ ଖୁବ୍ କମ୍ । କିନ୍ତୁ ପ୍ରକୃତିର ସୌନ୍ଦର୍ଯ୍ୟରେ ହଜିଗଲାବେଳେ ସେ ହୋଇଯାଏ କବି । ପ୍ରାଣ ଖୋଲି ହସେ ମାଧୁରୀମା । ସେମିତି ସ୍କୁଟର ପଛ ସିଟ୍‌ରେ ବସି ସେ ଗୌତମକୁ ଦୁଇ ହାତରେ ଜାବୁଡ଼ି ଧରି ଆଖି ବନ୍ଦ କରିଦିଏ ଖୁବ୍ ତୃପ୍ତିରେ ।

× × × ×

ଶବ୍ଦ କରି ଜୋର୍‌ରେ ଝର୍କାଟା ବନ୍ଦ କରିଦେଲା ମାଧୁରୀମା । ଥାଉ, ଏମିତି ବନ୍ଦ ଥାଉ ସେ ସ୍ମୃତି । ପୁରାତନ କ୍ଷତକୁ ଖୋଳି ରକ୍ତାକ୍ତ ହେବାର କୌଣସି ମାନେ ହୁଏ ନାହିଁ । ଯାହା ସମ୍ପୂର୍ଣ୍ଣ ଭାବରେ ତା'ର ଅନିଚ୍ଛାକୃତ, ସେହିପରି ଏକ ଘଟଣା ନେଇ ମାନସିକ ଭାରସାମ୍ୟ ସେ ହରାଇବ ବା କାହିଁକି ? ନିଜର କୌଣସି ଭୁଲ ନଥାଇ ସାରା ଜୀବନ କାହିଁକି ସେ ଜଳିବ ? କାହିଁକି ନଷ୍ଟ କରିଦେବ ତା'ର ନିଜତ୍ୱକୁ ଏକ ବିଗତ ଦୁର୍ଘଟଣା ପାଇଁ ?

କେମିତି ଏକ ଦୁଃଖଭରା ହସ ହସିଲା ମାଧୁରୀମା । ଆଉ ଯାହା ହେଉ ନା କାହିଁକି, ତା' ଜୀବନରୁ ଗୌତମର ଏ ଆକସ୍ମିକ ପ୍ରସ୍ଥାନ ତାକୁ ଦାୟିତ୍ୱସମ୍ପନ୍ନ କରିଦେଲା । ତା' ପାଇଁ ଆଣିଦେଲା ଜଞ୍ଜାଳମୟ ଦୁଃଖପୂର୍ଣ୍ଣ ଜୀବନରେ ବଞ୍ଚିବାର ଦୃଢ଼ତା । ଆଃ—କେତେ ବଦଳିଗଲା ସେ ନିଜେ ! ସଂସାରଟାକୁ ଏତେ ଅଳ୍ପ ବୟସରୁ ଚହ୍ନିବା କ'ଣ ବା ଦରକାର ଥିଲା ତା'ର ? ସେମିତି ହସି ଖେଳି ଆଉ କେତେଟା ବର୍ଷ କଟାଇ ଦେଇ ପାରି ନ ଥାନ୍ତା ସେ ? ତା'ର ପ୍ରଥମ ଯୌବନର ମୃତ୍ୟୁ ପାଇଁ ଏତେ ବଡ଼ ଆଘାତ ପାଇବାଟା କ'ଣ ନିହାତି ଦରକାର ଥିଲା ?

ଛାତି ଅରାଇ ଲମ୍ବା ନିଶ୍ୱାସଟାଏ ନେଲା ମାଧୁରୀମା । ନା, କାହିଁ କେତେ ବର୍ଷର ପୁରୁଣା କଥାକୁ ଘୋଷି ବର୍ତ୍ତମାନଟାକୁ ନଷ୍ଟ କରିବାକୁ ସେ ଦେବନାହିଁ । ଭାବିଲେ ବଡ଼ ଆଶ୍ଚର୍ଯ୍ୟ ଲାଗେ—କାହିଁ ଗଲା ତା'ର ଧୂଳିଘର ସ୍ୱପ୍ନ ସବୁ ? କାହିଁ ଗଲା ତା'ର ଆକାଶରେ ଉଡ଼ିବୁଲୁଥିବା ମନ ? ଯୌବନର ପ୍ରାରମ୍ଭରେ ପ୍ରତ୍ୟେକ ସାଧାରଣ ଝିଅ ପରି ତା'ର ମଧ୍ୟ ଲକ୍ଷ୍ୟ ଥିଲା ବିବାହ । ସେଇ କୁହୁଡ଼ିଘେରା ଚନ୍ଦନ ପରି ଏକା ଆକାର ରୂପ ନେଲା ଗୌତମ ସାନ୍ୟାଲ୍ ସାଙ୍ଗରେ ପରିଚୟ ପରେ ପରେ ଏବଂ ଗୌତମମୟ ହୋଇଗଲା ମାଧୁରୀମାର ତନୁ, ମନ, ହୃଦୟ । ଅପେକ୍ଷା କରି ସେ ରହିଥିଲା, କେବେ ତାକୁ ଗୌତମ ତା' ଜୀବନରେ ସାମିଲ କରି ନେବ । କିନ୍ତୁ ତାହା ଆଉ କୌଣସି ଦିନ ହେଲା ନାହିଁ ।

ଗୌତମ ସାଙ୍ଗରେ ତା'ର ପରିଚୟ ଥିଲା ଖୁବ୍ ଆକସ୍ମିକ । ସେଦିନ କଲେଜରୁ ଫେରୁ ଫେରୁ ସେମିତି ବର୍ଷା ଓ କୁଆପଥର ମାଡ଼ ଆରମ୍ଭ ହୋଇଯାଇଥିଲା, ବିଚଳିତ

ହୋଇପଡ଼ିଥିଲା ମାଧୁସ୍ମିତା । ସାମ୍ନାରେ ଲମ୍ବା ପିଚ୍ ରାସ୍ତା, କେଉଁଠି ଟିକିଏ ଆଶ୍ରୟ ନେବାର ସ୍ଥାନ ନାହିଁ । ଏଣେ ପୁଣି ନଇଁ ଆସୁଛି ବର୍ଷା । ଏ ସବୁ ପାହାଡ଼ିଆ ଅଞ୍ଚଳରେ ଏମିତି ହୁଏ । ସନ୍ଧ୍ୟାର ପରସର ଖୁବ୍ କମ୍ । ସୂର୍ଯ୍ୟାସ୍ତ ପରେ ପରେ ହିଁ ରାତି ଓହ୍ଲାଇ ଆସେ । ମନରେ ଆଶଙ୍କା ଓ ଦୁଶ୍ଚିନ୍ତା ନେଇ ଯେତେବେଳେ ଭିଜି ଭିଜି ଆଗେଇ ଯାଉଥିଲା ମାଧୁସ୍ମିତା, ସାମ୍ନାରୁ ସ୍କୁଟରରେ ଆସୁଥିଲା ଗୌତମ । ଏମିତି ଅସହାୟ ଅବସ୍ଥାରେ ପଡ଼ିଥିବା ଜଣେ କଲେଜ ଛାତ୍ରୀକୁ ଘରେ ନେଇ ଛାଡ଼ି ଦେବାର ପ୍ରସ୍ତାବ ଦେଇଥିଲା ସେ । ଅନନ୍ୟୋପାୟ ହୋଇ ଶେଷରେ ରାଜି ହୋଇଥିଲା ମାଧୁସ୍ମିତା ।

ସେଇଦିନର ପରିଚୟ ରୂପ ନେଲା ବନ୍ଧୁତାରେ, ଶୀଘ୍ର ପୁଣି ପ୍ରଣୟରେ । ସେତିକିବେଳେ ମାଧୁସ୍ମିତା ଜାଣିଲା, ଗୌତମ ଇଂରାଜୀରେ ସ୍ନାତକୋତ୍ତର ଡିଗ୍ରି ହାସଲ କରିଛି ଯାଦବପୁର ବିଶ୍ୱବିଦ୍ୟାଳୟରୁ । ପ୍ରଥମ ଶ୍ରେଣୀ ନହେବାରୁ ଅଧ୍ୟାପକ ଚାକିରି ହୋଇପାରିଲା ନାହିଁ । ଗୌହାଟୀ ଆସିଛି ମାମୁଁ ଘରକୁ—ଶାନ୍ତ ବାତାବରଣ ମଧ୍ୟରେ କମ୍ପିଟିଟିଭ୍ ପରୀକ୍ଷାର ପ୍ରସ୍ତୁତି ପାଇଁ । ଗୌତମର କଥା, ଚାଲିଚଳଣି ଖୁବ୍ ଭଲଲାଗୁଥିଲା ମାଧୁସ୍ମିତାକୁ । ଘନ ଘନ ସାକ୍ଷାତ ଓ ଆଲାପ ମଧ୍ୟରେ କେତେବେଳେ ଯେ ମାଧୁସ୍ମିତା ଓ ଗୌତମଙ୍କର ମନ ପରସ୍ପର ନିକଟରେ ବନ୍ଧାପଡ଼ିଗଲା, ତା' କେହି ଜାଣି ପାରିଲେ ନାହିଁ । ମାଧୁସ୍ମିତା ଭିତରେ ହିଁ ଗୌତମ ଦେଖୁଥିଲା ତା' ଭବିଷ୍ୟତର ସ୍ୱପ୍ନ । ଗୌତମର ସ୍ୱପ୍ନରେ ଯେତେବେଳେ ଆତ୍ମବିସ୍ମୃତ ହେଉଥିଲା ମାଧୁସ୍ମିତା, ଠିକ୍ ସେତିକିବେଳେ ଗୋଟାଏ ବିପର୍ଯ୍ୟୟ ଘଟିଗଲା ।

ଯୁନିଭରସିଟି ଲନ୍‌ରେ ସେଦିନ ଗୌତମର ଅମ୍ ଅମ୍, ବିଷାଦଗ୍ରସ୍ତ ମୁହଁ ଦେଖି ମାଧୁସ୍ମିତା ଅଧୈର୍ଯ୍ୟ ହୋଇଯାଇଥିଲା । ଚକ୍ଷୁ ଦୁଇଟିରେ ତା'ର ଅସ୍ଫୁଟ ଯୁଗର ଘନ କାଳିମା । ଛାତି ଭିତରେ କେଉଁଠି କ'ଣ ଅଟକିଯାଇଥିଲା ମାଧୁସ୍ମିତାର ।

"ଏଇ, କ'ଣ ହୋଇଛି ?"

କେମିତି କହିବ ନକହିବ ହୋଇ ଖୁବ୍ ତରଳ ଭାବରେ ଗୌତମ ଉତ୍ତର ଦେଇଥିଲା— "ମାମୁଁ କାଲି ତୁମ କଥା ପଚାରୁଥିଲେ ସ୍ମିତା, କାହା ପାଖରୁ ଶୁଣିଛନ୍ତି ବୋଧହୁଏ । କଥାଟା ମଧ୍ୟ ବାବା ମା'ଙ୍କ କାନରେ ପକେଇ ଦେଇଛନ୍ତି ସେ । କାଲି ମା' ଫୋନ୍ କରି ଖୁବ୍ ବ୍ୟସ୍ତ ହେଉଥିଲେ । ଆଉ ମୋ' ବାବାଙ୍କୁ ତ ତୁମେ ଜାଣିନ—ରାଗିଲେ ସ୍ୱୟଂ ନଟରାଜ ଖଣ୍ଡପ୍ରଳୟ କରିଦେବେ ।" ଖୁବ୍ ଶାନ୍ତ ଭାବରେ କହିଲା ଗୌତମ ।

ଝିଅ ଆଗର ଏ ନିସ୍ତବ୍ଧତାକୁ କିଛି ବୁଝିପାରି ନଥିଲା ମାଧୁସ୍ମିତା । ସେଇଥିପାଇଁ ବୋଧହୁଏ ଖିଲି ଖିଲି ହୋଇ ହସିପକେଇଲା ସେ ।

"ଡରୁଆ ! ବାବା ମା'ଙ୍କ ପାଖରେ ମୁଣ୍ଡ ଟେକି ଠିଆ ହୋଇ ମୋ' କଥା ସ୍ୱୀକାର କରିବାକୁ ଏତେ ଭୟ ? ପ୍ରେମ କଲ କେମିତି ? ଏବେ ଭଲା ତୁମ ନର୍ଭସ ଚେହେରା ଦେଖିପାରନ୍ତି ! ବାବା ମା'ଙ୍କ ପସନ୍ଦର ପାତ୍ରୀକୁ ବିବାହ କରି ତୁମର ପ୍ରେମ କରିବାର ଥିଲା, ପ୍ରେମବିବାହ ନୁହେଁ ।" ଥଟ୍ଟାରେ ଥଟ୍ଟାରେ କଥାଟା କହି ଦେମିତି ହସୁଥାଏ ମାଧୁସ୍ମିତା ।

ଘାଡ଼ଟାଏ ଓପାଖ୍ ସେପାଖ ଦେଇ ଦେଇ ଗମ୍ଭୀରଭାବରେ ଗୌତମ କହିଲା, "ବାବା, ମା'ଙ୍କ ପାଖରେ ମୁଣ୍ଡ ଟେକି କଥା କହିବାକୁ ମୁହଁ କେଉଁଠି ରଖିଛ ଝୁମା ?"

ହଠାତ୍ ଅଧାରୁ ବନ୍ଦ ହୋଇଗଲା ମାଧୁସ୍ମିତାର । ଆବାକାବା ହୋଇ ଗୌତମକୁ ଚାହିଁ କହିଲା, "କ'ଣ ହୋଇଛି ? ଏମିତି କାହିଁକି କହୁଛ ? ତୁମ ମୁଣ୍ଡ ଉଲଟା ହେଲା ଭଳି ମୁଁ ପୁଣି କଲି କ'ଣ ?"

ଏଥରକ ଫାଟିପଡ଼ିଲା ଗୌତମ : "ଓଃ ଷ୍ଟପ୍ ଇଟ୍—ଏମିତି ବଙ୍କା ବଙ୍କା ମନଭୁଲାଣିଆ କଥା କହିବାକୁ ଲଜ୍ଜା ଲାଗେନା ? ଇସ୍, କେତେ ଶାନ୍ତ ଭାବରେ କହିଦେଉଛ କଥାଗୁଡ଼ାକ ! ଯେତେ ଯେପରି କିଛି କରନ, କିଛି ଜାଣିନ ! ହୃଦୟ ଭିତରେ ହଳାହଳ ବିଷ ଭରି ମୁହଁ ଉପରେ ଏ ସରଳ ସୌନ୍ଦର୍ଯ୍ୟର ଅଭିନୟ କରିପାର କେମିତି ? ଧନ୍ୟ ତୁମେ ନାରୀ !" କ୍ରୋଧ ଏବଂ ଘୃଣାରେ କିପରି କଦାକାର ଲାଗୁଥିଲା ଗୌତମର ମୁହଁଟା ।

ଆକସ୍ମିକ ଏ ବଜ୍ରପାତ ପାଇଁ ମାନସିକ ପ୍ରସ୍ତୁତ ନଥିଲା ମାଧୁସ୍ମିତାର । ଆଖିକୋଣରେ ଦୁଇଟୋପା ଲୁହ ଚକ୍ ଚକ୍ କରୁଥିଲା ତା'ର । କିନ୍ତୁ ତାକୁ ଗଡ଼ିଆସିବାକୁ ଦେଲାନାହିଁ ସେ । ଗୌତମ ଆଗରେ ନିଜକୁ ଏମିତି ଦୁର୍ବଳ, ଶକ୍ତିହୀନ ବୋଲି ପ୍ରମାଣିତ କରିଦେବାକୁ ତା' ବିବେକ ବାଧାଦେଲା ।

ସେମିତି ଅନ୍ୟଆଡ଼େ ଚାହିଁ ଉତ୍ତେଜିତ ଗଳାରେ କହି ଲାଗିଥିଲା ଗୌତମ— "ବାପ୍‌ରେ, ସୁବିଧା ଦେଖି ପାଲରେ ପକେଇବାକୁ ବସିଥିଲ ନା··· ? ଜାତିଗୋତ୍ର ଠିକ୍ ନଥିବା ତୁମ ପରି ଗୋଟାଏ ଝିଅକୁ କିଏ ବା ବିବାହ କରିଥାଆନ୍ତା ? ସେଇଥିପାଇଁ ବାବା-ମା'ଙ୍କର ଅନୁମତି ନେଇ ପ୍ରେମର ନାଟକ ଆରମ୍ଭ କରିଦେଲ ମୋ' ସାଙ୍ଗରେ···"

"ବନ୍ଦ କର ଗୌତମ"—ଚିତ୍କାର କରିଉଠିଲା ମାଧୁସ୍ମିତା', "ଏମିତି ମିଛ ଆକ୍ୟୁଜେସନ କରି ନିଜର ଦୁର୍ବଳତାର ଆଉ ପରିଚୟ ଦିଅନାହିଁ । ପ୍ରେମର ନାଟକ ମୁଁ ଆରମ୍ଭ କରିନଥିଲି, କରିଥିଲ ତୁମେ । ତା'ଛଡ଼ା ଏ ସମସ୍ତ ଯଦି ଅଭିନୟ କେବଳ ଥିଲା, ତେବେ ନାଟକର ମୁଖ୍ୟନାୟକ ଚରିତ୍ର ଥିଲ ତୁମେ ।" ଫଁ କରି ଦୀର୍ଘଶ୍ୱାସଟାଏ ନେଲା ସେ । ପୁଣି ହସ୍ ହସ୍ କରି କହିଲା, "ତୁମ ମୋ' ଭିତରେ ଏଇ ସମ୍ପୂର୍ଣ୍ଣ ଭାବରେ ଏକାନ୍ତ ଘଟଣା ମଧ୍ୟକୁ ମୋ ବାପା-ମା'ଙ୍କୁ ଟାଣି ଆଣିବା ପରି ଘୃଣ୍ୟ କାର୍ଯ୍ୟ କରନାହିଁ ଗୌତମ ।"

ସେଇ ଯେ ମୁହଁ ବୁଲେଇ ଉଠି ଚାଲିଆସିଥିଲା, ଆଉ ଥରେ ବି ପଛକୁ ଫେରି ଚାହିଁନାହିଁ ମାଧୁସ୍ମିତା ।

କାପୁରୁଷ ଗୌତମର ଇଙ୍ଗିତଟା ବୁଝିବାକୁ ତା'ର ଡେରି ହୋଇନ । ମା'ଙ୍କ ଜୀବନର ଘଟଣାକୁ ନେଇ ଯେ ତା'ର ଆଜି ଏ କ୍ଷୋଭ, ଘୃଣା ସେକଥା କ'ଣ ମାଧୁସ୍ମିତା ବୁଝେନା ? ଜନ୍ମଦାତାଙ୍କ ପ୍ରତି ଭାବୀପତିର ଏ ଆକ୍ଷେପ ସହିନେଇଥାଆନ୍ତା ସିମା, ଯଦି ସେ ନିଜେ ଅନୁଭବ କରିଥାଆନ୍ତା ଯେ କିଛି ଗୋଟାଏ ବଡ଼ ଭୁଲ ରହିଯାଇଛି; ନା, ବରଂ ମା'ଙ୍କ ପ୍ରତି ତା'ର ସମ୍ମାନ ଆସେ । ଜୀବନର ଯୁଦ୍ଧକ୍ଷେତ୍ରରେ ଭାଙ୍ଗି ପଡ଼ିନାହାନ୍ତି ସେ । ମା'ଙ୍କଠାରୁ ହିଁ ତ ସେ

ଶିଖିଛୁ ବର୍ତ୍ତମାନକୁ ନେଇ ବଞ୍ଚିବାକୁ । ନଚେତ୍ ଗୌତମର ପ୍ରେମରେ ଯେମିତି ପାଗଳିନୀ ହୋଇପଡ଼ିଥିଲି ମାଧୁରୀମା, ଜୀବନ ତ ଦୁର୍ବିସହ ହୋଇଯାଇଥାଆନ୍ତା ତା'ପାଇଁ ।

ମା'ଙ୍କୁ କଥାଟା ସେଇଥିପାଇଁ କେବଳ କଷ୍ଟ ଦାଇ ନଥିଲା । ମା' ଅନ୍ତତଃ ନିଶ୍ଚିନ୍ତ, ତାଙ୍କର ପାଇଁ ତାଙ୍କ ଶେଷ୍ଟାଟିଅର ସ୍ୱପ୍ନ ଭାଙ୍ଗି ଗଲା ।

ଆଃ ମା—ଦୀର୍ଘନିଃଶ୍ୱାସ ନେଲା ମାଧୁରୀମା ।

ଭାରତ ସ୍ୱାଧୀନ ହେବାର ଅବ୍ୟବହିତ ପୂର୍ବରୁ ଯେତେବେଳେ ଦେଶ ବିଭାଜନ ହୋଇଗଲା ଏବଂ ଭାରତର ପୂର୍ବ ଓ ପଶ୍ଚିମରୁ କେତେକ ଅଂଶ ନେଇ ପାକିସ୍ତାନ ଗଠିତ ହେବ ବୋଲି ଜଣାପଡ଼ିଗଲା, ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଦଙ୍ଗାହଙ୍ଗାମା ଲାଗିଗଲା ସେତେବେଳେ । ବହୁ ବର୍ଷ ଧରି ଏକ ମନ ଏକ ପ୍ରାଣ ହୋଇ ବଢ଼ିଆସିଥିବା ଜାତିଟିରେ ଫାଟ ପଡ଼ିଗଲା । ପୂର୍ବ-ବଙ୍ଗର ନାମ ପରିବର୍ତ୍ତନ କରାଯାଇ ଯେତେବେଳେ ପୂର୍ବ-ପାକିସ୍ତାନ ହୋଇଗଲା, ମୁସଲମାନମାନେ ଅସ୍ତ୍ର ଟେକି ଉଠିଲେ ସେମାନଙ୍କର ହିନ୍ଦୁ ଭାଇମାନଙ୍କ ଉପରେ । ରକ୍ତରଞ୍ଜିତ ହୋଇଯାଇଥାଏ ପଦ୍ମାନଦୀ ସେଇ ନିରୀହ ଜନତାଙ୍କ ଲହୁରେ । କିନ୍ତୁ ଯେଉଁଦିନ ସେଇ ନଦୀରୁ ଅନ୍ୟମାନଙ୍କ ଶବ ସହିତ ତା' ବାପାଙ୍କର ମୃତ ଶରୀର ଚିହ୍ନଟ କରାଗଲା, ସେଇଦିନ ସୀମାର ମା' ଝିଅର ହାତ ଧରି ଜନ୍ମମାଟି ପ୍ରିୟ ପାବ୍‌ନା ଛାଡ଼ି ଚାଲିଆସିଥିଲେ । ସାଙ୍ଗରେ ସେହିପରି କେତେଜଣ ସର୍ବହରା । ସୀମାନ୍ତରକ୍ଷୀମାନଙ୍କ ସହୃଦୟତା ନେଇ ପାକିସ୍ତାନୀ ନରପିଶାଚଙ୍କ ଲୋଲୁପଦୃଷ୍ଟିରୁ ଲୁଚି ଲୁଚି ଭାରତରେ ପହଞ୍ଚିବାର ସେ ଯେଉଁ ଦୀର୍ଘ ରାସ୍ତା, ସୀମା ତାହା ମନେ ପକାଇବାକୁ ଚାହେଁନା । ତା'ପରେ କିନ୍ତୁ ସବୁ କେମିତି ଖଞ୍ଜି ଭଲ ହୋଇଗଲା । ଆସାମର ଛୋଟ ଗୋଟାଏ ଗାଁର ପ୍ରାଇମେରୀ ସ୍କୁଲରେ ଶିକ୍ଷୟିତ୍ରୀ ହୋଇଯାଇଥିଲେ ତା'ର ମା' ସ୍ୱଳ୍ପ ବେତନରେ । ସେଇ ଗାଁରେ କେମିତି ସେ ତାଙ୍କର ଆଡ଼ଭୋକେଟ୍ ସମରେନ୍ଦ୍ର ଚକ୍ରବର୍ତ୍ତୀଙ୍କ ସାଙ୍ଗରେ ଦେଖାହେଲା ଏବଂ ମା' ତାଙ୍କୁ ବିବାହ କରିବାକୁ ସ୍ଥିର କଲେ, ସେସବୁ କଥା ଭଲ ଭାବରେ ଜାଣେ ନାହିଁ ମାଧୁରୀମା । କିନ୍ତୁ ଗୌହାଟୀ ଆସିବା ପରଠାରୁ ସେ ଏତିକି ଜାଣିଥିଲା ଯେ ଦ୍ୱିତୀୟଥର ପାଇଁ ବାବାଙ୍କୁ ଫେରିପାଇଛି । ଯିଏ ସୀମାର ଅଳି-ଅର୍ଦ୍ଦଳ ହସି ହସି ସହିଛନ୍ତି, ସେ ଜନ୍ମଦାତାଠାରୁ କେଉଁ ରୂପରେ ଭିନ୍ନ ? ଯିଏ ସୀମାକୁ ଅନାବିଳ ସ୍ନେହ, ଆଦର ଅକାତରେ ଦେଇଛନ୍ତି, ତାଙ୍କୁ ସେ କେମିତି ବା ଅପମାନିତ କରିଥାଆନ୍ତା ? ଆଉ ମା' କ'ଣ ଭାଙ୍ଗି ପଡ଼ିନଥାଆନ୍ତେ ଏ ଆଘାତରେ ?

ଛି ଛି—ଏତେ କୁସଂସ୍କାରପୂର୍ଣ୍ଣ ଗୌତମର ମନ ? ସତରେ କ'ଣ ବିଂଶ ଶତାବ୍ଦୀର ଗୋଟାଏ ଆଧୁନିକ ଯୁବକ ଏଇମିତି ଏକ ସାମାନ୍ୟ ଘଟଣା ନେଇ ବାପା, ମା' ଏବଂ ସମାଜ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିପାରିନଥାଆନ୍ତା ? ଏଥିପାଇଁ ମାଧୁରୀମାକୁ ବଳିଦେବାର ବା କ'ଣ ଥିଲା ? ବାଁ ହାତ ପାପୁଲିରେ ମୁହଁଟା ଥରେ ପୋଛିନେଲା ସୀମା । ତା'ପର କେତେଟା ମାସ ଖୁବ୍ କଷ୍ଟ ସେ ପାଇଥିଲା । ତଥାପି ମନ ଭିତରେ କିଏ ଯେମିତି

ନିଜକୁ ସାନ୍ତ୍ୱନା ଦେଉଥିଲ, ଗୌତମ ପରି ଗୋଟାଏ ଦୁର୍ବଳ ଚରିତ୍ରର ଯୁବକକୁ ବିବାହ କରି ସେ କେବେହେଲେ ସୁଖୀ ହୋଇପାରିନଥାଆନ୍ତା । ଏକଥା ଖୁବ୍ ଭଲଭାବରେ ବୁଝିଥିଲ ବୋଲି ଅଠର ବର୍ଷ ବୟସରେ ଏ ଆଘାତ ତାକୁ କକ୍ଷଚ୍ୟୁତ କରି ପାରିନଥିଲ । ସେଇଥିପାଇଁ ବୋଧହୁଏ ବଞ୍ଚିବା ପାଇଁ ଜୀବନରେ ଆବଶ୍ୟକୀୟ ଉତ୍ସାହର ମଧ୍ୟ ଅଭାବ ରହିବାକୁ ଦେଇନଥିଲ ମାଧୁରିମା । ସେଇ ଛଅମାସର ରକ୍ତ ମଧୁର ସ୍ମୃତି ସମୂହ ଥିଲ ଏକ ବିଷାଦ ପରିଚ୍ଛେଦ, ଯାହାର ଇତି ହୋଇଯାଇଛି ସବୁଦିନ ପାଇଁ ।

× × × ×

ବାହାରେ ବର୍ଷା । ଆକାଶ ପୃଥିବୀ ଏକାକାର କରି ବର୍ଷା । ବହୁତ ସମୟ ଧରି ବାଜୁଥିବା ଟେଲିଫୋନ୍ ଉଠାଇଲ ସୀମା । ଟ୍ରଙ୍କ ଲାଇନ୍‌ରେ କଲିକତାରୁ ଭଦ୍ରଲୋକଙ୍କ ସ୍ୱର ଅସ୍ପଷ୍ଟ ହେଲେ ବି ଚେଷ୍ଟା କରି ଶୁଣିହେଉଛି ।

ଏଲକାଲି କର୍ପୋରେସନ୍‌ର ଚେୟାରମ୍ୟାନଙ୍କ ସେକ୍ରେଟାରୀ ଜଣାଇଲ, "ମ୍ୟାଡାମ, ଟିକେ ଧରନ୍ତୁ—ମିଷ୍ଟର ରାଠୋର କଥା କହିବେ ।"

ଟିକଏ ପରେ ରାଠୋର ସାହେବଙ୍କ ଭାରି ଆୱାଜ ଭାସିଆସିଲ, "ଗୁଡ୍ ଇଭିନିଂ ମିସ୍ ଚକ୍ରବର୍ତ୍ତୀ ! ଆପଣ ଯେଉଁସବୁ କାଗଜପତ୍ର ଚାହିଁଥିଲେ, ସେ ସବୁ ଆଜି ସକାଳ ଫ୍ଲାଇଟ୍‌ରେ ମୁଁ ଜଣେ ଅଫିସରଙ୍କ ହାତରେ ଆପଣଙ୍କ ପାଖକୁ ପଠେଇଛି—ପାଇଛନ୍ତି ତ ?"

"ନା—ଏ ପର୍ଯ୍ୟନ୍ତ ତ କେହି ଆସିନାହାନ୍ତି । ଖରାପ ପାଗ ହେତୁ ଫ୍ଲାଇଟ୍ ହୁଏତ ଡେରି ହୋଇଯାଇଛି ।"

"ବୋଧହୁଏ···ଆପଣ ପଅରଦିନ ଆସୁଛନ୍ତି ତ ? କୋର୍ଟରେ ଏଇଟା ସେଦିନର ପ୍ରଥମ କେସ୍ କିନ୍ତୁ ।"

"ମୁଁ ପ୍ରଥମ ଫ୍ଲାଇଟ୍‌ରେ ଯାଇ ପହଞ୍ଚିବି—ଆପଣ ନିଶ୍ଚିନ୍ତ ରୁହନ୍ତୁ ରାଠୋରସାହେବ ।"

"ମୁଁ କାଲି ସକାଳେ ଆପଣଙ୍କୁ ଫୋନ୍ କରିବି । ଆପଣ ମୋର ଉଦ୍‌ବେଗ ନିଶ୍ଚୟ ବୁଝି ପାରୁଥିବେ, ମିସ୍ ଚକ୍ରବର୍ତ୍ତୀ ।"

ହସିଲ ମାଧୁରିମା । ଶୁଭରାତ୍ରି ଜଣେଇ ଫୋନ୍‌ଟା ରଖିବାମାତ୍ରେ ହିଁ କଲିଂବେଲ ବାଜିଲ ।

ବାରଣ୍ଡା ପଟ କବାଟର ପର୍ଦ୍ଦାକୁ ସାମାନ୍ୟ ଘୁଞ୍ଚାଇ ମୁହଁ ଦେଖାଇଲ ନେପାଳୀ ଦରୱାନ ସେର୍ ସିଂହ, "ଗ୍ରେଟୀ ମେମ୍‌ସାବ୍, ଆପଙ୍କୁ କିଏ ଦେଖା କରିବା ପାଇଁ ଚାହୁଁଚନ୍ତି ।"

"ତାଙ୍କୁ ମୋ ଚେମ୍ବର୍‌ରେ ବସିବାକୁ କହ, ମୁଁ ଆସୁଛି ।" କିଏ ଆସିଛି ଏ ବର୍ଷାରେ ? ମିଷ୍ଟର ରାଠୋରଙ୍କ ଅଫିସ୍‌ର ଲୋକ ନୁହଁ ତ ? ପତଳା ପର୍ଦ୍ଦାର ଆବରଣ ଦେଇ ବାହାରକୁ ଚାହିଁଲ ମାଧୁରିମା । ନା—ଜାଣିହେଉନାହିଁ । ଭଦ୍ରଲୋକ ତା' ଆଡ଼କୁ ପଛକରି ରୁମାଲରେ ମୁହଁ ହାତରୁ ବର୍ଷା ପାଣି ପୋଛୁବାର ବ୍ୟର୍ଥ ପ୍ରଚେଷ୍ଟା କରୁଛନ୍ତି ।

ଧୀର ପଦକ୍ଷେପରେ ଚେମ୍ବରରେ ପାଦ ଦେଉ ଦେଉ କ୍ଷଣେ ରହିଗଲ ମାଧୁରିମା ।

ଗୌତମ ??? ଏବେ ମଧ୍ୟ ବର୍ଷାରେ ଘୂରିବୁଲିବାର ଅଭ୍ୟାସ ଯାଇନି ଗୌତମର ! କିଛି ନ କହି ବଡ଼ ଓଭାଲ୍ ସେପ୍ ଟେବୁଲର ଗୋଟାଏ ପାଖରେ ପଡ଼ିଥିବା ଗଭିଲ୍ଡ଼ିଂ ଚେୟାରରେ ବସିପଡ଼ିଲି ସେ । ଟେବୁଲ ଆରପାଖରେ ପଡ଼ିଥିଲି କେତୋଟି ବେତବୁଣା କାଠ ଚୌକି । ଗୋଟାଏ ଚୌକିକୁ ପ୍ରାୟ କବାଟ ପାଖକୁ ଟାଣିନେଇ ବସିଥିଲି ଗୌତମ । ସୀମାକୁ ଦେଖି ଉଠିପଡ଼ିଲି ସେ । ଆଜି ମଧ୍ୟ ସେହି 'କହିବ ନ କହିବ'ର ଦ୍ୱନ୍ଦ୍ୱ । ମନକୁ ମନ ହସିଲି ମାଧୁସୀମା ।

ଶେଷରେ କେମିତି ଗୋଟାଏ କୁଣ୍ଠିତଭାବରେ କହିପକେଇଲି, "ତୁମ ଚେମ୍ବର ଓଦା କରିଦେଲି ।"

"ନେଭର ମାଇଣ୍ଡ...ବସ । ଆଉ ହଠାତ୍ କେମିତି ?" ଆଶ୍ଚର୍ଯ୍ୟ ! ଏ କ'ଣ ତା' ନିଜ ସ୍ୱର ? ଏତେ ବେଶୀ କ୍ଲାନ୍ତକାଳ ? ନିଜ ଉପରେ ଅବିଶ୍ୱାସ ହେଉଥିଲି ମାଧୁସ୍ମିତାର ।

ଢୋକ ଗିଳିଲି ଗୌତମ । କଥା କହିବା ପାଇଁ ସେ ମନରେ ସାହସ ସଞ୍ଚୟ କରୁଥିଲି ବୋଧହୁଏ, "ମୁଁ ଆଲକାଲ୍ କର୍ପୋରେସନ୍‌ରୁ ଆସିଛି । ମିଷ୍ଟର ରାଠୋର ଏଇ ଫାଇଲଟା ତୁମକୁ ଦେଇଦେବାକୁ କହିଥିଲେ । ଫ୍ଲାଇଟ୍ ଠିକ୍ ସମୟରେ ଆସି ପାରିଲି ନାହିଁ ଏ ବର୍ଷାଯୋଗୁଁ ।"

"ହଁ—ମିଷ୍ଟର ରାଠୋର ଏଇ ମାତ୍ର ଫୋନ୍ କରିଥିଲେ । କହିଦେବ ମୁଁ ପ'ର ଦିନ ଠିକ୍ ପହଞ୍ଚିବ । ଅବଶ୍ୟ ସେ କାଲି ଫୋନ୍ କରିବେ କହିଛନ୍ତି । ...ଟି' କଫି କିଛି ପିଇବ ?"

"ନା' ଥାଉ—ଏଆର ପୋର୍ଟରୁ ଟି' ଖାଇ ଆସିଛି ।" ଚୌକି ଛାଡ଼ି ଉଠି ଠିଆହେଲି ଗୌତମ । ପୁଣି କ'ଣ ଭାବି ବସିପଡ଼ିଲି ସେ । ତଳକୁ ମୁହଁ ପୋତି କହିଲି, "ତୁମେ କେତେ ବଦଳିଗଲ ସୀମା ? ତୁମେ ଏଇଠି ଏତେ ପାଖରେ ଅଛ ମୋର, କିନ୍ତୁ ମନେହେଉଛି ଆମ ଭିତରେ କାହିଁ କେତେ ଦୂରତ୍ୱ ! ଏମିତି କାହିଁକି ହେଲା ?" ଖୁବ୍ କରୁଣ ଶୁଭୁଥିଲି ଗୌତମର ସ୍ୱର ।

"ସେ କଥା ତୁମ ଛଡ଼ା ଆଉ କିଏ କହିପାରିବ ଗୌତମ ?" ଥଣ୍ଡାଗଳାରେ କହିଲି ମାଧୁସୀମା, "ତେବେ...ଯାହା ହେବାର ଥିଲା ତା' ହୋଇଯାଇଛି । ଦଶବର୍ଷ ତଳର ଘଟଣା ନେଇ ତୁମ ମନରେ ଏତେ ଅସ୍ଥିରତା କାହିଁକି ?"

"ତୁମେ ଅଭିମାନ କରି କଥା କହୁଛ ସୀମା..."

ଗୌତମର କଥା ଶେଷ ହେବାକୁ ଦେଲି ନାହିଁ ମାଧୁସ୍ମିମା, "ଉହୁଁ, ଅଭିମାନ ନୁହଁ, ନିଚ୍ଛକ ବାସ୍ତବତା"—ହସିଲି ସେ, "ମୁଁ ତ ଆଉ ଅଠର ବର୍ଷର କଲେଜ ଝିଅ ନୁହଁ ଯେ ଅଭିମାନ କରିବି । ସେ ବୟସ ବା କାହିଁ ମୋର ?"

କେଇ ମିନିଟର ନୀରବତା ଭଙ୍ଗକରି ଗୌତମ କହିଲି, "ମୋ' ଜୀବନଧାରାର ସହଯାତ୍ରିଣୀ ହେବା ପାଇଁ ତୁମକୁ ମୁଁ ଅନୁରୋଧ କରିପାରିବି ନାହିଁ ସୀମା । ଜାଣେ, ତୁମ ପାଇଁ ମୋ

ଅଧ୍ୟାୟର ଶେଷ ହୋଇଯାଇଛି । କିନ୍ତୁ ମତେ କୁହ ସ୍ୱୀମା, ତୁମେ କ'ଣ ଆଉ ବିବାହ କରିବ ନାହିଁ ?"

ଆଶ୍ଚର୍ଯ୍ୟ ହେଲ ମାଧୁସ୍ମୀମା, "ଆରେ ଏ କଥା ତୁମକୁ କିଏ କହିଲା ? ବିବାହ ନକରିବା ଭଳି ମୋର ହୋଇଛି କ'ଣ ? ବୟସ ଅଧିକ ହୋଇଛି ସିନା, ଗଡ଼ି ତ ଯାଇନି ! ତେବେ..." ଚୁପ୍ ରହି ପୁଣି କହିଲା ସେ, "ନିଜ ଇଚ୍ଛାରେ ନୁହେଁ ।" ସିଧା ହୋଇ ବସି ଗୌତମର ମୁହଁକୁ ଚାହିଁଲା ସେ, "ବାବା..." ଏଥରକ ଗୋଟାଏ ଇଙ୍ଗିତପୂର୍ଣ୍ଣ ହସ ହସିଲା ମାଧୁସ୍ମୀମା, "ମାନେ, ମାଇଁ ଷ୍ଟେପ୍ ଫାଦର୍...ସେ ଯେଉଁଠି ବିବାହ ସ୍ଥିର କରିବେ ସେଇଠି ହିଁ ବିବାହ କରିବି । ...ଶୁଣିଛୁ, କେଉଁ ବାରିଷ୍ଟରଙ୍କ ସାଙ୍ଗରେ କଥାଟା ବେଶ୍ ବାଟ ଆଗେଇ-ଗଲଣି ।"

"ଓଃ"—ଦୀର୍ଘଶ୍ୱାସ ଛାଡ଼ି ଉଠି ଠିଆହେଲା ଗୌତମ, "ମୁଁ ଏଥରକ ଆସୁଛି, ବହୁତ ଡେରି ହୋଇଗଲଣି ।"

ସ୍ୱୀମାର ଉତ୍ତରକୁ ଅପେକ୍ଷା ନ କରି ଗୌତମ ଚାଲିଗଲା ।

ତା' ଯିବା ରାସ୍ତାକୁ ଚାହିଁ ବସିରହିଥିଲା ମାଧୁସ୍ମୀମା । ଏ ସାକ୍ଷାତ୍ ମୂଲ୍ୟହୀନ ନୁହେଁ । ନଚେତ୍ ଶେଷ ନିଃଶ୍ୱାସ ଥିବା ପର୍ଯ୍ୟନ୍ତ କେମିତି ଏକ ଅସ୍ୱସ୍ତି ତା' କାୟାକୁ ଘେରି ରହିଥାଆନ୍ତା ଏବଂ କେବେହେଲେ ସମ୍ପୂର୍ଣ୍ଣ ଭାବରେ ସୁଖୀ ହୋଇ ପାରି ନ ଥାଆନ୍ତା ସେ । ଗୌତମର ଏତେ ଅନୁଶୋଚନା, ପାଖକୁ ନେଇଯିବାର ଅନେକ ଆଗ୍ରହ—ଏ ସବୁ ପରେ ମଧ୍ୟ ସ୍ୱୀମା ହୃଦୟରେ ଭଲପାଇବାର ଉତ୍ସ ଝରି ଯାଇନଥିଲା । ବରଂ ବାହାଘର ସମ୍ପର୍କରେ ଏତେବଡ଼ ମିଛଟାଏ ବଡ଼ ନିଶ୍ଚିନ୍ତ ଭାବରେ କହିଦେଲା ସେ । ଏତେ ଦିନ ପରେ ମାଧୁସ୍ମୀମା କଥାଟା ଜାଣିପାରିଲା । ଯେଉଁ କ୍ଷତ କ୍ଷରଣ ହୋଇ ସେ ରକ୍ତାକ୍ତ ହେବାର ଆଶଙ୍କା କରୁଥିଲା, ସେ କ୍ଷତ ଆଜି ସମ୍ପୂର୍ଣ୍ଣ ରୂପେ ନିଶ୍ଚିହ୍ନ । ସ୍ୱସ୍ତିର ନିଃଶ୍ୱାସ ନେଇ ନିଜ କୋଠରି ଆଡ଼କୁ ଆଗେଇ ଯାଉ ଯାଉ ଭାବୁଥିଲା ସେ, ଆଜି ମା'କୁ କହିଦେବ, ବିବାହ କରିବାକୁ ତା'ର ଆଉ କୌଣସି ଆପତ୍ତି ନାହିଁ ।

□□□

# ପ୍ରାପ୍ତି

ରେମିଂଟନ୍ ଟାଇପ୍ ରାଇଟର୍‌ଟିରେ ଖଟ୍ ଖଟ୍ କରି ଚିଠିଟା ଟାଇପ୍ କରୁ କରୁ ଆନନ୍ଦନ୍‌ର ମନ ହଠାତ୍ ଖରାପ ହୋଇଗଲା । କୁଣଳୀ ହାତ ଦୁଇଟି ତା'ର କି' ବୋର୍ଡ଼ ଉପରେ ସ୍ଥିର । ନିଜ ଉପରେ ତା'ର କେତେ ଆସ୍ଥା, ଟାଇପିଙ୍ଗ୍ ସ୍ପିଡ଼୍ ନେଇ ତା'ର କେତେ ଗର୍ବ, ଅଥଚ ସାମାନ୍ୟ ଛଅ ସାତ ଧାଡ଼ିର ଚିଠି ଟାଇପ୍ କରିବା ପାଇଁ ତାକୁ ଅଧଘଣ୍ଟାଏ ଲାଗିଗଲାଣି ।

କାମ ବନ୍ଦ କରି କାଠ ପାର୍ଟିସନ୍ ଆଡ଼କୁ ବୋକାଙ୍କ ଭଳି ଚାହିଁଲା ଆନନ୍ଦନ୍ । ତ୍ରିପାଠୀ ସାହେବ ଓ ସିଂହସାହେବଙ୍କର ଆଲୋଚନା ଚାଲିଛି କେଉଁ ଗୋଟାଏ କଷ୍ଟମର୍ ସମ୍ପର୍କରେ । ଆନନ୍ଦନ୍ ଆଲୋଚନାର ବିଷୟ ଜାଣେ । ସିଙ୍ଗାପୁରର କମ୍ପାନୀଟିଏ ତାଙ୍କର ପ୍ରଡ଼କ୍ଟ ଭାରତକୁ ଏକ୍ସପୋର୍ଟ କରିବାକୁ ଚାହାନ୍ତି । ଟି. ଏଣ୍ଡ ଏସ୍. ଏକ୍ସପୋର୍ଟ କମ୍ପାନୀ ପାଇଁ ଏଇଟା ଖୁବ୍ ଗୋଟାଏ ପ୍ରେଷ୍ଟିଜିଅସ୍ ଅର୍ଡ଼ର । ଲାଭର ପରିମାଣ ମଧ୍ୟ ବେଶ୍ ଭଲ । ସେଇଥିପାଇଁ ଖାସ୍ ସିଂହସାହେବ ଆସିଛନ୍ତି ଚଣ୍ଡୀଗଡ଼ରୁ । ଟି. ଏଣ୍ଡ ଏସ୍. କମ୍ପାନୀର ପାର୍ଟନର ହେଲେ ମଧ୍ୟ ସିଂହସାହେବ କମ୍ପାନୀର ନିତିଦିନିଆ କାରବାରଠାରୁ ଦୂରେଇ ରହନ୍ତି । ଚଣ୍ଡୀଗଡ଼ରେ ତାଙ୍କର ଗୋଟାଏ ନାମଜାଦା ହୋଟେଲ ଅଛି । ହୋଟେଲ ନେଇ ସେ ସବୁବେଳେ ବ୍ୟସ୍ତ । ତ୍ରିପାଠୀ ସାହେବ ହିଁ ଟି. ଏଣ୍ଡ ଏସ୍‌ର ସର୍ବେସର୍ବା କହିବାକୁ ହେବ । କିନ୍ତୁ ବଡ଼ ବଡ଼ ଅର୍ଡ଼ର ଡିସ୍କସନ୍ କରିବା ପାଇଁ ବା କମ୍ପାନୀ ସମ୍ପର୍କିତ ଜରୁରୀ ନିଷ୍ପତ୍ତି ନେବା ପାଇଁ ସିଂହ ସାହେବଙ୍କୁ ମାସରେ ଦିନେ ଦୁଇଦିନ ପାଇଁ ଦିଲ୍ଲୀ ଆସିବାକୁ ହୁଏ ।

ଦୀର୍ଘ ସାତବର୍ଷର ଚାକିରି ଭିତରେ ଆନନ୍ଦନ୍ କମ୍ପାନୀର ଭଲ ମନ୍ଦରେ ଏତେ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହୋଇଯାଇଛି ଯେ, ଏମିତି ଖୁବ୍ କମ୍ ଘଟଣା ଅଫିସ୍‌ରେ ଘଟେ ଯାହା ତାର ଅଜ୍ଞାତ । ତାକୁ ଏବେ ଛବିଶ ପୂରିଛି ଗତ ଜାନୁୟାରୀରେ । ଚାକିରିରେ ଯୋଗ ଦେବାବେଳେ ତା'ର ବୟସ ଥିଲା ଉଣେଇଶ । କମ୍ପାନୀଟି ମଧ୍ୟ ନୂଆ ନୂଆ ଆରମ୍ଭ ହୋଇଥାଏ । ଟି ଏଣ୍ଡ ଏସ୍ ଅଫିସ୍ ସେତେବେଳେ ଥିଲା ପୁରୁଣା ଦିଲ୍ଲୀରେ କେଉଁ ଏକ ଅନାମଧେୟ ଗଳିରେ । ଖବରକାଗଜରେ ଛୋଟ ଛୋଟ ଅକ୍ଷରରେ ବାହାରିଥିବା ବିଜ୍ଞାପନ ଦେଖି ଆନନ୍ଦନ୍ ଦରଖାସ୍ତଟାଏ ପକେଇଦେଇଥିଲା । କିନ୍ତୁ ପ୍ରଥମ ଚେଷ୍ଟାରେ ଚାକିରିଟା ଯେ ଏତେ ସହଜରେ ମିଳିଯିବ, ଏ କଥା ଅନ୍ତତଃ ସେ ଭାବିପାରିନଥିଲା । ସେଇଥିପାଇଁ

ବୋଧହୁଏ ନୈନ ଭଣ ଭଣ ଗଳି ଭିତରେ ଅନ୍ଧାରୁଆ ଫ୍ଲାଟର ଅଫିସଟି ତାକୁ ଆଦୌ ଖରାପ ଲାଗି ନ ଥିଲା । ଦେହରେ କେତେ ଫୁର୍ତ୍ତି, ମନରେ କେତେ ଉତ୍ସାହ ! ଆଗ୍ରହରେ ଯେତେବେଳେ କି’ ବୋର୍ଡ଼ ଉପରେ ଆଙ୍ଗୁଠି ପିଟି ଚାଲିଥାଏ, ସେତେବେଳେ ସେ ବର୍ଷା ପାଣିରେ ଭିଜିଯାଇଥିବା କାନ୍ଥ ବା ରଙ୍ଗଛଡ଼ା କାଠ କବାଟର ଫାଟ ଦେଖିପାରେ ନାହିଁ । ମ୍ୟାନେଜର ତ୍ରିପାଠୀ ସାହେବ ବା ଆସିଷ୍ଟାଣ୍ଟ ମ୍ୟାନେଜର୍ ମିଷ୍ଟର ସାହାନୀଙ୍କଠାରୁ ଡିକ୍ଟେସନ୍ ନେବାବେଳେ ତା’ର ଆଦୌ ମନେହୁଏ ନାହିଁ ଯେ ସେ ଥକିଯାଇଛି ।

ନୂଆ କମ୍ପାନୀ, ତା’ର ପୁଣି କେତେ ପ୍ରବ୍ଲେମ୍ । ଟଳି ଟଳି କମ୍ପାନୀର ଉଠି ଠିଆ ହେବା ପାଇଁ ଯେଉଁ ପ୍ରଚେଷ୍ଟା, ଆନନ୍ଦନ୍ କେବେ ଭୁଲି ପାରିବ ନାହିଁ । ଏମିତି ବେଳେ ବେଳେ ହୁଏ, ମାସରେ ଗୋଟାଏ ବି ଅର୍ଡର ମିଳେ ନାହିଁ । ପୁଣି ବ୍ୟାଙ୍କ ଓଭର୍ ଡ୍ରାଫ୍ଟ ଦେବାକୁ ମନାକରିଦିଏ—ଫି ଏଣ୍ଡ ଏସ୍‌ର ଷ୍ଟାଣ୍ଡିଂ ନାହିଁ, ଯଦି ହଠାତ୍ ବୁଡ଼ିଯାଏ…? ବ୍ୟାଙ୍କ ରିସ୍କ ନିଏ ନାହିଁ । ଅଥଚ ଏ ସବୁରେ ବିଚଳିତ ହୁଅନ୍ତି ନାହିଁ ତ୍ରିପାଠୀ ସାହେବ । ତାଙ୍କ ବ୍ୟକ୍ତିଗତ ଆକାଉଣ୍ଟରୁ ଟଙ୍କା ଡ୍ର କରି କମ୍ପାନୀ ଷ୍ଟାଫ୍‌ଙ୍କ ଭିତରେ ବାଣ୍ଟନ୍ତି ।

ଆନନ୍ଦନ୍‌ର ମନେଅଛି, କେତେଥର ଏମିତି ବି ହୋଇଛି, ସାମାନ୍ୟ ଆପୋଲୋଜେଟିକ୍ ଗଳାରେ ସାହେବ କହନ୍ତି, “ନନ୍ଦନ୍ ପଚାଶଟା ଟଙ୍କା ରଖ । ଏ ମାସରେ ଏକାଠି ଦରମା ଦେଇପାରୁନି । ପୁଣି ଟଙ୍କା ଦରକାର ହେଲେ ମାଗିନେବ ।”

ସେ ବି ଦିନ ଥିଲା—ଭାବିଲେ ଆନନ୍ଦନ୍‌କୁ ସ୍ୱପ୍ନପରି ଲାଗେ । ସାତବର୍ଷ ଭିତରେ କମ୍ପାନୀର କେତେ ପରିବର୍ତ୍ତନ ହୋଇଗଲା । ଚାନ୍ଦନୀଚୌକର ଅନ୍ଧାରୁଆ ଫ୍ଲାଟ ଛାଡ଼ି କମ୍ପାନୀର ଅଫିସ୍ ଆଜି କରୋଲବାଗର ଗୋଟାଏ ସୁନ୍ଦର ଘରେ । ଆନନ୍ଦନ୍ ପାଇଁ ପାର୍ଟିସନ୍ ଦିଆଯାଇ ଅଲଗା କ୍ୟୁବିକଲ୍ । ମ୍ୟାନେଜର, ଆସିଷ୍ଟାଣ୍ଟ ମ୍ୟାନେଜରଙ୍କର ସ୍ୱତନ୍ତ୍ର କୋଠରି । କମ୍ପାନୀର ଆସେଟ୍ ବଢ଼ିଛି, ଷ୍ଟାଫ ମଧ୍ୟ ବଢ଼ିଛନ୍ତି । କିନ୍ତୁ ପୁରୁଣା ଷ୍ଟାଫ୍‌ମାନଙ୍କ ଭିତରୁ ପ୍ରାୟ କେହି କମ୍ପାନୀ ଛାଡ଼ି ଯାଇ ନାହାନ୍ତି । ଫି ଏଣ୍ଡ ଏସ୍‌ରେ ଚାକିରି କରିବାରେ କି ଆନନ୍ଦ କେଜାଣି—କେହି ଅନ୍ୟ ଚାକିରି ଖୋଜିବାରେ ଆଗ୍ରହୀ ହୁଅନ୍ତି ନାହିଁ । ବ୍ୟାଙ୍କ୍‌ର ମଧ୍ୟ ଏବେ ସଂପୂର୍ଣ୍ଣ ଆସ୍ଥା କମ୍ପାନୀ ଉପରେ । ଦରକାର ପଡ଼ିଲେ ଲମ୍ବା ଓଭର୍ ଡ୍ରାଫ୍‌ଟ ବ୍ୟାଙ୍କ୍‌ରୁ ମିଳିଯାଏ । ଦରମା ପାଇବାରେ ଆଉ ଡେରି ହୁଏ ନାହିଁ । ଅଳ୍ପ ଚେଷ୍ଟାରେ ବେଶୀ ଅର୍ଡ଼ର ମିଳିଯାଏ ।

ତା’ର ସାତବର୍ଷର ଚାକିରି ଜୀବନରେ ଯେ କେବେ ଉତ୍ଥାନ ପତନ ହୋଇନାହିଁ, ସେ କଥା ଆନନ୍ଦନ୍ ଆଦୌ କହିପାରିବ ନାହିଁ । ବେଳେ ବେଳେ ତା’ ଅଜାଣତରେ ଟାଇପିଙ୍ଗ୍‌ରେ ସିରିୟସ୍ ମିଷ୍ଟେକ ହୋଇଯାଏ । ବିରକ୍ତ ହୁଅନ୍ତି ମିଷ୍ଟର ସାହାନୀ । ଆଉ ଥରେ ତ ଚିଠିରେ କେବଳ ତା’ର ଭୁଲ୍ ଯୋଗୁଁ କମ୍ପାନୀ ଗୋଟିଏ ଅର୍ଡର ପାଇପାରିଲା ନାହିଁ । ସେଦିନ ଆନନ୍ଦନ୍‌ର ଭୀଷଣ ମନଦୁଃଖ ହୋଇଥିଲା । ତା’ ପାଇଁ କମ୍ପାନୀର ଏମିତି କ୍ଷତିଟିଏ ହେଉ, ସେ କେବେହେଲେ ଚାହିଁ ନଥିଲା । ସେଇଥିପାଇଁ ସେଇଦିନ ହିଁ ଇସ୍ତଫା ଦେଇଥିଲା ।

ଆନନ୍ଦନ୍‌ର ସଂସ୍କାର ମନେଅଛୁ, ତ୍ରିପାଠୀ ସାହେବଙ୍କର ସେ କି କୋପମୂର୍ତ୍ତି !

"ଏ କି ପିଲାଳିଆମି ? କମ୍ ଟୁ ୟୋର୍ ସେନ୍‌ସେସ୍ । ଭୁଲ୍ କାହାର ହୁଏନାହିଁ—ତୁମେ ତ ମଣିଷ । ମୋର ଯେମିତି କେତେ ଭୁଲ ହୋଇଯାଏ । ଏହାର ସଲ୍ୟୁସନ୍ କ'ଣ ସବୁ ଛାଡ଼ି ଚାଲିଯିବା ? ମୁଁ ଯଦି ପ୍ରଥମରୁ ଯେମିତି କରିଆସନ୍ତି, ତେବେ କମ୍ପାନୀରେ କେବେଠାରୁ ତାଲା ଲାଗିସାରନ୍ତାଣି ।"

ଇସ୍ତଫାପତ୍ର ଗ୍ରହଣ କରିବା ଦୂରେ ଥାଉ, ଚିଠିକୁ ଚିରି ଚିରି କରି ଡଷ୍ଟବିନ୍‌ରେ ପକେଇ ଦେଇଥିଲେ । ଖୁବ୍ ଗମ୍ଭୀର ହୋଇ ପୁଣି କହିଥିଲେ, "ଗୋ ବ୍ୟାକ୍ ଟୁ ୟୋର ଡେସ୍କ୍ । ଯାଅ, ନିଜ କାମ ଠିକ୍‌ରେ କର ।"

କିନ୍ତୁ ସମୟ ସମୟରେ ଭୁଲ୍‌ପାଇଁ ତ୍ରିପାଠୀ ସାହେବଙ୍କଠାରୁ ବେଶ୍ ଗାଳି ଖାଇବାକୁ ହୋଇଛି । ଥରେ ତ କାନପୁରକୁ ଟ୍ରେନ୍ ଟିକେଟ୍ କରିବା କଥା ଆନନ୍ଦନ୍ ଏକଦମ୍ ଭୁଲିଗଲା । ଅଫିସ୍‌ରେ କେତେ ହିପର୍ଯ୍ୟୟ ଘଟିଗଲା ସେଇ ଗୋଟିଏ କଥାରୁ । ଆନନ୍ଦନ୍ ଉପରେ ଭଲକରି ଦୁଇପଦ ଝାଡ଼ିଦେଇଥିଲେ ମ୍ୟାନେଜର । କିନ୍ତୁ ସେ ଏସବୁ କେବେ ମନକୁ ନେଇନି । ସେ ଜାଣେ, ଏସବୁ ରାଗ, ବିରକ୍ତିରେ ତା' ପାଇଁ ଘୃଣା ନାହିଁ, କେବଳ ଅଛି ବଡ଼ଭାଇର ସାନଭାଇ ପ୍ରତି ଅନାବିଳ ସ୍ନେହ । ସତ ତ, ଆନନ୍ଦନ୍‌କୁ ଦେଇଥିବା ଧମକର ଲେଶ ମାତ୍ର ଚିହ୍ନ ତ୍ରିପାଠୀ ସାହେବଙ୍କର ଲଞ୍ଚ ବ୍ରେକ୍ ସମୟରେ ନଥାଏ । ନିଜେ ଆଗ୍ରହରେ ଖୋଲି ଦେଖନ୍ତି ତା' ଲଞ୍ଚ ବକସ୍, "ଦେଖେଁ, ଆଜି ତୁମ ଭାଉଜ କ'ଣ ପଠେଇଛନ୍ତି ?" ସକାଳେ ମିଳିଥିବା ଗାଳି ମନରୁ ସ୍ୱତଃ ଲିଭିଯାଏ ।

ପ୍ରଥମେ ଯେଉଁଦିନ ଆନନ୍ଦନ୍‌ର ଲଞ୍ଚ ବକ୍‌ସରେ ଇଡ଼୍‌ଲି ଦେଖି ତ୍ରିପାଠୀ ସାହେବ ଟିକିଏ ଭାଙ୍ଗି ନେଇ ମୁହଁରେ ପୂରେଇବାକୁ ଯାଉଥିଲେ, ସେଦିନ ସେ ଭିତରେ ଭିତରେ ଚମକି ଯାଇଥିଲା :

"ସାର୍, ଆପଣ ମୋ ଲଞ୍ଚ୍ ଖାଇବେ ? ଆପଣ ବ୍ରାହ୍ମଣ···ପୁଣି ଆମ ହାତରନ୍ଧା ଖାଇବେ ?"

ତ୍ରିପାଠୀ ସାହେବ କିଛି ସମୟ ପାଇଁ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ତା'ପରେ ହୋ ହୋ ହୋଇ ହସିହସି ଇଡ଼୍‌ଲିକୁ ପାଟିରେ ପୂରେଇଦେଲେ ଏବଂ ଚୋବେଇ ଚୋବେଇ କହିଲେ, "ଆନନ୍ଦନ୍, ତୁମେ ସବୁ ପାଠପଢ଼ିଚ; ଏବେ ବି ଜାତି ପାତିରେ ବିଶ୍ୱାସ କର ! ହେଲା ଏବେ ତୁମେ ଅବ୍ରାହ୍ମଣ—ତୁମ ଜାତି କ'ଣ ଭାଉଜଙ୍କ ହାତ ଦେଇ ଇଡ଼୍‌ଲି ଭିତରେ ପଶିଯାଇଛି ? ତୁମର ଆଜି ଏ କଥାକୁ ମୁଁ ସବୁତକ ଇଡ଼୍‌ଲି ଖାଇବି, ତମକୁ ମୋ ଲଞ୍ଚ ଖାଇବାକୁ ହେବ ।"

ମିସେସ୍ ତ୍ରିପାଠୀଙ୍କର ପନିର୍ ପରଟା ଖାଇବା ବେଳେ ସେଦିନ ଆନନ୍ଦନ୍‌ର ହାତ ରହି ରହି ଯାଇଥିଲା । ଏତେ ଯେଉଁଠି ସ୍ନେହ ସୌହାର୍ଦ୍ଦ୍ୟ, ସେଠି ବିଶ୍ୱାସଘାତକତା କରିବ କେମିତି ଆନନ୍ଦନ୍ ? ଅଧା ଟାଇପ୍ କରିଥିବା ଚିଠିକୁ ବିକଳ ହୋଇ ଚାହିଁଲା ସେ । ମନେ ମନେ

ସଫେଇ ଦେବାପରି ସେ ଗୁଣିହେଲା—ଏହିରୁ କମଲାକୁ ଖୁସି କରେଇବା ପାଇଁ । ତା'ର ଏଥିରେ କୌଣସି ଆଗ୍ରହ ନାହିଁ ।

ବି. ଏସ୍. ଏସ୍. ଉତ୍ତୀର୍ଣ୍ଣ ଥିବା ଧର୍ମକି ଆନନ୍ଦନ୍ ବୁଝେଇ ପାରିବ ନାହିଁ । ତା'ର ନବବିବାହିତା ପତ୍ନୀ କମଳା । ସ୍ତ୍ରୀ ଉପରେ ଅଭିମାନ କରିବାକୁ ଇଚ୍ଛା ହୁଏ, କିନ୍ତୁ ସେ ପାରେନା । ବିଚ୍ଛିନ୍ନର ବା ଦୋଷ କ'ଣ—ସେ ତ ସ୍ୱାମୀର ଉନ୍ନତି ହିଁ କାମନା କରୁଛି । ଭଲ କମଲା ବୁଝନ୍ତା ବାହାଘରବେଳେ କମ୍ପାନୀର ଷ୍ଟାଫ୍ କେତେ କ'ଣ କରିଥିଲେ ସେମାନଙ୍କ ପାଇଁ !

ଯେଉଁଦିନ ସେ ମା'ଠାରୁ ଚିଠି ପାଇଲା ବାହାଘର ସ୍ଥିର ହୋଇଯାଇଛି, ସେଦିନ ସେ ଆସିଷ୍ଟାଣ୍ଟ୍ ମ୍ୟାନେଜର ମିଷ୍ଟର ସାହାନୀଙ୍କୁ ଛୁଟି ଦରଖାସ୍ତ ଦେଇଆସିଥିଲା । ସେ ଯେ କମ୍ପାନୀର ଏକ ଅପରିହାର୍ଯ୍ୟ ଅଙ୍ଗ,—ଏକଥା ଆନନ୍ଦନ୍ ବୁଝିଥିଲା । ସେଇଥିପାଇଁ ତ ଡରୁଥିଲା ମାସେ ଛୁଟିଟା ହୁଏତ କଟି କଟି ଦଶଦିନରେ ପହଞ୍ଚିବ ।

କିନ୍ତୁ କି ଆଶ୍ଚର୍ଯ୍ୟ !

ତା'ର ପୁରା ଛୁଟିଟା କେବଳ ଗ୍ରାଣ୍ଟ୍ ହୋଇଯାଇ ନଥିଲା, ତା' ସାଙ୍ଗରେ ଯୋଡ଼ା ହୋଇଥିଲା ଦୁଇଟି ଚେକ୍ । ଗୋଟାଏ ତା'ର ମାସକର ଦରମା—ଅନ୍ୟଟି ଗିଫ୍ଟ ଚେକ୍ ପାଞ୍ଚଶହ ଏକ ଟଙ୍କାର—କମ୍ପାନୀ ତରଫରୁ ଆନନ୍ଦନ୍ ଓ ତା'ର ଭାବୀ ପତ୍ନୀ କମଳ୍ଙ୍କୁ ଉପହାର । ଆନନ୍ଦନ୍ ମୋହମୁଗ୍ଧ ହୋଇ ଗିଫ୍ଟ ଚେକ୍‌କୁ ଦେଖୁଥିଲା । ନୀରବତା ଭଙ୍ଗ କଲେ ମିଷ୍ଟର ସାହାନୀ । ପେପର୍ ୱେଟ୍‌କୁ ଘୁରେଇ ଘୁରେଇ ପ୍ରଶ୍ନ କଲେ, "ତୁମକୁ ତ ଏବେ ଘର ଖୋଜିବାକୁ ହେବ ଆନନ୍ଦନ୍ ?"

ମୁହଁ ତଳକୁ ପୋତି ଆନନ୍ଦନ୍ କହିଲା, "ଆଜ୍ଞା ହଁ, ମାଉସୀ-ପୁଅ-ଭାଇ ଘରେ ବହୁତ ଦିନ ରହିଗଲଣି । ଏକା ଥିଲି, କଥା ଅଲଗା । ବାହାହୋଇ ତା' ପାଖରେ ରହିବାକୁ ଆଦୌ ଭଲ ଲାଗିବ ନାହିଁ ।"

କ'ଣ ଟିକିଏ ଭାବିହେଲେ ମିଷ୍ଟର ସାହାନୀ । "ଅବଶ୍ୟ ତୁମେ ଯଦି ରାଜି ହେବ, ତେବେ ଏଇଠି ପାଖରେ ଘରଟିଏ ରହିଛି । ମୋର ଚନ୍ଦ୍ରାପରିଚୟ, ତାଙ୍କର ଗ୍ୟାରେଜ୍‌ର ଉପର ଘର ଖାଲି ଅଛି । ବେଶ୍ ଭଲ ଘର । ଗୋଟାଏ ରୁମ୍, ବାଥ୍, କିଚେନ୍ । ମୁଁ କହିଲେ ଭଡ଼ା ମଧ୍ୟ ରିଜନେବଲ୍ କରିଦେବେ ।"

ଆନନ୍ଦନ୍‌ର ଗଳା ଲାଗିଆସିଲା । ସାମାନ୍ୟ ଗୋଟିଏ ଷ୍ଟେନୋ ପାଇଁ ଉପରସ୍ଥଙ୍କର ଏତେ କନ୍‌ସର୍ନ ! ଚେଷ୍ଟା କରି ସେ ଖାଲି କହିଲା, "ଖୁବ୍ ଭଲ ହେବ ସାର୍ !"

"ହଉ, ମୁଁ ଆଜି ଅନିଲ୍ ସାଙ୍ଗରେ କଥାବାର୍ତ୍ତା କରିବି । ହଁ ଶୁଣ", ହସିକରି ମିଷ୍ଟର ସାହାନୀ ପୁଣି କହିଲେ, "ପ୍ରଥମ ମାସର ଘରଭଡ଼ା ତୁମକୁ ଦେବାକୁ ହେବନି, ସେଇଟା ମୋ ତରଫରୁ ତୁମ ବିବାହ ଉପଲକ୍ଷେ ଉପହାର ।"

ଗୋଟାଏ ଶୁଭକାର୍ଯ୍ୟର ଆରମ୍ଭରେ ଯେ ଏତେ ଫୁଲ ଚନ୍ଦନ ପଡ଼ିଥିଲା, ଆନନ୍ଦନ୍ ତ

ଭାବିନେଇଥିଲା, ତା' ଜୀବନର ଭାଗ୍ୟରବି ଏଇ ମାତ୍ର ଉଦୟ ହେଲେ ଯେମିତି । କମଳାକୁ ପାଇବା ପରେ ସେ ଭାବନା ଆହୁରି ଦୃଢ଼ ହୋଇଯାଇଥିଲା । ଏତେ ଦିନର ଅପରିଚିତା ଝିଅଟିଏ କେମିତି ତା'ର ସବୁଠାରୁ ନିଜର ହୋଇଗଲା, ବୁଝେନା ଆନନ୍ଦନ୍ । ସ୍ତ୍ରୀଟି ସାକ୍ଷାତ କମଳା, ତା' ଘର ଲକ୍ଷ୍ମୀ । ପତ୍ନୀ ମୁହଁରେ ସନ୍ତୋଷ ଟିକିଏ ଦେଖିଲେ ତା'ର ଛାତି ଯେମିତି ପୂରିଯାଉଥିଲା । ତାରି ପାଇଁ ତ ସବୁ ।

ଛୁଟି ସରିବାର ସାତଦିନ ଆଗରୁ କମଳାକୁ ନେଇ ଦିଲ୍ଲୀ ଚାଲିଆସିଥିଲା ଆନନ୍ଦନ୍ । ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନଙ୍କଠାରୁ ଦୂରରେ ରହି ପରସ୍ପର ପରସ୍ପରକୁ ଆଉ ଟିକିଏ ଭଲ ଭାବରେ ଚିହ୍ନିବେ । ଟ୍ରେନ୍‌ର ଝରକା ଦେଇ ଦୂରର ଗୁଆଗଛ ସବୁ ଦେଖି ଦେଖି ଆନନ୍ଦନ୍‌ର ହୃଦୟରେ ମହକ ଚମକିଗଲା । ଏଥରକ କମଳାର ସମସ୍ତ ଉପରେ ତା'ର ସବୁତକ ହକ୍ । ଗାଁରେ ସିନା ନୂଆ ବୋହୂ, ଦିଲ୍ଲୀରେ ତ ଆଉ ବାଧା ନାହିଁ । ବୁଲିବ, ଖୁବ୍ ବୁଲିବ—କମଳା ହାତରେ ହାତ ରଖି ସବୁଆଡ଼େ ବୁଲିବ ।

ସେୟା ମଧ୍ୟ କରିଥିଲା । ସ୍ତ୍ରୀକୁ ବୁଲାଇ ବୁଲାଇ ସବୁ ଜାଗା ଦେଖାଇଥିଲା—କୁତବମିନାର୍, ଜନ୍ତରମନ୍ତର, ଇଣ୍ଡିଆ ଗେଟ୍, ଲାଲ୍‌କିଲା, ଚିଡ଼ିଆଖାନା । ଦିନେ ସମସ୍ତ କରି ଟୁରିଷ୍ଟ ବସ୍‌ରେ ତାକୁ ନେଇଯାଇଥିଲା ତାଜମହଲ । ମାର୍ବଲ ପଥରର ପାହାଚ ଉପରେ ବସି ଆନନ୍ଦନ୍‌ର ମନେହୋଇଥିଲା ତା' ହୃଦୟରେ ବି ସାହାଜାହାନଟିଏ ଅଛି । ପାଖରେ ପତ୍ନୀ—ସେ କମଳା ନୁହଁ, ପ୍ରାଣାଧିକା ମମତାଜମହଲ ।

କମଳାକୁ ବୁଲାଇ ଆଉରି ମଧ୍ୟ ଦେଖେଇ ଥିଲା ଚାନ୍ଦନୀଚୌକ, ମାଟି ତଳେ ତିଆରି ହୋଇଥିବା ଏଆର୍ କଣ୍ଡିସନ୍‌ଡ୍ ମାର୍କେଟ—ପାଲିକା ବଜାର ଆଉ କନଟ୍‌ପ୍ଲେସ୍‌ର ସୁନ୍ଦର ସୁନ୍ଦର ଦୋକାନ ସବୁ । କନଟପ୍ଲେସରୁ ଫେରିବାବେଳେ ବଡ଼ ବଡ଼ କୋଠାଗୁଡ଼ିକୁ ଆଖିରେ ଆଖିଏ ଆଶ୍ଚର୍ଯ୍ୟ ନେଇ ଦେଖୁଥାଏ ତା ସ୍ତ୍ରୀ ।

"ବାପ୍‌ରେ !!" ଇଣ୍ଡିଆନ୍ ଅଏଲ୍ ବିଲଡିଙ୍ଗ ସାମ୍ନାରେ ଠିଆହୋଇ ଜୋର୍‌ରେ ନିଃଶ୍ୱାସ ନେଲା ସିଏ । ଏ ପର୍ଯ୍ୟନ୍ତ ଗାଁର ମାଟିଘର ସହିତ ଦାମିଲ୍ ହୋଇଥିବା ଅଠର ବର୍ଷର ଝିଅଟି ବିଶ୍ୱାସ କରିପାରୁନଥିଲା ଯେ ଏମିତି ଉଚ୍ଚାକୋଠା ତିଆରି କରିବା ସମ୍ଭବପର ।

ଆନନ୍ଦନ୍‌ର ହାତରେ ହାତ ରଖି ହଠାତ୍ କାହିଁକି ସାମାନ୍ୟ ଅନ୍ୟମନସ୍କ ହୋଇପଡ଼ିଲା ସେ । "ଜାଣ, ମୋ ମାମୁଁ ଏମିତି ଗୋଟାଏ ଉଚ୍ଚା ଦଶ ମହଲା କୋଠାରେ କାମ କରନ୍ତି ।"

"ମାମୁଁ ! କେଉଁଠି ?" କାବା ହୋଇଯାଇଥିଲା ଆନନ୍ଦନ୍ । ସ୍ତ୍ରୀର ଯେ ମାମୁଁ କିଏ ଜଣେ ଅଛନ୍ତି, ଏ କଥା ସେ ଆଦୌ ଜାଣିନଥିଲା ।

ମୁହଁ ଶୁଖାଇଦେଇ କମଳା କହିଲା, "ତୁମକୁ ବା କହନ୍ତା କିଏ ? ଯେବେଠାରୁ ହିନ୍ଦୁସ୍ତାନୀ ଝିଅଟିକୁ ପ୍ରେମ କରି ବାହାହେଲେ, ସେଇଦିନଠାରୁ ତାଙ୍କର ଅଜାଘର ଗାଁରୁ ସମ୍ପର୍କ ତୁଟିଛି । ଆଉ ବାପା···ସେ ତ ଅଜାଙ୍କଠାରୁ ବଳି ରକ୍ଷଣଶୀଳ । ଚଉଠିପଡ଼ର ସମ୍ପର୍କ

ମଧ୍ୟ କାଟିଦେଲେ । କାହିଁ ଆଠବର୍ଷ ତଳର କଥା ହେଲାଣି । କେତେ ବଦଳିଯିବେଣି ସତେ । ପିଲାଛୁଆ ହୋଇଯିବେଣି ତାଙ୍କର ।...ତୁମେ ତାଙ୍କୁ ଟିକିଏ ଖୋଜ ଆଣନ୍ତ ନାହିଁ ?"

ସ୍ତ୍ରୀର ଶୁଖିଲା ମୁହଁକୁ ଚାହିଁଲା ଆନନ୍ଦନ୍ । "ଏତେ ବଡ଼ ଦିଲ୍ଲୀ ସହର । ହଜାର ହଜାର ଅଫିସ୍, ଲକ୍ଷ ଲକ୍ଷ ଲୋକ । କେଉଁଠି ଖୋଜିବି ତୋ ମାମୁଁଙ୍କୁ ?" ହତାଶ ହୋଇ ସେ କହିଲା ।

ଏଥର ଆଗ୍ରହରେ ଚକ୍ ଚକ୍ କଲା କମଲାର ଆଖି ଦିଓଟି—"ତୁମକୁ ବେଶି କଷ୍ଟ କରିବାକୁ ହେବ ନାହିଁ । ମୋ ପାଖରେ ତାଙ୍କର ଠିକଣା ଅଛି । ମୁଁ ବିଦା ହୋଇଆସିବାବେଳେ ମା' ମୋ ହାତରେ ଗୁଞ୍ଜି ଦେଇଥିଲା । କାରଣ ଅନ୍ୟ କେହି ଜାଣିଥିଲେ ତ ପ୍ରଳୟ ହୋଇଯାଇ ଥାଆନ୍ତା । ସେଥିପାଇଁ ମୁଁ ତାକୁ ଲୁଚେଇ ରଖିଛି । ତା'ଛଡ଼ା ··" ନିହାତ ସରଳ ଭାବରେ ସେ କହିଲା, "ତାଙ୍କ ଅଫିସ୍ ତ ଦଶମହଲା କୋଠୀରେ—ପାଇବାରେ ଅସୁବିଧା କ'ଣ ?"

"ହଣ୍ଡୀଟାଏ କଲେ ।" ହସିଲା ଆନନ୍ଦନ୍, "ଏଠି ଦଶମହଲା କ'ଣ, ତା'ଠାରୁ ବଡ଼ ବଡ଼ ବିଲ୍ଡିଂ ଅଛି । ଆଉ ଗୋଟାଏ ବିଲ୍ଡିଂରେ ତିରିଶ ଚାଳିଶ ଅଫିସ୍ । ଖାଲି ଦଶତାଲା କୋଠୀ କହିଦେଲେ କ'ଣ ତୋ ମାମୁଁ ମିଳିଯିବେ ?"

ମୁରୁକେଇ ହସିଲା ତା ସ୍ତ୍ରୀ । "ହଉ ମ ହେଲା, ଠିକଣା ତ ଅଛି ।" ଏଥର ପଚାରିଲା ଆଖିରେ ସ୍ୱାମୀଙ୍କ ମୁହଁକୁ ଚାହିଁଲା ସେ । "ତୁମ ଅଫିସ୍ କ'ଣ ଏମିତି ଗୋଟାଏ ବଡ଼ କୋଠୀରେ ?"

"ଉହୁଁ, ଦୁଇମହଲା ଘର । ତା'ଛଡ଼ା କେବଳ ତଳ ମହଲାଟା ଅଫିସ୍ । ଉପର ମହଲରେ ମ୍ୟାନେଜର୍ ସାହେବ ତାଙ୍କ ପିଲାପିଲି ନେଇ ରହନ୍ତି ।"

କମଲାର ଆଗ୍ରହୀ ମନଟା ମରିଗଲା । ମିନିବସ୍‌ରେ ଝର୍କା ପାଖ ସିଟ୍‌ରେ ବସି ପଛକୁ ଧାଇଁ ଧାଇଁ ପଳାଉଥିବା ଗାଡ଼ି, ମଣିଷକୁ ଦେଖି ଦେଖି କମଲା ହଠାତ୍ କହିଉଠିଲା, "ଏଇ ଶୁଣୁଛ, ମତେ ଟିକିଏ ତୁମ ଅଫିସ୍ ଦେଖେଇବାକୁ ନେଇଯିବନି ?"

ଆନନ୍ଦନ୍ ଆଶ୍ଚର୍ଯ୍ୟ ହେଲା, "କାହିଁକି ବା ?"

ଲାଜେଇଯାଇ ସ୍ତ୍ରୀ କହିଲା, "ନାଇଁ ମ, ଏମିତି କହୁଥିଲି ମୁଁ । ଟିକିଏ ଦେଖନ୍ତି ତୁମେ କେଉଁଠି ବସ, କେମିତି କାମ କର ।"

ତା' ମୁହଁକୁ ବଲ ବଲ କରି ଚାହିଁଲା ସେ । "ତୋ'ର ସନ୍ଦେହ ହେଉଛି କିଲେ ? ମୁଁ ଚୋରି ଫୋରି କରେନି ବା—ହକ୍ ନଅଘଣ୍ଟା ପରିଶ୍ରମ କରି ମାସକୁ ଛଅଶହ ଟଙ୍କା ରୋଜଗାର କରେ—ବୁଝିଲୁ ?"

ସ୍ୱାମୀର ଗଳାରେ ସାମାନ୍ୟ କଠିନତାର ଆଭାସ ଥିଲା ବୋଧହୁଏ—କମଲାର ଆଖି ବାମ୍ପେଇଗଲା । ଶାଢ଼ି କାନିକୁ ଆଖିରେ ମାଡ଼ିଦେଇ ସଙ୍କେଇ ହେଲା ସେ । "ଏତେ କଥା ମୁଁ କେଉଁଠି କହିଲି ? ତମକୁ ଟିକିଏ କଥା ପଚାରିଲେ ଦୋଷ । ହଉ ହେଲା, ମୁଁ ଆଉ ତମକୁ କେବେ କିଛି ପଚାରିବି ନାହିଁ ।"

ବିବ୍ରତଭାବରେ ଏପାଖକୁ ସେପାଖକୁ ଚାହିଁଲା ଆନନ୍ଦନ୍ । ସନ୍ଧ୍ୟାରେ ଲୋକ ଭିଡ଼ ଗାଡ଼ି ଭିତରେ । ଅନେକଙ୍କର କୌତୂହଳୀ ଦୃଷ୍ଟି ଖେଳି ଆସୁଛି ତାଙ୍କ ଉପରେ । ଓହୋ, ଏ ମଫସଲୀ ଅପାଠୋଇ ସ୍ତ୍ରୀଟିକୁ ନେଇ ସେ ଦିଲ୍ଲୀ ସହରରେ ଚଳିବ କେମିତି ?

ନରମେଇ ଦେଲା ସ୍ୱର—"ମୋ ସୁନାଟା ପରା, ଏଠି ଲୋକମାନେ କେମିତି ଗିଳାଗିଳା ଭଳି ଚାହୁଁଛନ୍ତି ଦେଖୁ ତ । ଲୁହ ପୋଛି ଦେ । ତତେ ମୁଁ ଅନ୍ଧାରେ ଅନ୍ଧାରେ କହୁଥିଲି—ରୁମନକୁ ନେଇଗଲୁ । ଆରେ ବାବା—ତତେ ମୁଁ ଏଇ ରବିବାର ଦିନ ଅଫିସ୍ ଦେଖେଇ ନେଇଯିବି, ହେଲା ତ । ଏଥର ହସିଦେ ।"

ମୁହଁ ତଳକୁ ପୋତି ସାମାନ୍ୟ ହସିଲା କମଳା । ମେଘ ଘୋଡ଼ା ଆକାଶରେ ସୂର୍ଯ୍ୟ ଟିକିଏ ଉଙ୍କିମାରି ଦେଲେ ଯେମିତି ।

ରବିବାର ଦିନ ଅଫିସ ସିନା ଦେଖିଲା କମଳା, କିନ୍ତୁ ମନ ଭରିଲା ନାହିଁ । ଓନାମ୍ ସମୟରେ ପାଖ ଗାଁ ସ୍କୁଲ ପଡ଼ିଆରେ ସିନେମାଟାଏ ଦେଖିଥିଲା ସେ । ଚଳଚ୍ଚିତ୍ର ନାୟକର ଅଫିସ୍ ଦେଖି ସେ ମନେ ମନେ କଳ୍ପନା କରିନେଇଥିଲା ହୁଏତ ତା ସ୍ୱାମୀ ପରିର ଅଫିସ୍ ଏମିତିକା ହୋଇଥିବ । କିନ୍ତୁ ଆନନ୍ଦନ୍‌ର ଅଫିସ୍ ଭିତରଟା କେତେ ସାଧାସିଧା—ନା ଅଛି ଗଦିପକା ସୋଫା, ନା କାନ୍ଥରେ ବଡ଼ ବଡ଼ ଚିତ୍ର । ଗୋଟାଏ ଷ୍ଟିଲ୍‌ର ଟେବୁଲ ଓ କାଠ ଚୌକିଟିଏ । ଆଉ ଗୋଛାଏ କାଗଜପତ୍ର ଓ ଫାଇଲ୍—ଏଇ ହେଲା ତା' ସ୍ୱାମୀର ଅଫିସ୍ । ହେଲେ ହୋଇଥାଆନ୍ତା ବାର-ତେର ମହଲା କୋଠାଟାରେ । ଗାଁକୁ ଗଲେ ସାଙ୍ଗଙ୍କ ମେଳରେ ତ ଗପ କରିପାରିଥାଆନ୍ତା । ଗପ କରିବା ଭଳି ଆନନ୍ଦନ୍ ପାଖରେ ତା'ର ଚରିତ୍ର ଓ ସ୍ୱଭାବ ଛଡ଼ା ଯେ ଆଉ କିଛି ନାହିଁ ସେ କଥା ବୁଝିବାକୁ କମଳାକୁ ପୂରା ଦୁଇମାସ ଲାଗିଗଲା ।

ଆଜିକାଲି ଅକାରଣେ ମନ ତା'ର ଦୁଃଖ ହୋଇଯାଏ । ସବୁଦିନ ଅଫିସ୍‌ରୁ ଫେରିବା ବେଳେ ସ୍ୱାମୀ ଶାଢ଼ି ବା ଦାମୀ ଗହଣା ନ ଆଣନ୍ତୁ ପଛେ, ମଲ୍ଲୀହାର ତ ଆଣିପାରନ୍ତେ ! ନା, କିଛି ନାହିଁ । ବରଂ ଘରକୁ ଫେରି ହାଲିଆ ହୋଇ ଖଟରେ ଗଡ଼ିପଡ଼ନ୍ତି । କୁଆଡ଼େ ଟିକିଏ ବୁଲିଯିବାର ସୁବିଧା ନାହିଁ । କେମିତି ବା ଯିବେ, ସବୁ ଦୂର । ଦିଲ୍ଲୀ ଭଳି ଜାଗାରେ ସାଇକେଲ୍ ଠେଲି ଠେଲି ଆଉ କେତେ ବାଟ ଯାଇପାରିବେ ! ସ୍କୁଟର୍‌ଟାଏ ନହେଉ ମୋପେଡ୍‌ଟାଏ ଥାଆନ୍ତା କି ! ଖୁବ୍ ଶୀଘ୍ର ତା' ବିବାହର ମାଦକତା ଭାଙ୍ଗିଯାଇଥିଲା । ଆଜିକାଲି ଘର କାମରେ ମନ ଲାଗେ ନାହିଁ, ରହି ରହି ସେ ଅନ୍ୟମନସ୍କ ହୋଇଯାଏ ।

ସବୁ ଦେଖେ ଆନନ୍ଦନ୍ । ସ୍ତ୍ରୀର ଅନ୍ୟମନସ୍କତା ଭାବ ଠିକ୍ ପଢ଼ିନିଏ ସେ । ନୂଆ ବାହାଘରର ଦିନ ସବୁ ଯେ କେମିତି ମୁଠି ଫାଙ୍କ ଦେଇ ଖସି ଖସି ପଳେଇଯାଆନ୍ତି, ସେ ବୁଝି ପାରେନାହିଁ । ପତ୍ନୀକୁ ସର୍ବାନ୍ତଃକରଣରେ ସୁଖୀ କରିବା ପାଇଁ ମନେ ମନେ ଦୃଢ଼ସଂକଳ୍ପ ହୋଇଉଠେ ସେ ।

ସେଦିନ ଶନିବାର । ଆନନ୍ଦନ୍‌ର ହାଫ୍ ଡେ । ଦିନ ଏଗାରଟାବେଳେ କବାଟରେ ଠକ୍ ଠକ୍ ଶୁଣି ଉଠିଗଲା କମଳା । ଦାଣ୍ଡରେ ସ୍ୱାମୀଙ୍କ ସାଙ୍ଗରେ ଜଣେ ଅଚିହ୍ନା ଟାଇ ସୁଟ୍

ପିନ୍ଧା ଦାଢ଼ିଆ ଭଦ୍ରଲୋକଙ୍କୁ ଦେଖି ସେ ହଠାତ୍ ଅଟକିଗଲା । ପୁଣି ମୁଣ୍ଡରେ ଓଢ଼ଣାଟା ଦେଇ ବୁଲି ପଳେଇଗଲା ରୋଷେଇ ଘରକୁ ।

ଆନନ୍ଦନର ହସ ସେ ଠିକ୍ ଶୁଣିପାରୁଥିଲା—"ମୁଁ କ'ଣ କହୁଥିଲି—ଏତେ ବର୍ଷ ପରର କଥା—ସେ ଆଦୌ ଚିହ୍ନି ପାରିବ ନାହିଁ ।" ପୁଣି କମଳା ଉଦ୍ଦେଶ୍ୟରେ ପାଟି କରି କହିଲା, "ହେଇଟି, ଲାଜ କରୁଛ କାହାକୁ ? ଏ ତୋ ମାମୁ ପରା ! ମତେ କହିଲୁ ଖୋଜି ଆଣିବାକୁ, ଖୋଜିଆଣିଲାରୁ ଯାଇ ରୋଷେଇ ଘରେ ଲୁଚନ୍ତୁ ।"

ଧାଇଁ ଆସିଲା କମଳା । ଦରି ପାଚିଲା ଦାଢ଼ି ତଳର ମୁହଁରୁ ସେ ଖୋଜୁଥିଲା ଆଠବର୍ଷ ତଳେ ହଜିଯାଇଥିବା ତା' ମାମୁଙ୍କର ସେଇ ଟାକରା ଗାଲ, ଚଳ ଚଳ ଆଖି ଆଉ ଖଣ୍ଡାଧାର ପରି ନାକ ଖଣ୍ଡିକ । ଦେହର ରଙ୍ଗ ଆଉ ଟିକେ ପରିଷ୍କାର ଥିଲା, ଏବେ କଳା ପଡ଼ିଗଲାଣି । ମାମୁ ଇ ତ । ବେକରେ କାନିଟା ଗୁଡ଼େଇ ହୋଇ ମୁଣ୍ଡିଆ ମାରୁ ମାରୁ ଭେ ଭେ ହୋଇ କାନ୍ଦପକାଇଲା ସେ । ମାମୁଙ୍କର ମଧ୍ୟ ଧୈର୍ଯ୍ୟର ବନ୍ଧ ଭାଙ୍ଗିଗଲା । ତାଙ୍କ ଆଖିରେ ଲୁହର ଜୁଆର ବାଧା ମାନିଲା ନାହିଁ । ଦାନ୍ତ ଚିପି ନିଜକୁ ସମ୍ଭାଳିବାର ବ୍ୟର୍ଥ ଚେଷ୍ଟା କରୁ କରୁ ଭଣଜୀକୁ ଦୁଇ ହାତରେ ଜାବୁଡ଼ି ଧରି ସେ ମଧ୍ୟ କାନ୍ଦପକେଇଲେ । "ମୋ କମି, କେତେ ବଡ଼ ହୋଇଗଲୁଣି ଲୋ ! ତମମାନଙ୍କୁ ଏତେଦିନ ହେଲା ନଦେଖି ମୋ ଆଖି ଫୁଟିଯାଇଛି । ମୋ ଉପରେ ସମସ୍ତଙ୍କର ଏତେ ରାଗ ! ଭିଣେଇ ତ ଦୂରର କଥା, ଭଉଣୀଟା ବି ତୋ ବାହାଘର ଖବର ଜଣେଇଲାନି ମତେ । ମୁଁ ବଞ୍ଚି ଥାଉ ଥାଉ ସମସ୍ତେ ମତେ ମାରିଦେଲେ ଯାହା ।"

"ଏମିତି କୁହନାହିଁ ମାମୁ ! ତୁମ କଥା ମା' ସବୁବେଳେ କହେ । କେତେ ଲୁହ ଗଡ଼ାଏ ତୁମ ପାଇଁ । ହେଲେ ଅଜାଙ୍କ ରକ୍ଷଣଶୀଳ କଥା ତ ଜାଣ । ବାପା ବି ସେଇମିତି । ସେମାନଙ୍କର ମନ ଟିକିଏ ବି ତରଳେ ନାହିଁ କେମିତି କେଜାଣି ?"

ଭଣଜୀ ଓ ମାମୁଙ୍କର ଗପରେ ଗପରେ ସେଦିନ ରୋଷେଇ ବହୁତ ଡେରି ହୋଇଗଲା । ଖିଆପିଆ ସରିବା ବେଳକୁ ଦିନଟା । ଦପ ତଳେ ପଟକେଇ ଗଡ଼ପଡ଼ ହେଉଛନ୍ତି ମାମୁ ।

"ଆଉ ବାବୁ, ତୁମେ କ'ଣ କରୁଛ କହିଲ ନାହିଁ ତ ।" ତା' ବିଷୟରେ କଥା ସେ ପଚାରିବ ଏକଥା ଆନନ୍ଦନ୍ ଜାଣିଥିଲା । ସେଇଥିପାଇଁ ସେ ସାମାନ୍ୟ ବିବଶ ଅନୁଭବ କଲା । କୁଣ୍ଠିତ ଭାବରେ କହିଲା, "ମୁଁ ଷ୍ଟେନୋ ଅଛି ଟି. ଏଣ୍ଡ୍ ଏସ୍. ଏକ୍ସପୋର୍ଟ କମ୍ପାନୀରେ ।"

"ଟି. ଏଣ୍ଡ୍ ଏସ୍...." କଥାଟା ପସନ୍ଦ ନହେଲା ଭଳି ମୁହଁ କଲେ ମାମୁ । ସାମାନ୍ୟ ରହିଯାଇ ପୁଣି କହିଲେ, "ଅସଲ କଥା ହେଲା ଏଥରୁ ଶ୍ରେଷ୍ଠ କମ୍ପାନୀରେ ପଶିବା ଉଚିତ ନୁହଁ । ହଠାତ୍ କେଉଁଦିନ ଦେଖିବ, ଚାକିରୀରୁ ଛଟେଇ ହୋଇଯାଇଛ । ନା ଅଛି ୟୁନିଅନ୍ ନା ଚାକିରିର ସୁରକ୍ଷା । ଏଇ ମୋତେ ଦେଖ, ମୁଁ ଇଣ୍ଡିଆନ୍ ସିମେଣ୍ଟସ୍ ଭଳି ବଡ଼ କମ୍ପାନୀରେ ଜଏନ୍ କଲି କ୍ଲର୍କ ହୋଇ । ସେତେବେଳେ କ'ଣ ଶ୍ରେଷ୍ଠ ଶ୍ରେଷ୍ଠ କମ୍ପାନୀରେ ଭଲ ଚାକିରି ମିଳୁନଥିଲା କି ? କିନ୍ତୁ ମୁଁ ସ୍ଥିର କରିନେଲି, ଚାକିରି କରିବି ତ ଭଲ ଅନୁଷ୍ଠାନରେ । ଏବେ ମୁଁ

ପନ୍ଦରଟା ବର୍ଷରେ ଏଠିକାର ସେକ୍‌ସନ୍ ଅଫିସର୍ । କମ୍ପାନୀର ପୁରୁଣା ଲୋକ ହିସାବରେ ସମ୍ମାନ ବି ମିଳେ । ଆଉ ଦରମା ତ ଅଛି ।" କଥା କହୁ କହୁ ଢିଲା ହୋଇଯାଇଥିବା ଶାର୍ଟ, ଫୁଲପକା ଟାଇର ନଟ୍‌କୁ ଟିକିଏ ସଜାଡ଼ି ଦେଲେ ମାମୁ ।

ଆନନ୍ଦନ୍‌କୁ ମାଡ଼ି ମାଡ଼ି ପଡ଼ୁଥିଲା ଏମିତି କଥାବାର୍ତ୍ତା । କଥାଟା ବୁଲି ବୁଲି ଆସି ଯେ ତା'ରି ଉପରେ କେନ୍ଦ୍ରୀଭୂତ ହୋଇଯିବ, ସେକଥା ସେ ଜାଣିଥିଲା ।

"ତୁମର ଚାକିରି କେତେବର୍ଷ ହେଲା ?"

"ସାତ ।"

"ସାତବର୍ଷ ! ଆଉ ସ୍ଥିତି ?"

"ଅଣୀ ।"

"କ'ଣ କହୁଚ ?" ଉଠିବସିଲେ ମାମୁ, "ସାତବର୍ଷର ଅଭିଜ୍ଞତା ଓ ଅଣୀ ସ୍ଥିତି ନେଇ ତୁମେ ସେଇ ଘଟିଆ କମ୍ପାନୀରେ ପଡ଼ିଚ ! ନା ନା, ଏଇଟା କିଭଳି କଥା ହେଲା ? ମୁଁ ତୁମପାଇଁ ଭଲ ଚାକିରି ଖୋଜିଦେବି । ଆମ ମ୍ୟାନେଜରଙ୍କୁ କହି ଇଣ୍ଡିଆନ୍ ସିମେଣ୍ଟସ୍‌ରେ ଚାକିରି କରେଇଦେବି ।"

"ଏସବୁର କି ଦରକାର ମାମୁ—ଭଲରେ ତ ଚଳିଯାଉଛି !" କଥା ହାଲୁକା କରିବାପାଇଁ କହିଲା ଆନନ୍ଦନ୍ ।

ମାମୁ କିନ୍ତୁ କିଛି ଶୁଣିବାକୁ ପ୍ରସ୍ତୁତ ନଥିଲେ, "କି ଦରକାର ମାନେ ? ଟିକିଏ ଆରାମ ତ ପୁଣି ମଣିଷ ଖୋଜେ । ଭଲ ଖାଇବ, ଭଲ ପିନ୍ଧିବ, କିଛି ଅସୁଖ କରିବ । କେତେ ବର୍ଷ ଏମିତି ଦୁଃଖେ ଦୁଃଖେ ଚଳିବା ଭଲ ଲାଗିବ । ଏଠା ଅପେକ୍ଷା ସେଠା ଦରମା ବି ଭଲ ହେବ । ତା'ଛଡ଼ା ଡି. ଏ., ବୋନସ୍ ଇତ୍ୟାଦି ରହିଛି । କାମର ପ୍ରେସର୍ ମଧ୍ୟ କମ୍ ।"

ଆନନ୍ଦନ୍‌ର ମୁହଁକୁ ଚାହିଁ ସେ କ'ଣ ବୁଝିଲେ କେଜାଣି ହସିକରି କହିଲେ, "ତୁମେ ଭାବୁଛ କି ମୁଁ ଏତେସବୁ କାହିଁକି ଚିନ୍ତାକରୁଛି ? ଏସବୁ ମୁଁ ତୁମ ପାଇଁ କରୁନି, କରୁଛି ମୋ ଭାଣିଜୀ ପାଇଁ । ସେ ବି ଟିକିଏ ଭଲରେ ରହିବ ।"

ଅନ୍ୟମନସ୍କ ଆନନ୍ଦନ୍‌ର କାନରେ ଏକଥା ବାଜିଲା । ଶାନ୍ତ, ନରମ ସ୍ୱଭାବଟିଏ ତା'ର । କାହାକୁ ଆଘାତ ଦେଇ ପାରେନାହିଁ ବା କୌଣସି ବିଷୟରେ ନିଜର ଅପ୍ରିୟ ଜାହିର୍ କରିବାକୁ ବିଦ୍ରୋହ କରିପାରେ ନାହିଁ । ମାମୁଙ୍କ କଥା ଖାଲି ଶୁଣିଗଲା ସେ । ମନ ଭିତରର ଅଶାନ୍ତିକୁ ଘୋଡ଼େଇ ରଖିବା ପାଇଁ ମୁହଁ ନଖୋଲି ସେ କେବଳ ଆଖି ବନ୍ଦ କରିଦେଲା । ଶୋଇବାର ଛଳନା କରୁ କରୁ ନିଦ ଯେ କେତେବେଳେ ଆସି ତା' ବନ୍ଦ ଆଖିପତାରେ ବସିଗଲା ଆନନ୍ଦନ୍ ବୁଝିପାରିଲା ନାହିଁ ।

ଏ ଘଟଣାର ଦେଢ଼ମାସ ପରେ ମାମୁ ଦିନେ ଆସି ତାକୁ ଜୋର୍ କରିନେଇଯାଇଥିଲେ ଇଣ୍ଡିଆନ୍ ସିମେଣ୍ଟସ୍ ଅଫିସ୍‌କୁ । ଇଣ୍ଟରଭ୍ୟୁ ଅଫିସରଙ୍କ ସାଙ୍ଗରେ ଇଣ୍ଟରଭ୍ୟୁ । ଅଣୀ ସ୍ଥିତି ନେଇ ଆନନ୍ଦନ୍ ଜାଣିଥିଲା ସେ ସିଲେକ୍ଟ ହୋଇଯିବ । ହୋଇଥିଲା ମଧ୍ୟ । ଦଶଦିନ ପରେ

ମାମୁ ଆପଏଣ୍ଟମେଣ୍ଟ୍ ଲେଟର୍ ନେଇ ଆସିଥିଲେ ଏବଂ ସମସ୍ତଙ୍କୁ ହୋଟେଲ୍‌ରେ ଖୁଆଇଥିଲେ ସେଦିନ ।

ଆନନ୍ଦନ୍ ତଥାପି ପାଟିଖୋଲିନଥିଲା । କମଳାର ଖୁସି ଝଲ୍‌ମଲ୍ କରୁଥିବା ମୁହଁ, ଉଜ୍ଜ୍ୱଳ ଆଖି ଦେଖି ସେ ମନେ ମନେ କିଛି ସିଦ୍ଧାନ୍ତରେ ପହଞ୍ଚିବାକୁ ଚେଷ୍ଟାକରୁଥିଲା ।

"ଉଃ, କି ମଜା ! ଆଠଶହ ପଚିଶ ଟଙ୍କା ଦରମା ! ଦେଖିବ ରହିଥା, ମୁଁ କେଇମାସ ଭିତରେ ଟଙ୍କା ସଞ୍ଚି ସଞ୍ଚି ତୁମପାଇଁ ଗୋଟାଏ ଲୁନା କିଣିଦେବି ।…ଆରେ, ତୁମେ କିଛି କହୁନ କାହିଁକି ? ଏମିତି ମୁହଁ କରି ବସିଛ, ଯେମିତି ତୁମ ମନରେ ସୁଖ ନାହିଁ !" ସ୍ୱାମୀର ଗୌରବରେ କମଳା ପ୍ରଗଲ୍‌ଭ ।

ହସିବାକୁ ଚେଷ୍ଟାକଲା ଆନନ୍ଦନ୍—"ଖୁସି ତ ।"

ସେଦିନ ରାତିରେ କମଳା ଶୋଇଯିବା ପରେ ଅନେକ ସମୟ ଆନନ୍ଦନ୍ ସ୍ତ୍ରୀର ହସନ୍ତ ଚେହେରାକୁ ନଠେଇ ଦେଖିଥିଲା । ସେ କାହିଁକି ଚାକିରି କରୁଛି ? କାହାପାଇଁ ଏସବୁ ? ପ୍ରକୃତରେ ଦେଖିବାକୁ ଗଲେ ପରିବାର ପାଇଁ । ପରିବାର ମାନେ କମଳା । ସ୍ତ୍ରୀକୁ ଜୀବନ ଭରି ଆନନ୍ଦ ଦେବାପାଇଁ ତାକୁ ଯଦି ସାତବର୍ଷର ଗୋଟାଏ ସର୍ମକ କାଟିବାକୁ ହୁଏ, ତେବେ କ୍ଷତି କ'ଣ ?

ରାତିରେ ସିନା ସିଦ୍ଧାନ୍ତ ନେଇଗଲା ଆନନ୍ଦନ୍, ଅଥଚ ଆଜି ଇସ୍ତଫାପତ୍ର ଟାଇପ୍ କରିପାରୁନି । ଏଥର ମନକୁ ଦୃଢ଼କରି ଟାଇପ୍ ରାଇଟର୍‌ରେ ମୁହଁ ପୋତିଦେଲା । କେଇଟା ଧାଡ଼ି କଥା, ସାଙ୍ଗେ ସାଙ୍ଗେ ଟାଇପ୍ ହୋଇଗଲା । ଅଧରରେ ଗୁଣୁଗୁଣୁ ହୋଇ ପଢ଼ିନେଲା, "ସାର୍, ଆଇ ରିଗ୍ରେଟ୍ ଟୁ ଷ୍ଟେଟ୍ ଦ୍ୟାଟ୍ ବିକଜ୍ ଅଫ୍ ପର୍ସନାଲ୍ ରିଜନସ୍…"

ଏ ଚିଠି ତ୍ରିପାଠୀ ସାହେବଙ୍କୁ ଦେବ ବା କେମିତି ? ଅଫିସ୍ ବାହାରକୁ ଗଲା ଆନନ୍ଦନ୍ । ଷ୍ଟୁଲ୍ ପକାଇ ବସିଛି ଶମ୍ଭୁ—ଅଫିସ୍‌ର ପିଅନ ।

"ଶମ୍ଭୁ, ଏ ଚିଠିଟା ତ୍ରିପାଠୀ ସାହେବଙ୍କୁ ଦେଇଦେ ତ ।"

ଶମ୍ଭୁ ଆଶ୍ଚର୍ଯ୍ୟରେ ଆନନ୍ଦନ୍ ମୁହଁକୁ ଚାହିଁଲା । ଏଭଳି ଗୋଟାଏ ଅଦ୍ଭୁତ କାମ ଷ୍ଟେନୋ–ବାବୁ କେବେ ତାକୁ କରିବାକୁ ଦେଇନାହାନ୍ତି । ଅଫିସ୍ ଭିତରେ ଶମ୍ଭୁ ପାଦ ଦେବାକ୍ଷଣି, ସାଇକେଲରେ ପେଡ଼ାଲ ମାରିଦେଲା ଆନନ୍ଦନ୍ ।

× × × ×

କେତେ ଭିନ୍ନ ଏ ବାତାବରଣ । କୁଲର୍ ଲଗା ହଲ୍ । ସେଇଠି ତା'ଭଳି ଦଶଜଣ ଷ୍ଟେନୋ । ସମସ୍ତଙ୍କର କାମ କେବଳ ଖଟ୍ ଖଟ୍ କରି ଟାଇପ୍ କରିବା । ନଅଟାରୁ ପାଞ୍ଚଟା ଠିକ୍ ଘଣ୍ଟା କଣ୍ଟା ଦେଖି କାମହୁଏ ଏଠି । ନଅଟା ଆଗରୁ କେହି ଆସନ୍ତି ନାହିଁ ବା ପାଞ୍ଚଟା ପରେ ଗୋଟାଏ ମିନଟ୍ ମଧ୍ୟ କେହି ରହନ୍ତି ନାହିଁ । ଖାଲି ହଲ୍ ଭିତରେ କୁଲର୍ ଦୁଇଟି ଘର୍ ଘର୍ ହୋଇ ଚାଲୁଥାଏ କେବଳ । କୁଲର୍ ବନ୍ଦ କରେ ଗୁର୍ଖା ଚୌକିଦାର୍ ହିମ୍ ବାହାଦୁର୍ ଅଫିସ୍‌ରେ ତାଲା ଦେବା ଆଗରୁ । ଟଙ୍କା ଅର୍ଜନ କରିବା ପାଇଁ ଯେ ମଣିଷକୁ

ଟାଇପ୍ ରାଇଟର୍ ଭଲ ମେସିନ୍ ହୋଇଯିବାକୁ ହୁଏ, ଏଇଠିକୁ ଆସି ପ୍ରଥମେ ଜାଣିଲ ଆନନ୍ଦନ୍ ।

ଟି. ଏଣ୍ଡ୍ ଏସ୍. କମ୍ପାନୀରେ ସାଢ଼େ-ପାଞ୍ଚଟା ପରେ ଯେତେବେଳେ ମିଷ୍ଟର ନାୟାର ବା ମିସେସ୍ ହାଲଦାର ତା' ପାଖକୁ ଆସି ଅନୁରୋଧ କରନ୍ତି, "ଏ ଚଠିଟା ଟିକେ ଟାଇପ୍ କରି ଦିଅନ୍ତ ନାହିଁ ଆନନ୍ଦନ୍—କାଲି ସକାଳ ପୋଷ୍ଟରେ ନଗଲେ ଡେରି ହୋଇଯିବ ।" ଘରକୁ ଫେରିବାକୁ ଡେରି ହୋଇଯାଇଥିଲେ ମଧ୍ୟ ମନରେ ଅନେକ ସନ୍ତୋଷ ନେଇ ଆନନ୍ଦନ୍ ଚଠି ଟାଇପ୍ କରିଦିଏ । ସେଠି ସେ ଥିଲା ମ୍ୟାନେଜର୍‌ଠାରୁ ତଳ ପାହ୍ୟା ଅଫିସର୍ ପର୍ଯ୍ୟନ୍ତ ସମସ୍ତଙ୍କର ଡାହାଣ ହାତ । ସେ ଚଠିଟିଏ ଟାଇପ୍ ନକଲେ ଅଫିସର୍ କାମ ଅଟକି ଯାଉଥିଲା । ଅଥଚ ଏଠି ଦୁଇଟା ଦିନ ଛୁଟି ନେଇଗଲେ ମଧ୍ୟ ସେମିତି କିଛି ଅନର୍ଥ ଘଟିବ ନାହିଁ । କାମ ଚଳେଇବାକୁ ତ ଆଉରି ନଅଜଣ ଅଛନ୍ତି । ମିସ୍ରା ସାହେବଙ୍କ କଥା ଖାଲି ମନେପଡ଼େ ଆନନ୍ଦନ୍‌ର । ଭଲ ଚଠିଟିଏ ଡ୍ରାଫ୍ଟ କଲେ ତାଙ୍କର ବହୁତ ପ୍ରଶଂସା । ପୁଣି ଭୁଲ୍ କଲେ ତାଗିଦା । କେତେ ଆଦର ଆଦର ଭାବ । ସାତବର୍ଷର ସ୍ମୃତିରେ ଆନନ୍ଦନ୍‌ର କେବେହେଲେ ମନେହୋଇନାହିଁ ଯେ ସେ ସାମାନ୍ୟ ଗୋଟାଏ ଷ୍ଟେନୋ । ଅଫିସର୍-ମାନଙ୍କର ତା' ସହିତ ଯେଉଁ ଭାବରେ କଥାବାର୍ତ୍ତା ତା'ର ସବୁବେଳେ ମନେହୋଇଥିଲା ଟି. ଏଣ୍ଡ୍ ଏସ୍.ର ପରିବାରରେ ସେ ଜଣେ ସଦସ୍ୟ । ଅଥଚ ଇଣ୍ଡିଆନ୍ ସିମେଣ୍ଟସ୍‌ରେ ଯୋଗଦେବା ପରେ ଅଫିସର୍‌ମାନଙ୍କର ଚେହେରା ଖୁବ୍ କମ୍ ଦେଖିବାକୁ ମିଳେ । ଏମିତିକି ଅଧିକାଂଶ ଅଫିସର୍‌ଙ୍କ ନାମ ଜାଣେନାହିଁ ଆନନ୍ଦନ୍ । ଯାହା ସବୁ ଟାଇପ୍ ହେବ, ପିଅନମାନେ ଆଣି ଦେଇଯାଆନ୍ତି ହେଡ୍ ଷ୍ଟେନୋଙ୍କୁ । ସେ ହିଁ ସମସ୍ତଙ୍କ ଭିତରେ ବାଣ୍ଟି ଦିଅନ୍ତି । ଅଫିସ୍‌ରେ କ'ଣ ଘଟୁଛି ତ ଦୂରର କଥା, କେଉଁ ଡିପାର୍ଟମେଣ୍ଟରୁ କାଗଜ ସବୁ ଟାଇପ୍ ହେବାପାଇଁ ଆସିଛି, ସେ କଥା ଜାଣିବାର କୁ ନାହିଁ ।

ଏ କି ରୁଟିନବନ୍ଧା ଜୀବନ ? ଗୋଟାଏ ବର୍ଷ ମଧ୍ୟରେ ଆନନ୍ଦନ୍‌ର ନିଶ୍ୱାସ ବନ୍ଦହୋଇଗଲା ପରି ମନେହୁଏ । ଗୋଦ୍‌ରେଜର ଇଲେକ୍‌ଟ୍ରିକ୍ ଟାଇପ୍ ରାଇଟର୍ ଓ ସେ ଆନନ୍ଦନ୍—ଏ ଦୁହିଁଙ୍କ ଭିତରେ କ'ଣ ବା ପାର୍ଥକ୍ୟ ? କେବଳ ଜଣେ ନିର୍ଜୀବ ଓ ଅନ୍ୟଜଣଙ୍କର ନିଶ୍ୱାସ ଚାଲିଛି—କିନ୍ତୁ ଦୁହେଁ ତ ମେସିନ୍ । ସବୁ ମାସ ଶେଷ ବେଳକୁ କମଳା ତାକୁ ଘର ଖର୍ଚ୍ଚର ହିସାବ ଦିଏ । ସେ ମାସରେ କେତେ ଟଙ୍କା ସଞ୍ଚୟ କରିଛି ଜଣେଇ ଦିଏ । ଏମିତି ଆଉ ଆଠ ମାସ ପରେ ତାଙ୍କର ଲୁନାଟିଏ ହୋଇଯିବ । ନୂଆ ନୂଆ ଲୁନା ସ୍ୱପ୍ନ ଆନନ୍ଦନ୍‌କୁ ଭଲ ଲାଗୁଥିଲା, ଆଜିକାଲି ଲୁନା କଥା କହିଲେ, ସେ ଅନ୍ୟମନସ୍କ ହୋଇପଡ଼େ ବା ଶୋଇପଡ଼େ । ଘର ପାଇଁ ପଞ୍ଚକୁଇଁଆ ରୋଡ୍‌ରୁ ଦର୍ପଣ ମୂଲେଇବାବେଳେ ବା ସୁପର୍ ବଜାର୍‌ରୁ ଷ୍ଟିଲ୍ ବାସନ କିଣିବାବେଳେ ଆଗ୍ରହ ରହେ ନାହିଁ ତାର । ତା' ଭିତରେ ଯେ କ'ଣ ଗୋଟାଏ ମରିମରି ଯାଉଛି, ଏକଥା ସ୍ପଷ୍ଟ ଭାବରେ ଆନନ୍ଦନ୍ ଅନୁଭବ କରେ । ଆଉ କେତେ ଦିନ ଏମିତି ଅଶାନ୍ତିରେ ଜୀବନକୁ ଟାଣିପାରିବ ସେ ? ପାଗଳ ହୋଇଯିବନି ତ ?

ସବୁଦିନ ପରି ସେଦିନ ଆନନ୍ଦନ୍ ଅଫିସରୁ ସିଧା ଘରକୁ ଗଲାନାହିଁ । ବସ୍‌ରେ ବସି ଗଲା ଇଣ୍ଡିଆ ଗେଟ୍ । ଏବେ ବି ରାତି ହେବାକୁ ଡେରି ଅଛି । ମାତ୍ର ଅନେକ ଗାଡ଼ି ଆସି ଭିଡ଼ ଜମେଇଲେଣି । ଆଇସ୍‌କ୍ରିମ୍ ଓ ବେଲୁନ୍‌ବାଲାଙ୍କର ବ୍ୟବସାୟ ମଧ୍ୟ ଜମିଆସିଲାଣି । ପପ୍‌କର୍ଣ୍ଣ ଓ ଚଣାବାଲା ତାଙ୍କର ପସରା ମୁଣ୍ଡେଇ ବିକ୍ରି କରିବା ଆରମ୍ଭ କଲେଣି । ଆନନ୍ଦନ୍‌ର କିନ୍ତୁ ଏସବୁ କେଉଁଠିକି ଦୃଷ୍ଟିନାହିଁ । ଲନ୍‌ରେ ଟିକିଏ ନିରୋଳା ସ୍ଥାନ ବାଛି ଗଡ଼ିପଡ଼ିଲା ସେ । ଆଜି ସେ କେବଳ ଭାବିବ । ସବୁ ବନ୍ଧନରୁ ଦୂରେଇ ରହି ନିଜ ସମ୍ପର୍କରେ ଇ ଭାବିବ ।

ତଳେ ଘାସର ନରମ ଶେଜ, ଉପରେ ସ୍ୱଚ୍ଛ ନୀଳ ଆକାଶର ସାମିୟାନା । ଆଃ, କି ଶାନ୍ତି ! ଏଠି ନାହିଁ ଦଶଟା ଟାଇପ୍ ରାଇଟର୍‌ର ଖଟ୍ ଖଟ୍ ଶବ୍ଦ ବା ସମୟ ଜଣେଇ ଦେବା ପାଇଁ ବଡ଼ ବାବୁ ଘଡ଼ି । ଟାଇପିଙ୍ଗ୍ ଶିଖିବା ବେଳେ ଟାଇପ୍ ରାଇଟରର ପ୍ରେମରେ ପଡ଼ିଯାଇଥିଲା ଆନନ୍ଦନ୍ । କି-ବୋର୍ଡ଼ ଖଟ୍ ଖଟ୍ କରିବାରେ ତାକୁ ଏତେ ଆନନ୍ଦ କ'ଣ ମିଳୁଥିଲା କେଜାଣି ? ଟାଇପିଙ୍ଗ୍ ଶିଖିବା ପରେ ପରେ ଟି. ଏଣ୍ଡ ଏସ୍.ରେ ଚାକିରି କରିବା ସମୟ ଭିତରେ ତା'ର ଟାଇପ୍ ରାଇଟର୍ ପ୍ରତି ଶ୍ରଦ୍ଧା ଆହୁରି ବଢ଼ିଯାଇଥିଲା । ଅଫିସ୍‌ର ସମସ୍ତଙ୍କର ତା' ପ୍ରତି ସୌହାର୍ଦ୍ଦ୍ୟ । ସେଥିପାଇଁ ସେମିତି ଜଡ଼ ମେସିନଟାର ବହୁ ଅବଦାନ ! ଅଥଚ ଏଇ ପ୍ରଥମ ଟାଇପ୍ ରାଇଟର୍‌କୁ ଘୃଣା କରିଶିଖିଲା ଆନନ୍ଦନ୍ । ଘୃଣା କରନ୍ତା ନାହିଁ, ମେସିନଟା ଯେ ତାକୁ ଜୋର୍ କରି ଜଡ଼ କରି ଦେଉଛି ! ନିଜ ଜୀବନର ଗୋଟାଏ ଅଂଶ ହୋଇ-ଯାଇଥିବା ଟାଇପ୍ ରାଇଟର୍‌କୁ ଘୃଣାକରି ସେ ବଞ୍ଚିବ କେମିତି ବୁଝିପାରୁ ନଥିଲା । ଟାଇପିଙ୍ଗ୍ ଛଡ଼ା ତା'ର ଅନ୍ୟ କିଛି ଯୋଗ୍ୟତା ନାହିଁ । ତାକୁ ଯେ ସାରା ଜୀବନ ଏଇ ଜଡ଼ ମେସିନ୍ ଦ୍ୱାରେ ରହିବାକୁ ପଡ଼ିବ ।

ରାତି ଅନେକ ହେଲାଣି । ମନ ସ୍ଥିର କରି ନେଇ ଉଠିବସିଲା ଆନନ୍ଦନ୍ । ଘରକୁ ଯିବାକୁ ହେବ, ସ୍ତ୍ରୀଟା ଅସଜ ମଣିଷ । ଏକୁଟିଆ ବ୍ୟସ୍ତ ହେଉଥିବ । ଏପାଖ ସେପାଖକୁ ଚାହିଁ ଖାଲି ଅଟୋ ରିକ୍‌ସାକୁ ହାତଠାରି ଡାକୁ ଡାକୁ ସେ ଭାବୁଥିଲା ଯେ କାଲି ସେ ଟି. ଏଣ୍ଡ ଏସ୍. କମ୍ପାନୀ ଯିବ ତ୍ରିପାଠୀ ସାହେବଙ୍କ ପାଖକୁ । ସମସ୍ତ ଆତ୍ମାଭିମାନକୁ ଗଲାଧଃକରଣ କରି ପୁରୁଣା ଚାକିରି ଖଣ୍ଡିକ ପାଇଁ ଅନୁରୋଧ କରିବ । ଏଥର ସେ ନିଜ ଜୀବନ ଗଢ଼ି ନେବାରେ ମାମୁ ବା ସେହିପରି ଅନ୍ୟ କାହାର ସାହାଯ୍ୟ ଆଦୌ ନେବ ନାହିଁ ।

□□□